# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**April - 2017**

**୭୩ ଭାଗ    ୯ ମ ସଂଖ୍ୟା   ଚୈତ୍ର – ବୈଶାଖ   ଅପ୍ରେଲ – ୨୦୧୭**



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**



# ସୂଚୀ

**ଅପ୍ରେଲ – ୨୦୧୭**

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।
(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ





ଉତ୍କଳମଣି ଗୋପବନ୍ଧୁ ଦାସ





ସ୍ୱଭାବକବି ଗଂଗାଧର ମେହେର





ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ





ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ

# ନବ ଉତ୍କଳର ନିର୍ମାତାଗଣ



ପଣ୍ଡିତ ନୀଳକଣ୍ଠ ଦାସ





କବିବର ରାଧାନାଥ ରାୟ





ବ୍ୟାସକବି ଫକୀରମୋହନ ସେନାପତି





ଡକ୍ଟର ହରେକୃଷ୍ଣ ମହତାବ





ମହାନ ଜନନାୟକ ବିଜୁ ପଟ୍ଟନାୟକ

# ଶ୍ରଦ୍ଧାଞ୍ଜଳି



ମହାନ ଜନନାୟକ ବିଜୁ ପଟ୍ଟନାୟକ






ଓଡ଼ିଶା ଦିବସ –୨୦୧୭ ପାଳନ ଅବସରରେ

# ଭାରତର ମାନ୍ୟବର ରାଷ୍ଟ୍ରପତି
# ଶ୍ରୀଯୁକ୍ତ ପ୍ରଣବ ମୁଖାର୍ଜୀଙ୍କ
# ବାର୍ତ୍ତା

ଓଡ଼ିଶା ସରକାର, ୨୦୧୭ ମସିହା ଅପ୍ରେଲ ପହିଲାରେ 'ଓଡ଼ିଶା ଦିବସ' ପାଳନ କରୁଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ।

ଓଡ଼ିଶା ହେଉଛି ଏକ ବହୁବିଧ ବୈଚିତ୍ର ସଂପନ୍ନ, ବୈଭବମୟ ଗତିଶୀଳ ଆଧୁନିକ ରାଜ୍ୟ । ଏହା ବିପୁଳ ଖଣିଜ ସମ୍ପଦ, ସୁଦୀର୍ଘ ବେଳାଭୂମି ଏବଂ ସମୃଦ୍ଧ ଜୈବବିବିଧତାରେ ଭରପୂର୍ । ଏସବୁ ରାଜ୍ୟର ସାମଗ୍ରିକ ବିକାଶ ନିମନ୍ତେ ପ୍ରକୃଷ୍ଟ କ୍ଷେତ୍ର । ଏହି ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ସାମର୍ଥ୍ୟଗୁଡିକର ସୁବିନିଯୋଗ ଦ୍ୱାରା ରାଜ୍ୟ ଅର୍ଥନୀତିକୁ ଅଧିକ ସୁଦୃଢ କରି ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ନିମନ୍ତେ ରାଜ୍ୟର ଜନସାଧାରଣ, ପ୍ରଶାସକ ଏବଂ ବୁଦ୍ଧିଜୀବୀ ନିରନ୍ତର ପ୍ରୟାସ ଜାରି ରଖିବା ଉଚିତ୍ ।

ଏହି ପବିତ୍ର ଦିବସ ଅବସରରେ, ଓଡ଼ିଶାବାସୀଙ୍କ ଉତ୍ତରୋତ୍ତର ଉନ୍ନତି ଏବଂ ସମୃଦ୍ଧି ନିମନ୍ତେ ମୁଁ ମୋର ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି । ମୁଁ ଉତ୍ସବର ସଫଳତା କାମନା କରୁଛି ।

(ପ୍ରଣବ ମୁଖାର୍ଜୀ)

ନୂଆଦିଲ୍ଲୀ
ମାର୍ଚ୍ଚ ୩୦, ୨୦୧୭






ଓଡ଼ିଶା ଦିବସ –୨୦୧୭ ପାଳନ ଅବସରରେ

# ଭାରତର ମାନ୍ୟବର ଉପରାଷ୍ଟ୍ରପତି ଏମ୍. ହମିଦ୍ ଆନ୍‌ସାରୀଙ୍କ ବାର୍ତ୍ତା

ପ୍ରତିବର୍ଷ ପରି ଏ ବର୍ଷ ମଧ୍ୟ ଅପ୍ରେଲ୍ ପହିଲାରେ ଓଡ଼ିଶା ଦିବସ ପାଳନ ହେଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ।

ଓଡ଼ିଶାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ ଏହି ମାଟିର ବିବିଧତାପୂର୍ଣ୍ଣ କୀର୍ତ୍ତିରାଜି, କଳା, ସ୍ଥାପତ୍ୟ, ସାହିତ୍ୟ, ନୃତ୍ୟ ଓ ସଙ୍ଗୀତ ମଧ୍ୟରେ ପ୍ରତିବିମ୍ବିତ । ଏହି ରାଜ୍ୟ ମଧ୍ୟ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ । ମୁଁ ନିଶ୍ଚିତ ଯେ, ପରିଶ୍ରମୀ ଓଡ଼ିଶାବାସୀଙ୍କ ଉଦ୍ୟମ ବଳରେ ଏହି ରାଜ୍ୟ ଅର୍ଥନୈତିକ ଓ ସାମାଜିକ ପ୍ରଗତି ପଥରେ ଏହାର ସଫଳତା ବଜାୟ ରଖିପାରିବ ।

ଏହି ଶୁଭ ଅବସରରେ, ଓଡ଼ିଶା ସରକାର ଓ ଓଡ଼ିଶାବାସୀଙ୍କୁ ମୁଁ ମୋର ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରିବା ସହ ଓଡ଼ିଶା ଦିବସ ପାଳନର ସର୍ବସଫଳତା କାମନା କରୁଛି ।

**ନୂଆଦିଲ୍ଲୀ**

**ମାର୍ଚ୍ଚ ୨୯, ୨୦୧୭**

(ଏମ୍. ହମିଦ୍ ଆନ୍‌ସାରୀ)






# ଓଡ଼ିଶା ଦିବସ -୨୦୧୭ ପାଳନ ଅବସରରେ

# **ମାନ୍ୟବର ପ୍ରଧାନମନ୍ତ୍ରୀ**
# **ଶ୍ରୀ ନରେନ୍ଦ୍ର ମୋଦିଙ୍କ**
# **ବାର୍ତ୍ତା**

ଓଡ଼ିଶା ଦିବସ ଅବସରରେ ପ୍ରିୟ ଓଡ଼ିଶାବାସୀଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ଓଡ଼ିଶା ହେଉଛି ଏକ ସ୍ୱତନ୍ତ୍ର ରାଜ୍ୟ । ବିପୁଳ ପ୍ରାକୃତିକ ସମ୍ପଦ ଏବଂ ରାଜ୍ୟବାସୀଙ୍କ କଠିନ ଅଧ୍ୟବସାୟ ବଳରେ ଓଡ଼ିଶା ଆଜି ସମୃଦ୍ଧ । ଏହି ମାଟିର ଇତିହାସ ଏବଂ ସଂସ୍କୃତି ଅନନ୍ୟ ।

ଦେଶର ବିଭିନ୍ନ କ୍ଷେତ୍ରରେ ପାରଦର୍ଶିତା ହାସଲ କରିଥିବା ବହୁ ମହାନ୍ ପ୍ରତିଭାଧାରୀଙ୍କ ମଧ୍ୟରୁ ଅନେକ ଓଡ଼ିଆ ସେମାନଙ୍କ ସ୍ୱତନ୍ତ୍ରତା ପ୍ରତିପାଦିତ କରିପାରିଛନ୍ତି ।

ମୁଁ ପ୍ରାର୍ଥନା କରେ କି, ଓଡ଼ିଶା ଆଗାମୀ ବର୍ଷରେ ବିକାଶର ଶୀର୍ଷସ୍ଥାନରେ ପହଞ୍ଚିପାରିବ ଏବଂ ଓଡ଼ିଶାବାସୀଙ୍କ ଆଶା ଓ ଆକାଂକ୍ଷା ପୂରଣ ହେବ ।

**ନୂଆଦିଲ୍ଲୀ**

**୨୮ ମାର୍ଚ୍ଚ, ୨୦୧୭**

**(ନରେନ୍ଦ୍ର ମୋଦି)**

## ଓଡ଼ିଶା ଦିବସ -୨୦୧୭ ପାଳନ ଅବସରରେ

# ମାନ୍ୟବର ରାଜ୍ୟପାଳ
# ଡକ୍ଟର ଏସ୍.ସି. ଜମିର୍‌ଙ୍କ
# ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ,

ପବିତ୍ର ଓଡ଼ିଶା ଦିବସ -୨୦୧୭ ଅବସରରେ ଆପଣମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି । ୧୯୩୬ ମସିହା ଅପ୍ରେଲ୍ ପହିଲାରେ ଆଜିର ଏହି ସ୍ମରଣୀୟ ଐତିହାସିକ ଦିବସରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ଓଡ଼ିଶା ମାଟିର ମହାନ୍ ବରପୁତ୍ର ଉତ୍କଳଗୌରବ ମଧୁସୂଦନ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଦେଓ, ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପରି ଅନେକ ମହାମନୀଷୀଙ୍କ ଅସୀମ ତ୍ୟାଗ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବହୁ ପ୍ରତୀକ୍ଷିତ ସ୍ୱପ୍ନକୁ ସାକାର କରିପାରିଥିଲା । ଭାଷାଭିତ୍ତିରେ ପ୍ରଦେଶ ଗଠନ ହେବାରେ ଆମ ରାଜ୍ୟ ଓଡ଼ିଶା ସମଗ୍ର ଦେଶରେ ପ୍ରଥମ । ଆଜିର ଏହି ସ୍ମରଣୀୟ ଦିବସରେ ଓଡ଼ିଆ ଭାଷାଭାଷୀ ଜନତାଙ୍କୁ ଏକତ୍ରିତ କରିଥିବା ସେହି ମହାନ୍ ଜନନାୟକଙ୍କୁ ଆମେ ଆମର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଓଡ଼ିଶା ପୂର୍ବରୁ କଳିଙ୍ଗ, ଉତ୍କଳ, ଉଡ୍ର ଏବଂ ଓଡ୍ର ଦେଶ ନାମରେ ପରିଚିତ ଥିଲା । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଧାମ ରୂପେ ସର୍ବଜନବିଦିତ ଓଡ଼ିଶାରେ ସର୍ବଧର୍ମର ସମନ୍ୱୟ ଘଟିଛି । ଓଡ଼ିଶାର ନୌବାଣିଜ୍ୟ ଇତିହାସ ଆମର ଗୌରବମୟ ଐତିହ୍ୟ ଓ ପରମ୍ପରା ସମ୍ପର୍କରେ ପ୍ରଭୂତ ସାକ୍ଷ୍ୟ ବହନ କରିଥାଏ । ଓଡ଼ିଆ ଭାଷା ହେଉଛି ଭାରତର ପ୍ରାଚୀନତମ ଭାଷା ମଧ୍ୟରୁ ଅନ୍ୟତମ । ବିଶିଷ୍ଟ ଭାଷାବିତ୍ ଓ ଗବେଷକ ଜନ୍ ବିମ୍‌ସଙ୍କ ସମେତ ଅନେକ ଓଡ଼ିଆ ଭାଷାର ପ୍ରାଚୀନତା ସପକ୍ଷରେ ବହୁବାର ମତବ୍ୟକ୍ତ କରିଛନ୍ତି । ନିକଟ ଅତୀତରେ ରାଜ୍ୟ ସରକାର ଓଡ଼ିଶା ସରକାରୀ ଭାଷା ଅଧିନିୟମ, ୧୯୫୪ରେ ଆବଶ୍ୟକ ସଂଶୋଧନ ଆଣି ଓଡ଼ିଶା ସରକାରୀ ଭାଷା ନିୟମ, ୨୦୧୬ ପ୍ରଣୟନ କରିଛନ୍ତି ।

ସମ୍ପ୍ରତି, ଓଡ଼ିଶା ରାଜ୍ୟ ଗଠନର ୮୦ ବର୍ଷ ପୂର୍ତ୍ତି ଏବଂ କିମ୍ବଦନ୍ତୀ ପୁରୁଷ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ବର୍ଷବ୍ୟାପୀ ଜନ୍ମଶତବାର୍ଷିକୀ ଉତ୍ସବ ପାଳିତ ହୋଇଯାଇଛି । ଏହି ବର୍ଷବ୍ୟାପୀ ଉତ୍ସବ ବ୍ଲକ୍‌ସ୍ତରରୁ ଆରମ୍ଭ କରି ରାଜ୍ୟ ଓ ଆନ୍ତର୍ଜାତିକ ସ୍ତରରେ ଆନନ୍ଦ ଉତ୍ସାହ ସହକାରେ ପାଳିତ ହୋଇଥିଲା । ୧୮୧୭ ମସିହାର ପ୍ରାକ୍ ସ୍ୱାଧୀନତା କାଳରେ ବକ୍ସି ଜଗବନ୍ଧୁଙ୍କ

ନେତୃତ୍ୱରେ ଖୋର୍ଦ୍ଧାଠାରେ ସଂଘଟିତ ପାଇକ ବିଦ୍ରୋହର ୨୦୦ ବର୍ଷ ପୂର୍ତ୍ତି ଉପଲକ୍ଷେ ରାଜ୍ୟ ସରକାର ଜାତି ଏବଂ ଏହି ଐତିହାସିକ ବୀରତ୍ୱର ଗାଥା ଅନୁରୂପ କାର୍ଯ୍ୟକ୍ରମମାନ ଆୟୋଜନ ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି ।

ରାଜ୍ୟ ସରକାର ସମସ୍ତ କ୍ଷେତ୍ରର ବିକାଶ ପାଇଁ ପ୍ରାଧାନ୍ୟ ଦେଉଛନ୍ତି । ମହିଳା, ଶିଶୁ, କୃଷକ, ଜନଜାତି, ଯୁବବର୍ଗ ଏବଂ ଛାତ୍ରଛାତ୍ରୀଙ୍କର ଉନ୍ନତି ଓ କଲ୍ୟାଣ ସାଧନ ଫଳରେ ସାମାଜିକ ଅର୍ଥନୈତିକ ସଶକ୍ତିକରଣ କ୍ଷେତ୍ରରେ ଏକ ନୂତନ ଦିଗ ଉନ୍ମୋଚିତ ହୋଇଛି । ଆମର ସମର୍ଥ ଲୋକବଳ ଏବଂ ପ୍ରାକୃତିକ ସମ୍ପଦ ବିକାଶ ନିମନ୍ତେ ନୂତନ ସୁଯୋଗ ସୃଷ୍ଟି କରିଛି ।

ସମସ୍ତ ସାଧାରଣ ସେବାର ଉପଯୁକ୍ତ ତଦାରଖ ନିମନ୍ତେ ରାଜ୍ୟ ସରକାର ୱେବ୍ ଆଧାରିତ ନିରୀକ୍ଷଣ ବ୍ୟବସ୍ଥା ଆରମ୍ଭ କରିଛନ୍ତି ଏବଂ ସାଧାରଣ ସେବାକେନ୍ଦ୍ରଗୁଡିକ ଜରିଆରେ ଅନ୍ ଲାଇନ୍ ସାଧାରଣ ସେବା ପ୍ରଦାନକୁ ସମନ୍ୱିତ କରିବା ପାଇଁ ପଦକ୍ଷେପ ମଧ୍ୟ ନିଆଯାଇଛି ।

କୃଷକମାନଙ୍କର ସଶକ୍ତିକରଣ ନିମନ୍ତେ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଖାଦ୍ୟ ଶସ୍ୟ ଉତ୍ପାଦନରେ ଆତ୍ମନିର୍ଭରଶୀଳତା, ନିଯୁକ୍ତି ସୃଷ୍ଟି, କୃଷିରେ ପ୍ରଯୁକ୍ତିବିଦ୍ୟା ପ୍ରୟୋଗ, ମୂଲ୍ୟ ସୂଚକାଙ୍କ ଅସ୍ଥିରତା ନିରାକରଣ, କୃଷକମାନଙ୍କର ଆୟ ଏବଂ କୃଷି କ୍ଷେତ୍ରରେ ନିବେଶ ବୃଦ୍ଧି ପରି ପ୍ରସଙ୍ଗ ଉପରେ ଦୃଷ୍ଟି ରଖିବାକୁ ଏକ ନୂତନ କୃଷି କ୍ୟାବିନେଟ୍ ଗଠନ କରାଯାଇଛି । ୨୦୧୪-୧୫ରେ ଆମର ଖାଦ୍ୟ ଶସ୍ୟ ଉତ୍ପାଦନ ୧୧୮.୨୪ ଲକ୍ଷ ମେଟ୍ରିକଟନ୍‌ର ସର୍ବକାଳୀନ ରେକର୍ଡ ଛୁଇଁପାରିଛି । କୃଷି ଯାନ୍ତ୍ରିକୀକରଣରେ ଅନ୍‌ଲାଇନ୍ ରିହାତି ବ୍ୟବସ୍ଥା ପ୍ରଚଳନ କରିବାରେ ଓଡ଼ିଶା ସାରା ଦେଶରେ ପ୍ରଥମ । ରାଜ୍ୟରେ ପ୍ରତ୍ୟକ୍ଷ ସୁବିଧା ହସ୍ତାନ୍ତରଣ ପ୍ରକ୍ରିୟାରେ ବିଭିନ୍ନ ଯୋଜନାରେ ନିବେଶ ରିହାତି ପ୍ରଦାନ କରାଯାଉଛି । ଏଯାବତ୍, ୫୭.୬୧ ଲକ୍ଷ କୃଷକ ପରିବାରଙ୍କୁ ବିଜୁ କୃଷକ କଲ୍ୟାଣ ଯୋଜନାରେ ପଞ୍ଜିକୃତ କରାଯାଇଛି ଏବଂ ସେମାନଙ୍କୁ ସ୍ୱାସ୍ଥ୍ୟବୀମା ସୁବିଧା ଯୋଗାଇ ଦିଆଯାଉଛି । କିଷାନ କ୍ରେଡିଟ୍ କାର୍ଡ ପ୍ରତିବଦଳରେ 'ରୁପେ ଡେବିଟ୍ କାର୍ଡ' ପ୍ରଚଳନ ସହ ୨୦୧୭ ବର୍ଷର ମଧ୍ୟଭାଗ ସୁଦ୍ଧା ରାଜ୍ୟରେ କୃଷକମାନଙ୍କୁ ୧୧.୪୬ ଲକ୍ଷ ରୁପେ କାର୍ଡ ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଛି । କୃଷକମାନଙ୍କୁ ଶସ୍ୟ ଅମଳ ସୁବିଧା ଓ ଅମଳ ପରବର୍ତ୍ତୀ କ୍ଷତି ହ୍ରାସ ଉଦ୍ଦେଶ୍ୟରେ ୭୩୭ଟି କଂକ୍ରିଟ୍ ଧାନ ଖଳା ନିର୍ମାଣ କରାଯାଇଛି ।

କୃଷକମାନଙ୍କ ଅର୍ଥନୈତିକ ଅବସ୍ଥାର ଉନ୍ନତି ନିମନ୍ତେ କୃଷି ବିପଣନ ବ୍ୟବସ୍ଥା ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଯୋଗାଯୋଗ ଓ ସୂଚନା ପ୍ରଯୁକ୍ତିର ଦ୍ରୁତ ବିକାଶ ଯୋଗୁଁ ବିପଣନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆସିଛି । ବୈଜ୍ଞାନିକ ପ୍ରଣାଳୀରେ ଶସ୍ୟ ସଂରକ୍ଷଣ ସୁବିଧା ସୃଷ୍ଟି କରିବା ଉଦ୍ଦେଶ୍ୟରେ, ୧୮୦ଟି ଗୋଦାମ ଘର ନିର୍ମାଣ କରାଯାଇଛି ଏବଂ ୨୦୧୭ ବର୍ଷ ଶେଷ ସୁଦ୍ଧା ଅଧିକ ୨୯୨ଟି ଗୋଦାମ ଘର ନିର୍ମାଣ କରାଯାଇ ୨.୧୧ ଲକ୍ଷ ମେଟ୍ରିକ୍‌ଟନ୍‌ର ସାମର୍ଥ୍ୟ ସୃଷ୍ଟି କରାଯାଇ ପାରିବ ।

ଜଳନିଧି ଏବଂ ବିଜୁ କୃଷକ ବିକାଶ ଯୋଜନା ସମେତ ବିଭିନ୍ନ ଯୋଜନା ଅଧୀନରେ ଅତିରିକ୍ତ ଜଳସେଚନ କ୍ଷମତା ସୃଷ୍ଟି କରିବା ପାଇଁ ଗୁରୁତ୍ୱ ଦିଆଯାଉଛି । ରାଜ୍ୟ ସରକାରଙ୍କ ପ୍ରମୁଖ କାର୍ଯ୍ୟକ୍ରମ ବୃହତ୍ ଉଠାଜଳସେଚନ ଯୋଜନାକୁ ପଶ୍ଚିମ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ସମାଜସେବୀ ପାର୍ବତୀ ଗିରିଙ୍କ ନାମରେ ନାମିତ କରାଯାଇ 'ପାର୍ବତୀ ଗିରି ବୃହତ୍ ଉଠାଜଳସେଚନ ଯୋଜନା' ରଖାଯାଇଛି । ପୋଷଣୀୟ ଜଳସେଚନ ଏବଂ ଜଳସେଚନ ବ୍ୟବସ୍ଥାର ସୁପରିଚାଳନା

ନିମନ୍ତେ ରାଜ୍ୟ ସରକାର ବିଶେଷ ଧ୍ୟାନ ଦେଉଛନ୍ତି । ୨୦୧୭-୧୮ ବର୍ଷରେ ୫୪ଟି ପାର୍ବତୀ ଗିରି ବୃହତ୍ ଉଠାଜଳସେଚନ ପ୍ରକଳ୍ପ, ୧୭,୦୦୦ଟି ଗଭୀର ବୋରୱେଲ୍, ୩,୦୦୦ଟି ଅଗଭୀର ନଳକୂପ, ୭,୦୯୯ଟି ମାଇକ୍ରୋ ନଦୀ ଉଠାଜଳସେଚନ, ୨,୫୧୨ଟି ଉଠା ଜଳସେଚନ ପ୍ରକଳ୍ପ ଏବଂ ୪,୩୦୦ଟି ଆଡିବନ୍ଧ ନିର୍ମାଣ କରିବାର ଲକ୍ଷ୍ୟଧାର୍ଯ୍ୟ ହୋଇଛି ।

ଗ୍ରୀଷ୍ମକାଳରେ ଜଳକ୍ଲିଷ୍ଟ ଅଞ୍ଚଳରେ ପାନୀୟ ଜଳ ସଂକଟର ଦୂରୀକରଣ ନିମନ୍ତେ ରାଜ୍ୟ ସରକାର ୨୪ଟି ପୌରାଞ୍ଚଳରେ ୪୨୨ଟି ସମସ୍ୟା ବହୁଳ ସ୍ଥାନ ଚିହ୍ନଟ କରିଛନ୍ତି ଏବଂ ଏହାର ପ୍ରତିକାର ନିମନ୍ତେ ଉଭୟ ସ୍ୱଳ୍ପ ଓ ଦୀର୍ଘମିଆଦୀ ଯୋଜନା କାର୍ଯ୍ୟକାରୀ କରାଯାଉଛି । ସଂକ୍ରମଣ ତଥା ଜଳବାହିତ ରୋଗକୁ ପ୍ରତିହତ କରିବା ନିମନ୍ତେ ବହୁ ପୁରୁଣା ଜଳଯୋଗାଣ ପାଇପ୍‌ଗୁଡ଼ିକୁ ପରିବର୍ତ୍ତନ କରାଯାଉଛି । ଚଳିତ ଆର୍ଥିକ ବର୍ଷରେ ଗ୍ରାମୀଣ ଓଡ଼ିଶାରେ ସ୍ୱଚ୍ଛ ପାନୀୟ ଜଳ ଯୋଗାଇଦେବା ନିମନ୍ତେ ରାଜ୍ୟରେ ୪,୪୧,୬୩୫ଟି ଜଳଉତ୍ସ ସହ ୧୦,୪୨୦ଟି ପାଇପ୍ ଜଳଯୋଗାଣ ପ୍ରକଳ୍ପ ସ୍ଥାପନ କରାଯାଇଛି ।

ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ବେକ୍ଷଣ ଦ୍ୱାରା ପ୍ରକାଶିତ ରିପୋର୍ଟ ଅନୁଯାୟୀ ୨୦୦୫-୦୬ ବର୍ଷରେ ଶିଶୁ ମୃତ୍ୟୁହାର ୬୫ ଥିବାବେଳେ ୨୦୧୫-୧୬ରେ ଏହା ଉଲ୍ଲେଖନୀୟଭାବେ ୪୦କୁ ହ୍ରାସ ପାଇଛି । ଆମ ରାଜ୍ୟରେ ଶିଶୁ ମୃତ୍ୟୁହାର ଜାତୀୟସ୍ତରଠାରୁ କମ୍ ଅଛି । ସାଧାରଣଭାବେ ରାଜ୍ୟରେ ଶିଶୁ ଲିଙ୍ଗଗତ ଅନୁପାତ ହ୍ରାସ ରୋକିବା ଏବଂ ନିର୍ଦ୍ଦିଷ୍ଟଭାବେ ଶିଶୁ ଲିଙ୍ଗଗତ ହ୍ରାସ ପାଉଥିବା ଅନୁଗୁଳ, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାରେ ୩ବର୍ଷ ପାଇଁ 'ବିଜୁ କନ୍ୟାରତ୍ନ ଯୋଜନା' କାର୍ଯ୍ୟକାରୀ ହେଉଛି ।

ରାଜ୍ୟରେ ଉପଯୁକ୍ତ ଯତ୍ନ ଓ ସୁରକ୍ଷା ଆବଶ୍ୟକ କରୁଥିବା ଶିଶୁମାନଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ବିଜୁ ଶିଶୁ ସୁରକ୍ଷା ଯୋଜନା ନାମକ ଏକ ଅଭିନବ ଯୋଜନାର ଶୁଭାରମ୍ଭ ହୋଇଛି । ମମତା ଯୋଜନାରେ ୨୫ ଲକ୍ଷରୁ ଅଧିକ ମହିଳାଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି ଏବଂ ସେମାନଙ୍କ ବ୍ୟାଙ୍କ୍ ଖାତାରେ ସିଧାସଳଖ ପ୍ରାୟ ୧୧ଶହ କୋଟି ଟଙ୍କା ଜମା କରାଯାଇଛି ।

'ସାମାଜିକ ସୁରକ୍ଷା ଏବଂ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ' ଜରିଆରେ ସମ୍ପ୍ରତି ୪୩.୨୩ ଲକ୍ଷ ହିତାଧିକାରୀ ପ୍ରତି ମାସରେ ପେନ୍‌ସନ୍ ପାଉଛନ୍ତି । ଏହି ବର୍ଷ ୩୦ ବର୍ଷରୁ ଊର୍ଦ୍ଧ୍ୱ ଅବିବାହିତା ମହିଳା ଏହି ପେନ୍‌ସନ୍ ଯୋଜନାରେ ସାମିଲ୍ ହୋଇଛନ୍ତି । ମଧୁବାବୁ ପେନ୍‌ସନ୍ ଯୋଜନାରେ ୨୦୧୬-୧୭ ବର୍ଷରେ ଅଧିକ ୩ଲକ୍ଷ ହିତାଧିକାରୀ ଅନ୍ତର୍ଭୁକ୍ତ ହେବା ସହ ନିୟମିତ ପେନ୍‌ସନ୍ ପାଉଛନ୍ତି ।

ରାଜ୍ୟରେ ତୃଣମୂଳ ସ୍ତରରେ ପ୍ରଶାସନିକ ଦକ୍ଷତା ବୃଦ୍ଧି କରିବା ପାଇଁ ୫୦୦ରୁ ଅଧିକ ନୂତନ ଗ୍ରାମପଞ୍ଚାୟତ ଗଠନ କରାଯାଇଛି । ରାଜ୍ୟର ପ୍ରତି ଗ୍ରାମପଞ୍ଚାୟତରେ ସପ୍ତାହକୁ ଦୁଇଥର ଅନୁଷ୍ଠିତ ହେଉଥିବା 'ମଧୁବାବୁ ଆଇନ୍ ସହାୟତା ଶିବିର' ଜରିଆରେ ଗ୍ରାମାଞ୍ଚଳର ଲୋକମାନଙ୍କୁ ମାଗଣା ଆଇନ୍ ସହାୟତା ଯୋଗାଇ ଦିଆଯାଉଛି ।

ବଲାଙ୍ଗୀର, ବରଗଡ, କଳାହାଣ୍ଡି ଓ ନୂଆପଡା ଜିଲ୍ଲାର ଦାଦନ ସମସ୍ୟା ପ୍ରବଣ ବ୍ଲକ୍‌ଗୁଡ଼ିକରେ ଦାଦନ ଶ୍ରମିକ ପରିବାରର ପିଲାମାନଙ୍କ ନିମନ୍ତେ ସାମୟିକ ଛାତ୍ରାବାସ ନିର୍ମାଣ କରାଯାଇଛି । ଓଡ଼ିଶା କୋଠାବାଡି ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ ଅଧୀନରେ ଓଡ଼ିଆ ପ୍ରବାସୀ ନିର୍ମାଣ ଶ୍ରମିକଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି । ୫ଟି ରାଜ୍ୟରେ ଓଡ଼ିଶା ପ୍ରବାସୀ ଶ୍ରମିକ ସହାୟତା ଡେସ୍କ ପ୍ରତିଷ୍ଠା କରାଯାଇଛି ।

ରାଜ୍ୟର ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ବିକାଶ ପାଇଁ ରାଜ୍ୟ ସରକାର ସାମୂହିକ ଓ ସମନ୍ୱିତ ପଦକ୍ଷେପ ଗ୍ରହଣ କରିଛନ୍ତି । ସେମାନଙ୍କର ସାମାଜିକ, ଆର୍ôକ, ଶିକ୍ଷାଗତ, ସ୍ୱାସ୍ଥ୍ୟ ଓ ଜୀବିକା ନିର୍ବାହ କ୍ଷେତ୍ରରେ ଉନ୍ନତି ନିମନ୍ତେ ଅଗ୍ରାଧିକାର ପ୍ରଦାନ କରାଯାଉଛି ।

ରାଜ୍ୟରେ ଯୁବଗୋଷ୍ଠୀଙ୍କ ନିମନ୍ତେ ନିଯୁକ୍ତି ସୁଯୋଗ ସୃଷ୍ଟି ଉଦ୍ଦେଶ୍ୟରେ ବୈଷୟିକ ଶିକ୍ଷା ଏବଂ ପ୍ରଶିକ୍ଷଣ କ୍ଷେତ୍ରର ବିକାଶ ତଥା ସମ୍ପ୍ରସାରଣ ଉପରେ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱାରୋପ କରୁଛନ୍ତି । ଏହି ଉଦ୍ଦେଶ୍ୟରେ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଗଠନ କରାଯାଇଛି ।

ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗଗୁଡ଼ିକର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ରାଜ୍ୟ ସରକାର ନୂତନ କରି ଓଡ଼ିଶା ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିକାଶ ନୀତି – ୨୦୧୬ ପ୍ରଣୟନ କରିଛନ୍ତି ।

ରାଜ୍ୟରେ ଷ୍ଟାର୍ଟ ଅପ୍ ପରିବେଶର ଉନ୍ନତି ଓ ସୁଦୃଢ଼ୀକରଣ ନିମନ୍ତେ ରାଜ୍ୟ ସରକାର ୨୦୨୦ ମସିହା ସୁଦ୍ଧା ଓଡ଼ିଶାକୁ ଏକ ବିଶ୍ୱସ୍ତରୀୟ ଷ୍ଟାର୍ଟ ଅପ୍ କେନ୍ଦ୍ର ଭାବରେ ବିକଶିତ କରିବା ଓ ଆସନ୍ତା ୫ବର୍ଷ ମଧ୍ୟରେ ରାଜ୍ୟରେ ଏକହଜାର ଷ୍ଟାର୍ଟ ଅପ୍ ସ୍ଥାପନ ସୁବିଧା ଯୋଗାଇ ଦେବା ପାଇଁ ଉତ୍ସର୍ଗୀକୃତ ଷ୍ଟାର୍ଟ ଅପ୍ ନୀତି–୨୦୧୬ ପ୍ରଣୟନ କରିଛନ୍ତି । ନିକଟରେ ରାଜ୍ୟ ରାଜଧାନୀ ଭୁବନେଶ୍ୱରଠାରେ ରାଜ୍ୟର ବୃହତ୍ ନିବେଶ ପ୍ରଦର୍ଶନୀ, 'ମେକ୍ ଇନ୍ ଓଡ଼ିଶା' ଆୟୋଜିତ ହୋଇଯାଇଛି, ଯେଉଁଥିରେ ୧୦ଟି କ୍ଷେତ୍ରରେ ୨ଲକ୍ଷ କୋଟି ଟଙ୍କାର ପୁଞ୍ଜିନିବେଶ ଏବଂ ରାଜ୍ୟର ଯୁବବର୍ଗଙ୍କ ପାଇଁ ୧.୪ ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟିର ପ୍ରସ୍ତାବ ମିଳିଛି । ୮୦ରୁ ଊର୍ଦ୍ଧ୍ୱ କମ୍ପାନୀ ରାଜ୍ୟରେ ପୁଞ୍ଜିନିବେଶ କରିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି ।

ଓଡ଼ିଶାରେ ଆଜି ପର୍ଯ୍ୟାପ୍ତ ସୁଯୋଗର ଭିତ୍ତିଭୂମି ସୃଷ୍ଟି କରାଯାଇପାରିଛି । ଏହି ମହାନ୍ ଭୂଖଣ୍ଡର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ ଓ ଗୌରବ ଉଜ୍ଜୀବିତ କରି ରଖିବା ଲକ୍ଷ୍ୟରେ ଆମ୍ଭମାନଙ୍କୁ ମିଳିତଭାବେ କାର୍ଯ୍ୟ କରିବାକୁ ପଡିବ । ଆଜିର ଏହି ଐତିହାସିକ ଦିବସ ଅବସରରେ ଆସନ୍ତୁ, ଓଡ଼ିଶାକୁ ଏକ ବିକାଶୋନ୍ମୁଖୀ ତଥା ଅଗ୍ରଣୀ ରାଜ୍ୟରେ ପରିଣତ କରିବାକୁ ଆମ୍ଭେ ସମସ୍ତେ ସଂକଳ୍ପବଦ୍ଧ ହେବା ।

**ବନ୍ଦେ ଉତ୍କଳ ଜନନୀ ।**

ଓଡ଼ିଶା ଦିବସ -୨୦୧୭ ପାଳନ ଅବସରରେ

# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ଓଡ଼ିଶା ଦିବସ ଅବସରରେ ଆପଣମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି । ଅପ୍ରେଲ ପହିଲା ପ୍ରତି ଓଡ଼ିଆଙ୍କ ପାଇଁ ଗର୍ବ ଓ ଗୌରବର ଦିନ । ଆମ ପାଇଁ ଏହି ଗୌରବ ଆଣିଥିବା ବରପୁତ୍ରମାନଙ୍କ ପ୍ରତି ଏହି ଅବସରରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ଫକୀର ମୋହନ ସେନାପତି, ଗଙ୍ଗାଧର ମେହେର, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପରି ବରପୁତ୍ରମାନଙ୍କର ଅବଦାନକୁ ଏ ଜାତି କେବେ ଭୁଲି ପାରିବ ନାହିଁ ।

ଓଡ଼ିଆ ଭାଷା, ସାହିତ୍ୟ, ନୃତ୍ୟ, ସଙ୍ଗୀତ ଓ କଳାକୁ ଯେଉଁମାନେ ସମୃଦ୍ଧ କରିଛନ୍ତି, ଦେଶ ବିଦେଶରେ ଆମ ସଂସ୍କୃତିର ପ୍ରଚାର ପ୍ରସାର କରି ଓଡ଼ିଶାର ଗୌରବ ବଢାଇଛନ୍ତି, ସେମାନଙ୍କ ପ୍ରତି ମୋର ସମ୍ମାନ ଜଣାଉଛି ।

ଓଡ଼ିଆ ଜାତିର ଇତିହାସ ମହାନ୍ । ଏ ଜାତି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିରାଟ ସାମ୍ରାଜ୍ୟ ଗଠନ କରିଥିଲା । ସମ୍ରାଟ ଖାରବେଳ ଓ ସମ୍ରାଟ କପିଳେନ୍ଦ୍ରଦେବଙ୍କ ବୀରତ୍ୱ ଭାରତ ଇତିହାସର ଏକ ଗୌରବମୟ ଅଧ୍ୟାୟ । ନୌବାଣିଜ୍ୟରେ ମଧ୍ୟ ଓଡ଼ିଶା ସାରା ବିଶ୍ୱରେ ସୁନାମ କରିଥିଲା । ଓଡ଼ିଆ ପାଇକମାନଙ୍କର ସାହସ, ଶୌର୍ଯ୍ୟ ଓ ଯୁଦ୍ଧକୌଶଳ ଏ ଜାତିକୁ ଗୌରବାନ୍ୱିତ କରିଛି । ସ୍ୱାଧୀନତା ପାଇଁ ପ୍ରଥମ ସଂଗ୍ରାମ ଓଡ଼ିଶା ମାଟିରୁ ହିଁ ଆରମ୍ଭ ହୋଇଥିଲା । ଚଳିତ ବର୍ଷ ଆମେ ଏ ସଂଗ୍ରାମ, ପାଇକ ବିଦ୍ରୋହର ଦୁଇଶହ ବର୍ଷ ପାଳନ କରୁଛୁ । ଏହି ଅବସରରେ ମହାନ୍ ସଂଗ୍ରାମୀ ବକ୍ସି ଜଗବନ୍ଧୁଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଓଡ଼ିଆ ଭାଷା ଓ ସାହିତ୍ୟର ସୁରକ୍ଷା ଓ ପ୍ରସାର ପାଇଁ ରାଜ୍ୟ ସରକାର ନିଷ୍ଠାର ସହ କାର୍ଯ୍ୟ କରୁଛନ୍ତି । ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଛି । ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ କରାଯାଉଛି । ଏଥିପାଇଁ ଓଡ଼ିଆ ଭାଷା ଅଧିନିୟମ ୧୯୫୪ ପାଇଁ ନିୟମାବଳୀ ମଧ୍ୟ ତିଆରି ହୋଇଛି । ଓଡ଼ିଆ ଭାଷା ଓ ସାହିତ୍ୟ ଉପରେ ଉଚ୍ଚତର ଗବେଷଣା ପାଇଁ ଦେଶର ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟମାନଙ୍କରେ ଚେୟାର ପ୍ରତିଷ୍ଠା କରାଯାଇଛି । ଓଡ଼ିଆ ଭର୍ଚୁଆଲ ଏକାଡେମୀ ଜରିଆରେ ସାରା ବିଶ୍ୱରେ ଆମ ଭାଷା ଓ ସାହିତ୍ୟର ପ୍ରସାର ପାଇଁ ସୁଯୋଗ ସୃଷ୍ଟି କରାଯାଇଛି ।

ଗତବର୍ଷଠାରୁ ଆମେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଅଶୀ ବର୍ଷ ପାଳନ କରୁଥିଲୁ । ଏହି ଅଶୀ ବର୍ଷ ମଧ୍ୟରେ ଓଡ଼ିଶା, ଇତିହାସର ଅନେକ ଉତ୍‌ଥାନ ପତନ ଦେଇ ଗତି କରିଛି । ଓଡ଼ିଶାବାସୀ ଅନେକ ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା କରିଛନ୍ତି । କିନ୍ତୁ ତା' ଭିତରେ ବିକାଶ ପାଇଁ ଆମର ସଂଗ୍ରାମ ଜାରି ରହିଛି । ଓଡ଼ିଶା ଆଜି ଏକ happening state ହୋଇପାରିଛି । ରାଜ୍ୟରେ ଆର୍ଥିକ ଅଭିବୃଦ୍ଧି ବଢ଼ିଛି । ଅର୍ଥନୈତିକ କାର୍ଯ୍ୟକଳାପ ବଢ଼ିଛି । ବିକାଶ ଓ କଲ୍ୟାଣ ପାଇଁ ରାଜ୍ୟ ପାଣ୍ଠିରୁ ବିଭିନ୍ନ ଯୋଜନା ଜାରି ରହିଛି । ପୁଞ୍ଜି ବିନିଯୋଗ ବଢ଼ିଛି ।  ଭିତ୍ତିଭୂମିର ବିକାଶ ଘଟିଛି । ଗାଁ ଆଜି ବିକାଶର କେନ୍ଦ୍ର ହୋଇଛି । କୃଷି ଉତ୍ପାଦନ ବଢ଼ିଛି । ଶିଶୁ ମୃତ୍ୟୁହାର ଓ ମାତୃ ମୃତ୍ୟୁହାର କ୍ଷେତ୍ରରେ ଓଡ଼ିଶା ଜାତୀୟ ହାରଠାରୁ ଭଲ ସ୍ଥିତିରେ ଅଛି । ବିଭିନ୍ନ ସ୍ୱାସ୍ଥ୍ୟ ସୂଚକାଙ୍କରେ ମଧ୍ୟ ରାଜ୍ୟ ଭଲ ସ୍ଥିତିରେ ଅଛି । ମହିଳା ସଶକ୍ତିକରଣ ଆଜି ଓଡ଼ିଶା ପାଇଁ ଏକ ସଫଳ କାହାଣୀ ହୋଇପାରିଛି । ପଚାଶ ହଜାରରୁ ଅଧିକ ମା'ମାନଙ୍କ ହାତରେ ଆଜି ଜନତା କ୍ଷମତା ଦେଇଛନ୍ତି । ନିର୍ବାଚିତ ପ୍ରତିନିଧି ଭାବରେ ସେମାନେ ରାଜ୍ୟର ବିକାଶର ଦାୟିତ୍ୱ ନେଇଛନ୍ତି । ଏହା ଏକ ଐତିହାସିକ ସଫଳତା । ଦଳିତ ଓ ଜନଜାତିମାନଙ୍କ ପାଇଁ ବିଭିନ୍ନ କଲ୍ୟାଣ ଯୋଜନା ଆଜି ସେମାନଙ୍କୁ ବିକାଶ ଧାରାରେ ସଫଳ ଭାବରେ ସାମିଲ କରିପାରିଛି । ମାନବ ସମ୍ବଳର ବିକାଶ ପାଇଁ ଶିକ୍ଷା ଓ ତାଲିମ ଉପରେ ସ୍ୱତନ୍ତ୍ର ଗୁରୁତ୍ୱ ଦିଆଯାଇଛି । ଷ୍ଟାର୍ଟ-ଅପ-ପଲିସି ଯୁବ ଉଦ୍ୟୋଗୀମାନଙ୍କ ମନରେ ଭରସା ସୃଷ୍ଟି କରିପାରିଛି । ଦେଶ ବିଦେଶରେ ବିଭିନ୍ନ କ୍ଷେତ୍ରରେ ଓଡ଼ିଆମାନଙ୍କର ସଫଳତା ଜାତିର ଗୌରବ ବଢ଼ାଇ ଚାଲିଛି ।

ଓଡ଼ିଆ ଜାତି, ସ୍ୱାଭିମାନୀ ଜାତି । ଓଡ଼ିଆ ତା'ର ସ୍ୱାଭିମାନ ସହିତ କେବେ ସାଲିସ କରିନାହିଁ କି କରିପାରିବ ନାହିଁ । ଦେଶର ବିକାଶ ଯାତ୍ରାରେ ଓଡ଼ିଶାକୁ ତା'ର ଉପଯୁକ୍ତ ସ୍ଥାନ ଦେବା ପାଇଁ ଆସନ୍ତୁ, ଆମର ସଂଗ୍ରାମକୁ ଆହୁରି ଶକ୍ତିଶାଳୀ କରିବା ।

**ବନ୍ଦେ ଉତ୍କଳ ଜନନୀ ।**

# ଓଡ଼ିଶା ଦିବସ -୨୦୧୭ ପାଳନ ଅବସରରେ

# ମାନ୍ୟବର ଜଙ୍ଗଲ ଓ ପରିବେଶ, ସଂସଦୀୟ ବ୍ୟାପାର, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବିକ୍ରମ କେଶରୀ ଆରୁଖଙ୍କ ବାର୍ତ୍ତା



'ଉତ୍କଳ ଦିବସ'- ୨୦୧୭ର ଶୁଭ ଓ ପବିତ୍ର ଅବସରରେ ଓଡ଼ିଆ ଭାଇ ଓ ଭଉଣୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଓ ହାର୍ଦ୍ଦିକ ଅଭିନନ୍ଦନ ।

ଓଡ଼ିଶା ତା'ର ସାମାଜିକ, ଅର୍ଥନୈତିକ, ଧାର୍ମିକ, ସାଂସ୍କୃତିକ ଓ ସାମରିକ ବିଭବରେ ସମଗ୍ର ପୃଥିବୀରେ ପରିଚିତ ହୋଇଥିଲା । କଳିଙ୍ଗ, କୋଶଳ, ତୋଷଳ, ଉଡ୍ର, ଉତ୍କଳ ଇତ୍ୟାଦି ନାମରେ ପରିଚିତ ଏହି ଓଡ଼ିଶା ଖ୍ରୀଷ୍ଟପୂର୍ବ ୬୦୦ରୁ ତା'ର ଐତିହାସିକ ସ୍ଥିତି ପ୍ରତିପାଦିତ କରିଆସିଛି ।

ଚେଦିବଂଶର ମହାନ୍ ନରପତି ମହାମେଘବାହନ ଐର ଖାରବେଳଙ୍କ ସୁଶାସନ ପରେ ସମ୍ରାଟ ଅଶୋକଙ୍କ ହୃଦୟ ପରିବର୍ତ୍ତନ କରିଥିବା ଏହି ଓଡ଼ିଶା ସମୟକ୍ରମେ ବିଭିନ୍ନ ଶାସନ ଅଧୀନରେ ରହିଥିଲା । ଶୈଳୋଦ୍ଭବ, ଭୌମକର, ସୋମବଂଶୀ, ଗଙ୍ଗ, ସୂର୍ଯ୍ୟବଂଶୀ ଇତ୍ୟାଦି ରାଜାମାନଙ୍କର ଶାସନରେ ରହିବା ପରେ ଓଡ଼ିଶା ପରବର୍ତ୍ତୀ ସମୟରେ ଆଫ୍‌ଗାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ଅଧୀନକୁ ଆସିଲା । ପରାଧୀନତାର କଷାଘାତରେ ଓଡ଼ିଶା ନିଜର ଗୌରବ ଓ ବିଭବ ହରାଇବାକୁ ବାଧ ହେଲା । ନଅଙ୍କ ଦୁର୍ଭିକ୍ଷ ପରି ବିପଦକୁ ସାମ୍ନା କରିବା ସହ ବିଭିନ୍ନ ଜନବିରୋଧୀ ଆଇନର ନିର୍ଯ୍ୟାତନା ସହ୍ୟ କରି ଓଡ଼ିଶାବାସୀ ନିଜର ପରିଚିତିର ଉତ୍‌ଥାନ ଲୋଡ଼ିଲେ । ଓଡ଼ିଆଭାଷୀ ଲୋକମାନେ ତିନିତିନୋଟି ପ୍ରଶାସନର ଅଧୀନରେ ରହି ଇଂରାଜୀ, ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ଭାଷାର ବ୍ୟବହାର ନିମନ୍ତେ ବାଧ ହେଲେ । ଫଳରେ ସାଧାରଣ ଓଡ଼ିଆ ଲୋକଟି ତା'ର ସମ୍ପର୍କ, ଭାବପ୍ରକାଶ ଓ ଯୋଗାଯୋଗର ଅଧିକାର ହରାଇ ବସିଲା । ଏହିପରି ଦାରୁଣ ବିପତ୍ତି ସମୟରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରି ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ସହିତ ଓଡ଼ିଆଙ୍କର ପ୍ରକୃତ ପରିଚୟକୁ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଆନ୍ଦୋଳନର ଆବଶ୍ୟକତା ଥିଲା । ଏପରି ଏକ ଐତିହାସିକ ଆବଶ୍ୟକତାକୁ ଅନୁଭବ କରିଥିଲେ ଅନେକ ଜାତୀୟତାବାଦୀ ମହାପୁରୁଷ । ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ରାଜା ହରିହର ମର୍ଦ୍ଦରାଜ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଆଚାର୍ଯ୍ୟ ହରିହରଙ୍କ ପରି ବ୍ୟକ୍ତିତ୍ୱମାନେ ଏହି ଆନ୍ଦୋଳନର ନେତୃତ୍ୱ ନେଲେ । ୧୮୮୦ ମସିହାରୁ ୧୯୩୬ ମସିହା ପର୍ଯ୍ୟନ୍ତ ପ୍ରାୟ ୫୦ ବର୍ଷରୁ ଅଧିକ କାଳ ଧରି ଏହି ମହାପୁରୁଷମାନଙ୍କ ନିରବଚ୍ଛିନ୍ନ ଆନ୍ଦୋଳନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସ୍ୱପ୍ନକୁ ଫଳବତୀ କଲା । ତଥାପି ଷଢେଇକଳା, ଖରସୁଆଁ ପ୍ରଭୃତି ଓଡିଆ ଭାଷାଭାଷୀ ଅଞ୍ଚଳ ଏ ପର୍ଯ୍ୟନ୍ତ ପଡୋଶୀ ରାଜ୍ୟରେ ରହିଯାଇଛି ।

ଇତିମଧ୍ୟରେ ଦୀର୍ଘ ୮୧ ବର୍ଷ ବିତି ଯାଇଛି । ସ୍ୱତନ୍ତ୍ର ଓଡ଼ିଶା ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟ, ଖଣିଜ ସମ୍ପଦ, ପର୍ଯ୍ୟଟନ ସମ୍ବଳ ଓ ସାଂସ୍କୃତିକ ସମ୍ପଦ ନିମନ୍ତେ ସାରା ପୃଥିବୀର ଦୃଷ୍ଟି ଆକର୍ଷଣ କରିଛି । ଆମର ମନ୍ଦିର, ନୃତ୍ୟ ସଙ୍ଗୀତ, ଭାସ୍କର୍ଯ୍ୟ, ଚାରୁ ଓ କାରୁକଳା, ମହାନ ଶାସ୍ତ୍ରୀୟ ଭାଷା, ଖାଦ୍ୟ-ପାନୀୟ, ହସ୍ତଶିଳ୍ପ ଇତ୍ୟାଦି ଓଡ଼ିଶାର ପରିଚିତିକୁ ସୁଦୃଢ଼ କରିଛି । ଆମର ଓଡ଼ିଶୀ ଓ ସମ୍ବଲପୁରୀ ନୃତ୍ୟ, ବାନ୍ଧକଳା ସାଙ୍ଗକୁ ରୂପା ତାରକସୀ ସାରା ପୃଥିବୀରେ ପ୍ରସିଦ୍ଧି ଅର୍ଜନ କରିଛି ।

ବନ୍ଧୁଗଣ, ଏହି ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ହେଉଛି ଆମ ସମସ୍ତଙ୍କ ଦାୟିତ୍ୱ । ଆମକୁ ବହୁ ସମୟରେ ଅବହେଳାର ଶିକାର ହେବାକୁ ପଡିଛି, ଆମର ଦାବି ଓ ହକ୍‌କୁ ଅଣଦେଖା କରାଯାଇଛି । ଆମ ବିକାଶ ପଥରେ ଆଜି ଅନେକ ପ୍ରତିବନ୍ଧକ । ତଥାପି ବିଭିନ୍ନ ପ୍ରତିବନ୍ଧକକୁ ସାମ୍ନା କରିବାରେ ଆମ ରାଜ୍ୟବାସୀ ଦୃଢ଼ ମନୋବଳ ଓ ସାହସ ପ୍ରଦର୍ଶନ କରିଛନ୍ତି । ସ୍ରୋତର ପ୍ରତିକୂଳରେ ଗତି କରିବାର ଦକ୍ଷତା ମଧ୍ୟ ଆମେ ପ୍ରମାଣିତ କରିଛେ ।

କଠୋର ଇଚ୍ଛାଶକ୍ତି ଆଗରେ ସବୁ ପ୍ରତିବନ୍ଧକ ହାର ମାନିଯାଏ । ସାହସ ଓ କିଛି ନୂଆ କରି ଦେଖାଇବାର ଇଚ୍ଛା ଆଗରେ ଯେ ସବୁକିଛି ପରାଜୟ ବରଣ କରେ, ଏକଥା ଓଡ଼ିଶାବାସୀ ଓ ଓଡ଼ିଶା ମାଟିର ମହାନ ବରପୁତ୍ର ବିଜୁ ପଟ୍ଟନାୟକ ପ୍ରମାଣିତ କରିଛନ୍ତି । ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ହୃତଗୌରବ, ମୃତ ଗୌରବ, ଗତ ଗୌରବର ରୋମନ୍ଥକ, ସେହି ସାହସିକ ପରମ୍ପରାର ଉପଯୁକ୍ତ ଦାୟାଦ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ସମାରୋହ ରାଜ୍ୟ ମଧ୍ୟରେ ଓ ରାଜ୍ୟ ବାହାରେ ଏବଂ ବିଦେଶରେ ଗତବର୍ଷ ମାର୍ଚ୍ଚ ୫ ତାରିଖରୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ମହାସମାରୋହରେ ପାଳନ କରାଯାଇଛି । ବିଜୁବାବୁଙ୍କ ସ୍ୱପ୍ନ, ସଂକଳ୍ପ ଓ ସାଧନା, ଅନନ୍ୟ ସ୍ମୃତି ଓ କୀର୍ତ୍ତି ଚିରକାଳ ସମୁଜ୍ଜ୍ୱଳ ହୋଇ ରହିବ । ତାଙ୍କର ଆଦର୍ଶ ଓ ଚିନ୍ତାଧାରାକୁ ପାଥେୟ କରି ଆଜି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶାର ଅର୍ଥନୈତିକ ଉନ୍ନତି ପାଇଁ ସମସ୍ତ ପ୍ରକାର ଉଦ୍ୟମ କରି ଚାଲିଛନ୍ତି ।

ଓଡ଼ିଆ ଭାଷା ଆଜି ଶାସ୍ତ୍ରୀୟ ଭାଷା ମାନ୍ୟତା ଲାଭ କରିଛି । ଓଡ଼ିଆ ଲେଖକମାନେ ସେମାନଙ୍କ କୃତୀ ଦ୍ୱାରା ଭାରତର ସାରସ୍ୱତ ଜଗତର ଗୌରବ ବୃଦ୍ଧି କରିଛନ୍ତି । ଓଡ଼ିଆ ଖେଳାଳିମାନେ ଦେଶର ସୁନାମ ବଢ଼ାଇଛନ୍ତି । ଓଡ଼ିଆ ପିଲାମାନେ ସେମାନଙ୍କ ପ୍ରତିଭା ଦ୍ୱାରା ଦେଶକୁ ଗର୍ବିତ କରୁଛନ୍ତି । ଓଡ଼ିଶାର ନୃତ୍ୟ, ସଙ୍ଗୀତ ଓ ଲୋକକଳା ଆଜି ଦେଶ ବିଦେଶରେ ଓଡ଼ିଆ ଜାତି ପାଇଁ ପ୍ରସିଦ୍ଧି ଆଣି ଦେଇଛି । କୃଷି କ୍ଷେତ୍ରରେ ଆମର ଚାଷୀ ଭାଇଭଉଣୀମାନଙ୍କ ପରିଶ୍ରମ ଆମକୁ ଚାରି ଚାରି ଥର କୃଷି କର୍ମଣ ପୁରସ୍କାର ଆଣି ଦେଇଛି । ଶିଳ୍ପ କ୍ଷେତ୍ରରେ ପୁଞ୍ଜି ବିନିଯୋଗ ବଢ଼ିଛି । ନୂଆ ନୂଆ ନିଯୁକ୍ତିର ସୁଯୋଗ ସୃଷ୍ଟି ହୋଇଛି । ଭିତ୍ତିଭୂମିର ବିକାଶ ଆମ ପାଇଁ ଅନେକ ସୁଯୋଗ ଆଣିଦେଇଛି । ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଚିର ସହଚର । ଏହାର ମୁକାବିଲା କ୍ଷେତ୍ରରେ ଆମର ଦକ୍ଷତା ଆଜି ଅନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛି । ସମାଜ କଲ୍ୟାଣ କ୍ଷେତ୍ରରେ ଆମର କାର୍ଯ୍ୟକ୍ରମ ଅନ୍ୟମାନଙ୍କ ପାଇଁ ଏକ ମଡେଲ ହୋଇଛି । ଗରିବୀ କମିଛି । ସାକ୍ଷରତା ବଢ଼ିଛି । ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଜୟ କରିଥିବା ଏହି ମହାନ ଜାତି ଆଜି ଗଭୀର ଆତ୍ମବିଶ୍ୱାସ ସହ ଆଗକୁ ବଢ଼ୁଛି । ୨୦୩୬ରେ ଆମେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଶହେ ବର୍ଷ ପାଳନ କରିବା । ତେଣୁ ୨୦୩୬ରେ ଓଡ଼ିଶାକୁ ସବୁ ଦୃଷ୍ଟିରୁ ବିକଶିତ କରିବା ପାଇଁ ଆମେ ଚଳିତ ବର୍ଷରୁ ଓଡ଼ିଶା @ ୧୦୦ ନାମରେ ଏକ ଭିଜନ ଡକ୍ୟୁମେଣ୍ଟ ତିଆରି କରୁଛୁ । ଶତବାର୍ଷିକୀ ଅବସରରେ ଏକ ସମ୍ପୂର୍ଣ୍ଣ ବିକଶିତ ଓ ସଶକ୍ତ ଓଡ଼ିଶା ହେବ ଆମର ବରପୁତ୍ରମାନଙ୍କ ପ୍ରତି ଓଡ଼ିଆ ଜାତିର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି । ଆସନ୍ତୁ, ଏହି ମହାନ ଲକ୍ଷ୍ୟକୁ ବ୍ୟକ୍ତିଗତ ଉଚ୍ଚାଭିଳାଷ ଭାବରେ ଗ୍ରହଣ କରି ଓଡିଶାର ଗୌରବକୁ ନୂଆ ଶିଖରରେ ପହଞ୍ଚାଇବା ପାଇଁ କାମ କରିଚାଲିବା ।

ଆଜି ଉତ୍କଳ ଦିବସର ପବିତ୍ର ଅବସରରେ ରାଜ୍ୟରେ ସର୍ବାଙ୍ଗୀନ ସମୃଦ୍ଧି ଓ ବିକାଶର ଜୟଯାତ୍ରାକୁ ଆଗେଇ ନେବା ଉଦ୍ଦେଶ୍ୟରେ ଆମେ ସମସ୍ତେ କାର୍ଯ୍ୟ କରିବା ପାଇଁ ସଙ୍କଳ୍ପ ନେବା । ଓଡ଼ିଶାର ଉନ୍ନତି ପାଇଁ ଆମର ସମସ୍ତ ନିଷ୍ଠା, ଆନ୍ତରିକତା ଓ ପରିଶ୍ରମ ବିନିଯୋଗ କରିବା । ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ।

**ବନ୍ଦେ ଉତ୍କଳ ଜନନୀ ।**

# ସମ୍ପାଦକୀୟ



**" ଜଗତ ସରସେ ଭାରତ କମଳ**
**ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ । "**

ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ସକାଶେ ଜନ ଆନ୍ଦୋଳନ, ବହୁ ମନୀଷୀ ଓ ଚିନ୍ତାନାୟକମାନଙ୍କର ଅବିରତ ପ୍ରଚେଷ୍ଟା ଓ ଦେଶ ଜାତିପ୍ରୀତିର ଫଳଶ୍ରୁତିସ୍ୱରୂପ ୧୯୩୬ ମସିହା ଅପ୍ରେଲ ପହିଲାରେ ଭାଷାଭିତ୍ତିରେ ଗଢି ଉଠିଥିଲା ଦେଶର ପ୍ରଥମ ରାଜ୍ୟ ଓଡ଼ିଶା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିବା ଯୋଗଜନ୍ମା ମନୀଷୀଗଣଙ୍କ ମଧ୍ୟରେ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ବୈକୁଣ୍ଠନାଥ ଦେ, ପଣ୍ଡିତ ନୀଳକଣ୍ଠ ଦାସ, ବ୍ୟାସକବି ଫକୀର ମୋହନ, କବିବର ରାଧାନାଥ ରାୟ, ଗଙ୍ଗାଧର ମେହେର, ମା' ରମାଦେବୀଙ୍କ ପରି ଅସଂଖ୍ୟ ଓଡ଼ିଆ ପ୍ରାଣ ଓ ଯୁଗପୁରୁଷଙ୍କୁ ଉତ୍କଳ ଦିବସ ଉପଲକ୍ଷେ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଦିନ ଥିଲା ପ୍ରାଚୀନ ଓଡ଼ିଶାର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଓଡ଼ିଶାର ସାହସୀ ବଣିକ ଜାତି ଜାଭା, ସୁମାତ୍ରା, ବାଲି ପ୍ରଭୃତି ସ୍ଥାନକୁ ନୌଯାତ୍ରା କରି ସେଠାରେ ବାଣିଜ୍ୟ ସହିତ ଏ ରାଜ୍ୟକୁ ସମୃଦ୍ଧଶାଳୀ କରିଥିଲେ । 'କଳିଙ୍ଗାଃ ସାହସିକାଃ' ରୂପେ ପରିଚିତ ବୀର ଓ ଦୁର୍ଦ୍ଧର୍ଷ ଜାତି ଓଡ଼ିଆମାନେ ସମଗ୍ର ଦେଶରେ ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିଲେ । ଓଡ଼ିଶାର କଳା, ସଂସ୍କୃତି, ଐତିହ୍ୟ, ଭାସ୍କର୍ଯ୍ୟ ଏବଂ ସାହିତ୍ୟର ଉନ୍ନତି ଚରମ ସୀମାରେ ଉପନୀତ ହୋଇଥିଲା । ମାତ୍ର କାଳଚକ୍ର ତଳେ ସେହି ଗୌରବମୟ ଐତିହ୍ୟ ପେଷି ହୋଇଯାଇଥିଲା ।

ଓଡ଼ିଶା ଥିଲା ଶେଷ ପ୍ରଦେଶ, ଯାହା ୧୮୦୩ ମସିହାରେ ବ୍ରିଟିଶ୍ ଶାସନାଧୀନ ହୋଇଥିଲା । କିନ୍ତୁ ଏହା ପ୍ରଥମ ପ୍ରଦେଶ ଥିଲା, ଯେଉଁଠି ୧୮୧୭ ମସିହା ପାଇକ ବିଦ୍ରୋହ ରୂପକ ଭାରତୀୟ ଜାତୀୟତାବାଦୀ ଆନ୍ଦୋଳନର ସୂତ୍ରପାତ ଘଟିଥିଲା । ଏହି ଆନ୍ଦୋଳନ ସାରା ଦେଶରେ ଜାତୀୟ ସଚେତନତାର ମଞ୍ଜି ବୁଣିବାରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ବ୍ରିଟିଶ୍ ଶାସକ  ଏହି ଓଡ଼ିଶା ଭୂଖଣ୍ଡକୁ ସ୍ୱାର୍ଥଭିତ୍ତିରେ ଭାଗ ଭାଗ କରି ବିଭିନ୍ନ ପ୍ରଦେଶ ଅଧୀନରେ ରଖିବା

ସହ ଏହି ଭୂଖଣ୍ଡକୁ ଦୁର୍ବଳ କରିଦେବାକୁ ଚକ୍ରାନ୍ତ କରିଥିଲେ । ତେବେ ସେ ଯାହାହେଉ, ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରିତ କରି ଗୋଟିଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଦାବି ଜୋର୍ ଧରିଥିଲା । ଊନବିଂଶ ଶତାବ୍ଦୀର ଶେଷ ଆଡକୁ ଏହି ଓଡ଼ିଆ ଆନ୍ଦୋଳନ ତୀବ୍ରତର ହୋଇଥିଲା । ବହୁ ବିଶିଷ୍ଟ ନେତୃବୃନ୍ଦଙ୍କ ଅକ୍ଲାନ୍ତ ପରିଶ୍ରମ ଯୋଗୁଁ ୧୯୩୬ ମସିହା ଅପ୍ରେଲ ପହିଲାରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ୱପ୍ନ ସାକାର ହୋଇଥିଲା ।

ଉଭୟ ଦକ୍ଷ ମାନବ ସମ୍ବଳ ଏବଂ ପ୍ରାକୃତିକ ସମ୍ବଳରେ ଭରା ଆମର ଏ ରାଜ୍ୟ ଓଡ଼ିଶା । ଓଡ଼ିଶାର ସମୃଦ୍ଧ ଐତିହାସିକ ଓ ସାଂସ୍କୃତିକ ପରମ୍ପରା ଏହାର ସର୍ବାଙ୍ଗୀନ ବିକାଶ ନିମନ୍ତେ ଉପଯୁକ୍ତ ଭିତ୍ତିଭୂମି ଯୋଗାଇ ଦେଇଥାଏ । ଏହାର ଅନୁକୂଳତମ ଜଳବାୟୁ, ଉର୍ବର ମୃତ୍ତିକା, ଖଣିଜ ସମ୍ପଦ, ସାମୁଦ୍ରିକ ବେଳାଭୂମି ଏବଂ ପରିଶ୍ରମୀ ଜନଗଣ ଏହି ପ୍ରଦେଶର ବିକାଶ ନିମନ୍ତେ ଯଥେଷ୍ଟ ଅବଦାନ ରଖିଥାନ୍ତି । ବିଗତ ଦୁଇ ଦଶନ୍ଧି ମଧ୍ୟରେ ଓଡ଼ିଶା ଏହାର ଗୌରବ ବଜାୟ ରଖିବା ସହ ବିଭିନ୍ନ କ୍ଷେତ୍ରରେ ଅନ୍ୟ ପ୍ରଦେଶଠାରୁ ଆଗରେ ରହିଛି ।

ଓଡ଼ିଶା ଦିବସ ପାଳନର ଏହି ପବିତ୍ର ଅବସରରେ ଆମେ ଉତ୍କଳମାତାର ସେବାରେ ନିଜକୁ ନିୟୋଜିତ କରିପାରିଲେ ଏହା ହିଁ ହେବ ଆମ ପୂର୍ବସୂରୀମାନଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ଓ ଉକ୍ତ ଦିବସ ପାଳନର ଯଥାର୍ଥତା । ଆସନ୍ତୁ, ଗର୍ବିତ ଓଡ଼ିଆଭାବେ ଆମେ ଓଡ଼ିଶା ମାଟିର ସେବାରେ ସମୟ ଦେଇ ଏହାକୁ ଏକ ଶ୍ରେଷ୍ଠ, ସମୃଦ୍ଧ ଓ ଶାନ୍ତିପ୍ରିୟ ରାଜ୍ୟ ରୂପେ ଗଢି ତୋଳିବା ।

**ବନ୍ଦେ ଉତ୍କଳ ଜନନୀ ।**

ଲୋଚନ ମହାନ୍ତି

**ସମ୍ପାଦକ**

# ଜାତି ଗଢ଼ଣରେ ଭାଷାସୂତ୍ର

ଡକ୍ଟର ଭାଗ୍ୟଲିପି ମଲ୍ଲ

ନୂଆ ଓଡିଶା ଜନ୍ମନେଲା ୧୯୩୬ ମସିହା ଏପ୍ରିଲ୍ ୧ ତାରିଖ ଦିନ । ନୂଆ ଶବ୍ଦଟି ସୂଚନା ଦେଉଛି ଓଡ଼ିଶା ଥିଲା, ମାତ୍ର ଭିନ୍ନଭିନ୍ନ ରାଜନୀତିକ ନାଁ ରେ । ଯେପରି କଳିଙ୍ଗ, କୋଶଳ, ଉତ୍କଳ, ଉଡ୍ର ଇତ୍ୟାଦି ଏବଂ ଏହି ଭୂମିଗୁଡିକର ଭାଷା ବି ଅଲଗା ଥିଲା । ଆଜି ବି ଅଛି । ମାତ୍ର ପଢ଼ା ବହିରେ ଓ ସରକାରୀ ସ୍ତରରେ ଗୋଟିଏ ପ୍ରକାରର ଭାଷାର ପ୍ରୟୋଗ ପାଇଁ ଗୁରୁତ୍ୱ ଦିଆଯାଇଛି । ଗୋଟିଏ ପ୍ରକାରର ଭାଷା କହିବାର ଅର୍ଥ ନୁହେଁ ଯେ, ଆମେ କେବଳ ରାଜନୀତିକ ଓଡିଶାର କେନ୍ଦ୍ରର ଭାଷାକୁ ହିଁ ବୁଝିବା । ଆଧୁନିକ ଭାଷା କହିଲେ ବା ନୂଆ ଓଡିଶାର ଭାଷା କହିଲେ, ଆମେ ରାଜନୀତିକ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଅର୍ଥାତ୍ କେନ୍ଦ୍ର ଓ ଉପାନ୍ତର ସକଳ ମଣିଷଙ୍କ କଥିତ ଭାଷାକୁ ହିଁ ବୁଝିବା । ମାତ୍ର ଏହା ଏକ ସହଜ ପ୍ରସଙ୍ଗ ନୁହେଁ । ଆଜି ଆମେ ଉପାନ୍ତ ଅଞ୍ଚଳ ଓ ଲୋକମୁଖ କଥିତ ଭାଷାକୁ ଜୀବନଚର୍ଯ୍ୟାର ସକଳ କ୍ଷେତ୍ରରେ ବ୍ୟବହାର କରିବା ଲାଗି ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ନାହୁଁ । ଯେଉଁଦିନ କେନ୍ଦ୍ର, ଉପାନ୍ତର ଭାଷାଗୁଡିକୁ ନିଜ ଭିତରକୁ ଆଣିବ, ସେହିଦିନ ଉପାନ୍ତର ସଂସ୍କୃତି ହିଁ କେନ୍ଦ୍ରର ସଂସ୍କୃତି ହୋଇଯିବ ଏବଂ ଉପାନ୍ତ ଓ କେନ୍ଦ୍ର ଏକ ହୋଇଯିବେ । ଭାରି ସୁନ୍ଦର ଦିଶିବେ ଏବଂ ଓଡ଼ିଶା ନାମକ ରାଜନୀତିକ ଆୟତନ, ଯାହାକୁ ଆମେ ମାଆ ବୋଲି କହୁ ସେ ସତରେ ଭାରି ସୁନ୍ଦର ଦିଶିବ । ଜାତି, ଧର୍ମ, ବର୍ଣ୍ଣ, ବିଦ୍ୟା-ସକଳ ବିଚାର କ୍ଷେତ୍ରରେ ମଣିଷ-ମଣିଷ ଭିତରେ ଯେତେ ଅସମାନତା ଅଛି- ସବୁର ବିଲୋପନ ଘଟିବ । ଅତୀତରେ ଏହି ପ୍ରସଙ୍ଗକୁ ନେଇ ଆମ ସମକାଳୀନ ନେତୃତ୍ୱମାନେ ପରସ୍ପର ସହିତ ଝଗଡ଼ା କରିଛନ୍ତି । ସାହିତ୍ୟର ଭାଷା, ପ୍ରଶାସନର ଭାଷା ଏବଂ ଜୀବନଚର୍ଯ୍ୟାର ଭାଷା ଭିତରେ ସମାନତା ଦେଖି ନାହାନ୍ତି । ମାତ୍ର ଏମିତି କେତେକ ଲୋକ ସମକାଳୀନମାନଙ୍କ ଭିତରେ ଥିଲେ, ଯେଉଁମାନେ ସକଳ ମଣିଷଙ୍କ ଭାଷା ଗୋଟିଏ ପାତ୍ରରେ ସିଦ୍ଧ କରିବାର ସ୍ୱପ୍ନ ବି ଦେଖିଥିଲେ । ସେହି ସ୍ୱପ୍ନ ଶେଷରେ ସଫଳ ହୋଇଛି । ସେହି ସଫଳତାର ପଛରେ ଥିବା କାହାଣୀ ଥିଲା ବାସ୍ତବତଃ କଷ୍ଟସାଧ୍ୟ ।

୧୯୩୬ ମସିହା ଏପ୍ରିଲ ପହିଲାରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପଛରେ ବହୁ ରାଜନୈତିକ ଘଟଣାପ୍ରବାହ ରହିଛି । ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ସବୁଠାରୁ ବଡ଼ ସମସ୍ୟା ଥିଲା ଉପାନ୍ତରେ ଥିବା ବହୁ ଗଡ଼ଜାତ ମହଲର ଭିନ୍ନ ଭାଷାଭାଷୀ ପ୍ରୋଭିନ୍ସର ସୀମା ସହିତ ସଂପୃକ୍ତି ।

ଗଡ଼ଜାତ କହିଲେ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଥିବା ବହୁ ସଂଖ୍ୟକ ସ୍ୱାଧୀନ ରାଜ-ଶାସିତ ରାଜ୍ୟ । ଯେଉଁ ଗୁଡିକ ଦକ୍ଷିଣରେ ତେଲୁଗୁ, ମଧ୍ୟରେ ହିନ୍ଦୀ ଓ ଉତ୍ତରରେ ବଙ୍ଗଳା ଓ ହିନ୍ଦୀ ଭାଷାଭାଷୀ ପ୍ରୋଭିନ୍ସଗୁଡ଼ିକ ସହିତ ସଂଯୁକ୍ତ । ତେଣୁ ଓଡ଼ିଆ ଭାଷା ସେଠି ସଂକଟାପନ୍ନ । କାରଣ ସେହି ରାଜ୍ୟର ଅଧିପତିମାନଙ୍କ ଇଚ୍ଛାନୁସାରେ ଏକ ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଢ଼ଣ ନିର୍ଭରଶୀଳ । ତେଣୁ ସେମାନଙ୍କର ସିଦ୍ଧାନ୍ତ ଯେ କେତେ ଗୁରୁତ୍ୱପୂର୍ଣ୍ଣ କହିବା ନିଷ୍ପ୍ରୟୋଜନ । ସେଥିପାଇଁ ସମକାଳୀନ ଓଡ଼ିଶାର ବୁଦ୍ଧିଜୀବୀମାନେ କେନ୍ଦ୍ର ପ୍ରଶାସନ ଓ ଗଡ଼ଜାତରେ ରାଜାମାନଙ୍କୁ ଏକ ବୃହତ୍ତର ଓଡିଶା ଗଠନର ଭୂମିକା ନିର୍ବାହ କରିବା ପାଇଁ ଉଭୟ ଭାବଗତ ଓ ପ୍ରଶାସନିକ ସ୍ତରରେ ପ୍ରଭାବିତ କରିବାକୁ ଉଦ୍ୟମ କରିଛନ୍ତି ଏବଂ ସେମାନଙ୍କ ଉଦ୍ୟମ ସଫଳ ହୋଇଛି । ୧୯୩୫ ମସିହାର ଭାରତ ଶାସନ

ଆଇନ ଅନୁସାରେ ପ୍ରଦେଶମାନଙ୍କୁ ସ୍ୱତନ୍ତ୍ର ମାନ୍ୟତା ଦିଆଯାଇଥିଲା । ୧୯୩୬–୧୯୩୭ରେ ନୂତନ ବିଧାନସଭା ଗଠନ ପାଇଁ ଖୁବ୍ ଜୋରସୋରରେ ନିର୍ବାଚନ ପ୍ରଚାର ଚାଲିଥଲା । ପଣ୍ଡିତ ଜବାହର ଲାଲ୍ ନେହେରୁ ୧୯୩୬ ମସିହା ଶେଷ ଆଡ଼କୁ ନିର୍ବାଚନ ପ୍ରଚାର ପାଇଁ ଓଡିଶା ଆସି ନିର୍ବାଚନୀ ଭାଷଣ ଦେଇଥିଲେ । ୧୯୩୬ ନଭେମ୍ବର ୧୮ ତାରିଖରୁ ନଭେମ୍ବର ୨୩ ତାରିଖ ପର୍ଯ୍ୟନ୍ତ ପ୍ରାଦେଶିକ ବିଧାନସଭା ପାଇଁ ନିର୍ବାଚନ ହୋଇସାରିଥିଲା । ଏଥିରେ ମୋଟ ୫୬ଟି ଆସନ ପାଇଁ ନିର୍ବାଚନ ହୋଇଥିଲା ଏବଂ ୪ଟି ଆସନ ପାଇଁ ପ୍ରାର୍ଥୀ ମନୋନୟନର ବ୍ୟବସ୍ଥା ହୋଇଥିଲା । ଭାରତୀୟ ଜାତୀୟ କଂଗ୍ରେସ ୩୬ଟି ଆସନରେ ଜୟଲାଭ କରି ସଂଖ୍ୟା ଗରିଷ୍ଠତା ହାସଲ କଲା । କିନ୍ତୁ ପ୍ରଥମେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବାପାଇଁ ରାଜି ନଥିଲା । କାରଣ କଂଗ୍ରେସ ଆଶଙ୍କା କରୁଥିଲା କାଳେ ମନ୍ତ୍ରିମଣ୍ଡଳର କାର୍ଯ୍ୟକଳାପରେ ସରକାର ହସ୍ତକ୍ଷେପ କରିବେ । ତେଣୁ ଅଳ୍ପ ସମୟ ପାଇଁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ମନ୍ତ୍ରିମଣ୍ଡଳର ସହଯୋଗୀ ମନ୍ତ୍ରୀମାନେ ହେଲେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଏବଂ ଲତିଫୁର ମୌଲବୀ ରହମନ୍ । ଏ ମନ୍ତ୍ରିମଣ୍ଡଳ ଜୁଲାଇ ୧୯୩୭ରେ ଇସ୍ତଫା ଦେଇଥିଲେ । ଏହାପରେ କଂଗ୍ରେସ ବିଧାୟକ ଦଳର ନେତା ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ତାଙ୍କର ସହଯୋଗୀ ମନ୍ତ୍ରୀମାନେ ହେଲେ ନିତ୍ୟାନନ୍ଦ କାନୁନଗୋ, ବୋଧରାମ ଦୁବେ । ଏହି ମନ୍ତ୍ରିମଣ୍ଡଳରେ ୪ଜଣ ପାର୍ଲିଆମେଣ୍ଟାରୀ ସେକ୍ରେଟେରୀ ସ୍ଥାନ ପାଇ ଥିଲେ । ସେମାନେ ହେଲେ ଯଦୁମଣି ମଙ୍ଗରାଜ, ଜଗନ୍ନାଥ ଦାସ, ରାଜକୃଷ୍ଣ ବୋଷ ଏବଂ ରାଧାକୃଷ୍ଣ ବିଶ୍ୱାସରାୟ । ଜୁଲାଇ ୨୮ରେ ମୁକୁନ୍ଦ ପ୍ରସାଦ ଦାସ ଓଡିଶା ବିଧାନସଭାର ପ୍ରଥମ ବାଚସ୍ପତି ଭାବରେ ନିର୍ବାଚିତ ହୋଇଥିଲେ ଓ ନନ୍ଦ କିଶୋର ଦାସ ଉପବାଚସ୍ପତି ଭାବରେ ନିର୍ବାଚିତ ହୋଇଥିଲେ । ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳର କାର୍ଯ୍ୟକାଳ ସମୟରେ ଗଡଜାତ ଆନ୍ଦୋଳନ ଓ ମୋଗଲବନ୍ଦୀରେ ପ୍ରଜାମଣ୍ଡଳ ଆନ୍ଦୋଳନ ଏକ ଭୀଷଣ ରୂପ ଧାରଣ କରିଥିଲା । ମନ୍ତ୍ରିମଣ୍ଡଳ କାର୍ଯ୍ୟକାଳ ସମୟରେ ନିଶାନିବାରଣ, ଅସ୍ପୃଶ୍ୟତା ଦୂରୀକରଣ ଓ ମୌଳିକ ଶିକ୍ଷା ପ୍ରସାର ଭଳି ଗାନ୍ଧୀବାଦି କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ପାଇଁ ଅଗ୍ରାଧିକାର ଦିଆଯାଇଥିଲା । ଏହି ମନ୍ତ୍ରିମଣ୍ଡଳର କାର୍ଯ୍ୟକାଳ ଭିତରେ ପ୍ରଜାମଣ୍ଡଳ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଫଳରେ ଢେଙ୍କାନାଳ ରାଜାଙ୍କ ଦମନମୂଳକ ନୀତିରେ କେତେକ ବ୍ୟକ୍ତି ପୁଲିସ ଗୁଳିରେ ପ୍ରାଣ ହରାଇଲେ । ସେମାନଙ୍କ ମଧ୍ୟରେ ଥିଲା ୧୨ବର୍ଷର ବାଳକ ବାଜିରାଉତ । ଏହି ମନ୍ତ୍ରିମଣ୍ଡଳର କାର୍ଯ୍ୟକାଳ ଭିତରେ ରଣପୁରରେ ଉତ୍ତ୍ୟକ୍ତ ଜନତାଙ୍କ ଆକ୍ରମଣ ଫଳରେ ୫ ଜାନୁଆରୀ ୧୯୩୯ରେ ଇଂରେଜ ପଲିଟିକାଲ ଏଜେଣ୍ଟ ବେଜଲଗେଟ୍ ପ୍ରାଣ ହରାଇଥିଲେ ।

ସ୍ୱାଧୀନତା ପ୍ରାପ୍ତି ପରେ ୫୬୦ଟି ଦେଶୀୟ ରାଜ୍ୟ ଭାରତ ସହିତ ମିଶିଗଲେ । ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସି (Eastern States Agency)ରେ ଅନ୍ତର୍ଭୁକ୍ତ ୨୬ଟି ଓଡିଆ ଭାଷାଭାଷୀ ଦେଶୀୟ ରାଜ୍ୟ (ଗଡଜାତ) ମଧ୍ୟରୁ ୨୪ଟି ଓଡିଶାରେ ସାମିଲ୍ ହୋଇଥିଲେ । ପୂର୍ବରୁ ଓଡିଶାର ରାଜନୀତିକ ଆୟତନ ଦୁଇ ଭାଗରେ ବିଭକ୍ତ ଥିଲା । ଗୋଟିଏ ମୋଗଲ ବନ୍ଦୀ, ଅନ୍ୟଟି ଗଡଜାତ । ମୋଗଲ ବନ୍ଦୀ ଅଂଚଳଗୁଡିକ ପ୍ରତ୍ୟକ୍ଷ ଭାବରେ ଏବଂ ଗଡଜାତଗୁଡ଼ିକ ପରୋକ୍ଷଭାବରେ ବ୍ରିଟିଶ ନିୟନ୍ତ୍ରଣରେ ଥିଲେ । ବହୁ ପୂର୍ବରୁ ଇଂରେଜ ଶାସକମାନେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରେ ଗଡ଼ଜାତଗୁଡ଼ିକୁ ସାମିଲ୍ କରିବାର ଆବଶ୍ୟକତା ଅନୁଭବ କରିଥିଲେ । ୧୯୨୯ରେ ସାଇମନ୍ କମିଶନ୍ (Indian Statutory Commission)ଦ୍ୱାରା ନିଯୁକ୍ତ ଅଟଲି ସବ୍ କମିଟ (Attlee Sub-Committee) ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ଗଡଜାତଗୁଡିକର ପ୍ରଶାସନିକ ସମ୍ପର୍କ ଆବଶ୍ୟକ ବୋଲି ମତ ଦେଇଥିଲେ ।

ଭୌଗୋଳିକ, ଐତିହାସିକ ଓ ସାଂସ୍କୃତିକ ଦୃଷ୍ଟିରୁ ଗଡ଼ଜାତଗୁଡିକ ଇଂରେଜ ଶାସିତ ଜିଲ୍ଲା (ବାଲେଶ୍ୱର, କଟକ, ପୁରୀ, ସମ୍ବଲପୁର, ଗଞ୍ଜାମ ଏବଂ କୋରାପୁଟ)ମାନଙ୍କ ସହିତ ଜଡିତ ଥିଲେ । ଇଂରେଜମାନେ ଓଡିଶା (କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା) ଦଖଲ କଲାପରେ ଗଡ଼ଜାତମାନେ ପ୍ରଥମେ କଟକର ବିଚାରକ ତଥା ମାଜିଷ୍ଟ୍ରେଟ୍ ଏବଂ ୧୮୧୮ପରେ ଓଡ଼ିଶା ଡିଭିଜନ୍ (ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା)ର କମିଶନରଙ୍କ କର୍ତ୍ତୃତ୍ୱାଧୀନ ହେଲେ । ଇଂରେଜ ଶାସିତ ଅଞ୍ଚଳ ପାଇଁ ନିଯୁକ୍ତ କମିଶନର ଗଡ଼ଜାତଗୁଡ଼ିକ ପାଇଁ ଅଧକ୍ଷ (Superintendent of Tributary Mahals)ଭାବେ କାର୍ଯ୍ୟ

କରୁଥିଲେ। ୧୯୦୬ରେ ଏହି ଗଡଜାତଗୁଡିକ ପାଇଁ ଜଣେ ଅଫିସର Political Agent ନିଯୁକ୍ତ ହେଲେ। ୧୯୨୨ଠାରୁ (Political Agent)ଙ୍କୁ କମିଶନରଙ୍କ କର୍ତ୍ତୃତ୍ୱରୁ ମୁକ୍ତ ରଖାଗଲା ଏବଂ ତାଙ୍କୁ Political Agent and Commissioner of Orissa Feudatory States ଆଖ୍ୟା ଦିଆଗଲା। ୧୯୩୩ରେ ଗଡଜାତଗୁଡିକ ଭାରତ ସରକାରଙ୍କ ପ୍ରତ୍ୟକ୍ଷ କର୍ତ୍ତୃତ୍ୱାଧୀନ ହେଲେ । ସେହି ବର୍ଷ ଓଡିଶାର ୨୬ଟି ଗଡଜାତ ଓ କେନ୍ଦ୍ରୀୟ ପ୍ରଦେଶର ୧୪ଟି ଗଡଜାତକୁ ନେଇ Eastern States Agency ଗଢାଗଲା। ଏହି ସଂସ୍ଥା ପାଇଁ ଜଣେ Resident ନିଯୁକ୍ତ ହେଲେ। ଏହି Resident ଭାରତ ସରକାରଙ୍କ Political Department ଅଧୀନରେ ରହି କଲିକତାଠାରେ କାର୍ଯ୍ୟ କଲେ । ଦେଶ ସ୍ୱାଧୀନ ହେଲା ବେଳେ ଏହି ବ୍ୟବସ୍ଥା ଚାଲୁ ରହିଥିଲା।

୧୯୩୭ ମସିହା ଜୁନ୍ ମାସ ୨୩ ଓ ୨୪ ତାରିଖରେ କଟକ ଟାଉନ୍ ହଲ୍‌ରେ ଓଡିଶା ଗଡଜାତ ପ୍ରଜା-ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସର୍ବଭାରତୀୟ ଦେଶୀୟ ରାଜ୍ୟ ପ୍ରଜା-ସମ୍ମିଳନୀର ସଭାପତି ଡ: ବି ପଟ୍ଟାଭି ସୀତାରାମାୟା ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ। ଏଥିରେ ଗଡଜାତଗୁଡିକର ରାଜାମାନଙ୍କୁ ଲୋକ ପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠା କରିବା ପାଇଁ ଏବଂ ବିଧାନସଭାମାନଙ୍କଦ୍ୱାରା ପାଶ୍ କରାଯାଇଥିବା ଆଇନ୍ ଓ ବିଧି ଅନୁସାରେ ଶାସନ କାର୍ଯ୍ୟ ଚଳାଇବା ପାଇଁ ଆହ୍ୱାନ କରାଗଲା । ଏହି ସମ୍ମିଳନୀରେ ସମ୍ପତ୍ତି ଉପରେ ଦଖଲ ଅଧିକାର ଦେବା ପାଇଁ, ପ୍ରଜାମାନଙ୍କୁ ନାଗରିକ ଅଧିକାର ଦେବାପାଇଁ ଏବଂ ରସଦ, ମାଗଣ, ବେଠି ଓ ବେଗାରି ଭଳି ବେଆଇନ୍ ପ୍ରଥାର ଉଚ୍ଛେଦ ପାଇଁ ଦାବୀମାନ ଗୃହୀତ ହୋଇଥିଲା ।

ଉପର୍ଯ୍ୟୁକ୍ତ ସମ୍ମିଳନୀରେ ଏକ ୩ଜଣିଆ କମିଟି ଗଡଜାତମାନଙ୍କରେ ଚାଲୁଥିବା କୁଶାସନର ଅନୁସନ୍ଧାନ କରିବା ପାଇଁ ଗଠିତ ହୋଇଥିଲା। ଏହି କମିଟି ଅନୁସନ୍ଧାନ ଆରମ୍ଭ କଲାପରେ ଗଡ଼ଜାତମାନଙ୍କରୁ ବହୁ ଜନସାଧାରଣ ସାକ୍ଷ୍ୟ ଦେବା ପାଇଁ ଆଗଭର ହୋଇଆସିଲେ ଏବଂ ବିଭିନ୍ନ ଗଡଜାତରେ ରାଜାମାନଙ୍କ ପାଖରେ ଆପତ୍ତି ଅଭିଯୋଗ କରିବା ପାଇଁ ପ୍ରଜାମଣ୍ଡଳମାନ ଗଠିତ ହେଲା। ମୋଟ ଉପରେ ଗଡ଼ଜାତଗୁଡ଼ିକର ପ୍ରଜାମାନଙ୍କ ମଧ୍ୟରେ ଏକ ଅଭୁତପୂର୍ବ ଜାଗରଣ ସଂଘଟିତ ହେଲା ।

୧୯୩୮ ମସିହା ଜୁନ୍-ଜୁଲାଇରେ କୈଳାସଚନ୍ଦ୍ର ମହାନ୍ତିଙ୍କ ନେତୃତ୍ୱରେ ନୀଳଗିରିରେ ପ୍ରଜାମଣ୍ଡଳ ଆନ୍ଦୋଳନ ଆରମ୍ଭ ହେଲା । ୧୯୩୮ ମସିହା ସେପ୍ଟେମ୍ବର ୧-୨ ତାରିଖରେ କଟକ ଜିଲ୍ଲାର ଜେନାପୁରଠାରେ ଏକ ବିରାଟ କୃଷକ ସମ୍ମିଳନୀ ଅନୁଷ୍ଠିତ ହେଲା। ଢେଙ୍କାନାଳ ସୀମା ପାର୍ଶ୍ୱରେ ଜେନାପୁର ଅବସ୍ଥିତ। ଏହି କୃଷକ ସମ୍ମିଳନୀକୁ କଟକ ଜିଲ୍ଲା କିଷାନ୍ ସଭା ଆୟୋଜନ କରିଥିଲେ।

୧୯୩୮ ମସିହା ଅକ୍ଟୋବର ୨୯ ତାରିଖ ଦିନ ସାରା ଓଡିଶାରେ ଗଡଜାତ ଦିବସ ପାଳିତ ହେଲା । ବିଭିନ୍ନ ସ୍ଥାନରେ ସଭାସମିତିରେ ରାଜାମାନଙ୍କର ଅତ୍ୟାଚାର ଏବଂ ସେମାନଙ୍କ ପ୍ରତି ଇଂରେଜ ସରକାରଙ୍କ ଅନୁକୂଳ ମନୋଭାବକୁ ସମାଲୋଚନା କରାଗଲା। ଫଳରେ ପ୍ରଜାମଣ୍ଡଳ ଆନ୍ଦୋଳନ ଜାତୀୟତାବାଦୀ ଆନ୍ଦୋଳନରେ ସାମିଲ୍ ହେଲା। ୧୯୩୮ମସିହା ନଭେମ୍ବର ୪ ତାରିଖରେ ଏକ ସରକାରୀ ବିବରଣୀରେ ଏହା ଲେଖା ଯାଇଥିଲା :

'ଅଧିକାଂଶ ସଭାମାନଙ୍କରେ ଇଂରେଜ ସରକାରଙ୍କୁ ସବୁ ଗଣ୍ଡଗୋଳର ମୂଳ ବୋଲି କୁହାଯାଉଛି। ଗଡଜାତ ପ୍ରଜାମାନଙ୍କର ଆର୍ଥିକ ଅବସ୍ଥାକୁ ସମସ୍ତେ ଭୁଲିଯାଇଛନ୍ତି ଏବଂ (ପ୍ରଜାମଣ୍ଡଳ) ଆନ୍ଦୋଳନକୁ ସାମ୍ରାଜ୍ୟବାଦୀ-ବିରୋଧୀ ସଂଗ୍ରାମର ଏକ ଅଂଶ ବୋଲି ବିଚାର କରାଯାଉଛି ।'

୧୯୩୯ ମସିହା ଆରମ୍ଭ ବେଳକୁ ରଣପୁରର ରାଜା ତାଙ୍କ ରାଜ୍ୟର ପ୍ରଜାମଣ୍ଡଳକୁ ବେଆଇନ୍ ଘୋଷଣା କରିବା ଏବଂ କେତେ ଜଣ ପ୍ରଜାମଣ୍ଡଳ ନେତାଙ୍କୁ ଗିରଫ କରିବା ଫଳରେ ସେଠାରେ ଆନ୍ଦୋଳନ ଏକ ହିଂସ୍ରରୂପ ଧାରଣ କରିଥିଲା। ଜାନୁଆରୀ ୫ ତାରିଖ ଦିନ ବହୁଲୋକ ରାଜପ୍ରାସାଦ ସମ୍ମୁଖରେ ଏକତ୍ରିତ ହୋଇ ଗିରଫ ହୋଇଥିବା ବ୍ୟକ୍ତିଙ୍କର ମୁକ୍ତି ଦାବୀ କଲେ। ଏହି ସମୟରେ Political Agent Major Bazalgette ରାଜାଙ୍କ ସହିତ କଥାବାର୍ତ୍ତା ସାରି ଉତ୍ତ୍ୟକ୍ତ ଜନତାଙ୍କୁ ସାକ୍ଷାତ କରିବା ପାଇଁ ଆସିଲେ ଏବଂ ଉତ୍ତ୍ୟକ୍ତ ଜନତାର ଟେକାମାଡ଼ ଓ ବାଡ଼ି ପ୍ରହାରରେ ସେ ପ୍ରାଣ ହରାଇଲେ।

୧୯୩୯ ମସିହା ଜୁଲାଇ ବେଳକୁ ଗଡଜାତ ଅନୁସନ୍ଧାନ କମିଟି ସେମାନଙ୍କର ରିପୋର୍ଟ ପ୍ରସ୍ତୁତ କରିସାରିଥିଲେ । କମିଟିର ସଦସ୍ୟମାନେ ଏକମତ ହୋଇ ମତ ଦେଲେ ଯେ ଗଡଜାତଗୁଡ଼ିକୁ ଜମିଦାରିରେ ପରିଣତ କରି ଓଡ଼ିଶା ପ୍ରଦେଶରେ ସାମିଲ୍ କରାଯାଉ ।

କ୍ରମଶଃ ଗଡଜାତମାନଙ୍କରେ ରାଜଶାସନ ବିରୋଧରେ ପ୍ରବଳ ଅସନ୍ତୋଷ ଦେଖାଦେଲା । କିନ୍ତୁ ଇଂରେଜ ସରକାର ରାଜାମାନଙ୍କର ରକ୍ଷକ ଭାବରେ ଦାୟିତ୍ୱ ସମ୍ପାଦନ କରିବାରେ ବ୍ୟସ୍ତ ଥିଲେ। ଭାରତ ସରକାରଙ୍କର ପଲିଟିକାଲ୍ ଡିପାର୍ଟମେଣ୍ଟ ରାଜାମାନଙ୍କୁ ସୁରକ୍ଷା ଦେବାରେ ଲାଗିପଡିଥିଲେ। ୧୯୩୩ ମସିହା ଏପ୍ରିଲ ପରେ ଓଡ଼ିଶାର ୨୬ଟି ଗଡ଼ଜାତ ଓ କେନ୍ଦ୍ରୀୟ ପ୍ରଦେଶର ୧୪ଟି ଗଡ଼ଜାତକୁ ମିଶାଇ ଇଂରେଜ ସରକାର ନିଜର ପ୍ରତ୍ୟକ୍ଷ ଅଧୀନରେ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି ଗଠନ କଲେ । ଫଳରେ ଗଡଜାତଗୁଡ଼ିକ ଉପରେ ପ୍ରାଦେଶିକ ସରକାରଙ୍କର କୌଣସି କର୍ତ୍ତୃତ୍ୱ ରହିଲାନାହିଁ।

୧୯୪୬ ମସିହା ଏପ୍ରିଲ୍ ମାସରେ ଓଡ଼ିଶାର ଭାବୀ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ଓଡ଼ିଶା ପ୍ରଦେଶ ସହିତ ୨୬ଟି ଓଡ଼ିଆ ଭାଷାଭାଷୀ ଗଡଜାତର ମିଶ୍ରଣ ପାଇଁ ଏକ ଦାବୀପତ୍ର ଉପସ୍ଥାପନ କଲେ। ଦାବୀପତ୍ରରେ ସେ ଯୁକ୍ତି କରିଥିଲେ ଗଡଜାତଗୁଡ଼ିକର ରାଜନୈତିକ ଇତିହାସ, ଉଭୟ ଓଡ଼ିଶା ପ୍ରଦେଶ ଓ ଗଡଜାତମାନଙ୍କର ଅର୍ଥନୈତିକ ପ୍ରଗତି ଏବଂ ସୁଷ୍ଠୁ ପ୍ରଶାସନିକ ପରିଚାଳନା ଦୃଷ୍ଟିରୁ ଗଡଜାତଗୁଡ଼ିକ ଓଡ଼ିଶା ପ୍ରଦେଶ ସହିତ ସାମିଲ୍ ହେବା ନିହାତି ଆବଶ୍ୟକ।

ବହୁ ଗଡଜାତର ରାଜାମାନେ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣର ବିରୋଧୀ ଥିଲେ। କେତେକ ପ୍ରଜାମଣ୍ଡଳର ନେତା ନିଜ ରାଜ୍ୟରେ ଲୋକ ପ୍ରତିନିଧିମୂଳକ ସରକାର ପ୍ରତିଷ୍ଠା କରିବା ପାଇଁ ପରିକଳ୍ପନା କରୁଥିଲେ । କେତେକ ରାଜା ମଧ୍ୟ ଲୋକ ପ୍ରତିନିଧିମୂଳକ ସରକାର ପ୍ରତିଷ୍ଠା କରି ନିଜେ ସାଂବିଧାନିକ ମୁଖ୍ୟ ହୋଇ ରହିବାକୁ ଚାହୁଁଥିଲେ। ନୀଳଗିରି ଓ ଖରସୁଆଁର ରାଜାମାନେ ନିଜର ନିରାପତ୍ତା ପାଇଁ ଆଦିବାସୀମାନଙ୍କୁ ପ୍ରଜାମଣ୍ଡଳ ବିରୋଧରେ ପ୍ରବର୍ତ୍ତାଉଥିଲେ ।

ଏହି ସମୟରେ ଓଡ଼ିଶା ପ୍ରଦେଶ ସହିତ ଗଡଜାତଗୁଡ଼ିକର ମିଶ୍ରଣ ପାଇଁ ସମ୍ବାଦପତ୍ରମାନଙ୍କରେ ବହୁତ ବିଚାର ବିମର୍ଶ ଚାଲିଲା। ସେଥିରେ ଗଡଜାତ ରାଜାମାନେ ବିଚଳିତ ହୋଇପଡିଲେ ଏବଂ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସିର Resident Col. Tod ଏବଂ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ପ୍ରଦେଶ ସହିତ ଗଡଜାତ ମିଶ୍ରଣ ବିରୋଧରେ ଲେଖିଲେ।

୧୯୪୬ ମସିହା ଜୁନ୍ ୨୯ ତାରିଖରେ ରାଜାମାନଙ୍କ ପାରସ୍ପରିକ ଆଲୋଚନା ପାଇଁ ସମ୍ମତି ଉପରେ ମହତାବ ସନ୍ତୋଷ ପ୍ରକାଶ କରି ଏକ ଚିଠି ଲେଖିଲେ । କିନ୍ତୁ ରାଜାମାନେ ପ୍ରକୃତରେ ପ୍ରାଦେଶିକ ସରକାର ସହିତ ସହଯୋଗ କରିବା ପାଇଁ ଇଚ୍ଛୁକ ନଥିଲେ। ସେମାନେ Political Departmentର ଆଶୀର୍ବାଦରେ ପ୍ରଦେଶ ଓ ଗଡଜାତ ପାଇଁ ଏକ ସାଧାରଣ ସରକାର ପ୍ରତିଷ୍ଠା କରିବା ନେଇ ମହତାବଙ୍କ ଉଦ୍ୟମକୁ ବିଫଳ କରିବାକୁ ଚେଷ୍ଟା କରୁଥିଲେ। ଏହି ଚେଷ୍ଟାରେ ଷଢେଇକଳା ରାଜା ଏବଂ ପାଟଣାର ରାଜା ରାଜେନ୍ଦ୍ରନାରାୟଣ ସିଂହଦେଓ (ଯେ କି ଷଢେଇକଳା ରାଜାଙ୍କ ପୁତ୍ର ଥିଲେ ଏବଂ ପାଟଣାର ରାଜାଙ୍କ ଦ୍ୱାରା ପୋଷ୍ୟପୁତ୍ରଭାବେ ଗୃହୀତ ହୋଇଥିଲେ) ନେତୃତ୍ୱ ନେଇଥିଲେ। ୧୯୪୬ ମସିହା ଜୁନ୍ ୩୦ ତାରିଖରେ ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରଦେଶ ଓ ଗଡଜାତ ପାଇଁ ଏକ ସାଧାରଣ ପ୍ରଶାସନ ପ୍ରସ୍ତାବକୁ ବିରୋଧ କରି ବଡଲାଟ ଲର୍ଡ ୱାଭେଲଙ୍କୁ ଏକ ପତ୍ର ଲେଖିଲେ। ସେ ଯୁକ୍ତି ବାଢ଼ିଥିଲେ ଯେ ଗଡଜାତ ଓ ପ୍ରଦେଶ ପାଇଁ ସାଧାରଣ ପ୍ରଶାସନ ପ୍ରତିଷ୍ଠିତ ହେଲେ ଗଡଜାତର ଅନୁନ୍ନତ ଲୋକେ ଓଡ଼ିଶା ପ୍ରଦେଶର ରାଜନୈତିକ ଦୃଷ୍ଟିରୁ ସଚେତନ ଲୋକଙ୍କ ଦ୍ୱାରା ଶୋଷଣର ଶିକାର ହେବେ । ଷଢେଇକଳା ଓ ପାଟଣାଗଡ ରାଜାଙ୍କ ମତରେ ଅଧିକାଂଶ ଗଡଜାତ, ଯଥା ପାଟଣାଗଡ, କଳାହାଣ୍ଡି, ସୋନପୁର, ସମ୍ବଲପୁର, ରେଢାଖୋଲ, ବାମଣ୍ଡା, ବଣାଇ, ଗାଙ୍ଗପୁର, ବୌଦ୍ଧ, ଆଠମଲ୍ଲିକ୍, ଦଶପଲ୍ଲା ଓ ଷଢେଇକଳାର ଓଡ଼ିଶା ସହିତ କୌଣସି ଐତିହାସିକ ସମ୍ପର୍କ ନାହିଁ । ଗଡଜାତଗୁଡ଼ିକ ମୂଳତଃ ଜମିଦାରି ଥିଲେ ବୋଲି ମହତାବ ଯେଉଁ ମତ ଦେଉଥିଲେ ତାହାକୁ ଷଢେଇକଳା ରାଜା ପ୍ରତ୍ୟାଖ୍ୟାନ କରିଥିଲେ। ତାଙ୍କ ମତରେ ସେମାନେ ସ୍ୱାଧୀନ ରାଜ୍ୟର ରାଜା ଥିଲେ।

ଗଡଜାତ ଓ ପ୍ରଦେଶକୁ ଏକ ଶାସନାଧୀନ କରିବା ଉଦ୍ଦେଶ୍ୟରେ ମହତାବଙ୍କ ଚେଷ୍ଟାକୁ ବିଫଳ କରିବା ପାଇଁ ଓଡ଼ିଶା

ଓ କେନ୍ଦ୍ରୀୟ ପ୍ରଦେଶ (ଛତିଶଗଡ)ର ଗଡଜାତ ରାଜାମାନେ ଭାରତୀୟ ରାଜ୍ୟ ସଂଘର ଅଂଶରୂପେ ଇଷ୍ଟର୍ଣ୍ଣ ଷ୍ଟେଟସ୍ ୟୁନିୟନ ନାମରେ ଏକ ରାଜ୍ୟ ସଂଘ ଗଠନ କଲେ। ପାଟଣାଗଡ଼ର ରାଜା ଏହି ରାଜ୍ୟ ସଂଘର ଦୃଢ ସମର୍ଥକ ଥିଲେ। କିନ୍ତୁ ମୟୂରଭଞ୍ଜ ମହାରାଜା ଏଥିରେ ଯୋଗ ଦେଇନଥିଲେ । ୧୯୪୭ ମସିହା ଅଗଷ୍ଟ ପହିଲାରୁ ଆନୁଷ୍ଠାନିକ ଭାବରେ ଇଷ୍ଟର୍ଣ୍ଣ ଷ୍ଟେଟସ୍ ୟୁନିୟନ ସୁରୁ କରାଗଲା । ପାଟଣାଗଡ ମହାରାଜା ଏକ ଶାସନ ପରିକଳ୍ପନାକୁ ବିରୋଧ କରିବା ପାଇଁ ସମ୍ବଲପୁର ଓ ପଶ୍ଚିମ ଓଡିଶାକୁ ମିଶାଇ ଏକ କୋଶଳ ରାଜ୍ୟ ଗଠନର ପରିକଳ୍ପନା ମଧ୍ୟ କଲେ। କୋଶଳ ରାଜ୍ୟ ଗଠନ ପାଇଁ ପାଟଣାରୁ ପ୍ରକାଶିତ ପାଟଣା ଦୀପିକା ପତ୍ରିକା ମାଧ୍ୟମରେ ପ୍ରଚାର କରାଗଲା। ଏହି ସମୟରେ ସମ୍ବଲପୁରରେ ହୀରାକୁଦ ବନ୍ଧ ବିରୋଧରେ ଆନ୍ଦୋଳନ ଚାଲିଥିଲା।

୧୯୪୬ ମସିହା ଅକ୍ଟୋବର ୧୬ ତାରିଖରେ ସମ୍ବଲପୁରଠାରେ ହରେକୃଷ୍ଣ ମହତାବ କେତେଜଣ ରାଜାଙ୍କୁ ସାକ୍ଷାତ କଲେ। ଏହି ସାକ୍ଷାତକାର ବିଫଳ ହେଲା। ରାଜାମାନେ ଗଡ଼ଜାତ ଓ ପ୍ରଦେଶ ପାଇଁ ମହତାବଙ୍କ ଦ୍ୱାରା ପ୍ରସ୍ତାବିତ ଏକ ସାଧାରଣ ଯୋଜନା ଓ ପ୍ରଶାସନକୁ ବିରୋଧ କଲେ, Eastern States Union ପ୍ରତି ସମର୍ଥନ ବ୍ୟକ୍ତ କଲେ ଏବଂ ଗଡଜାତରେ ପ୍ରଜା ଆନ୍ଦୋଳନ ପାଇଁ ମହତାବଙ୍କୁ ଦାୟୀ କଲେ। ଏହି ସମୟରେ ପ୍ରଜାମଣ୍ଡଳମାନେ ଲୋକପ୍ରତିନିଧିମୂଳକ ସରକାର ଏବଂ ପ୍ରଦେଶ ସହିତ ମିଶ୍ରଣ ଦାବୀ କଲେ। ମୁଖ୍ୟ ପ୍ରଜାମଣ୍ଡଳ ନେତା ଓ ଢେଙ୍କାନାଳର ବାସିନ୍ଦା ତଥା ଓଡିଶା ବିଧାନସଭାର ସଦସ୍ୟ ସାରଙ୍ଗଧର ଦାସ ଏହି ଦାବୀ ସପକ୍ଷରେ ଲୋକମତକୁ ଜାଗ୍ରତ କରିବା ପାଇଁ ପ୍ରଚେଷ୍ଟା କରୁଥିଲେ।

ଏହି ସମୟରେ ପାଟଣାର କୃଷକ ଦଳ ୧୯୪୭ ଏପ୍ରିଲ ପହିଲା ସୁଦ୍ଧା ଅସ୍ଥାୟୀ ଲୋକପ୍ରିୟ ସରକାର ଓ ଜୁଲାଇ ପହିଲା ସୁଦ୍ଧା ଲୋକ ପ୍ରତିନିଧିମୂଳକ ସରକାର ପ୍ରତିଷ୍ଠା ଦାବୀ କଲେ। ସେମାନେ ଏହି ଲକ୍ଷ୍ୟ ହାସଲ ପାଇଁ ଆଇନ ଅମାନ୍ୟ ଆନ୍ଦୋଳନ ଚଳାଇବା ଉଦ୍ଦେଶ୍ୟରେ ସର୍ବଭାରତୀୟ ଦେଶୀୟ ରାଜ୍ୟ ପ୍ରଜାସମିତି (All India States People's Conference)ର ଅନୁମତି ଚାହିଁଲେ।

୧୯୪୭ ମସିହା ମାର୍ଚ୍ଚ ପହିଲା ଦିନ ସର୍ବଭାରତୀୟ ଦେଶୀୟ ରାଜ୍ୟ ପ୍ରଜାସମିତିର ଓଡିଶା ଶାଖା ଓ କେନ୍ଦ୍ରୀୟ ପରିଷଦର ଏକ ବୈଠକ କଟକରେ ଅନୁଷ୍ଠିତ ହେଲା । ଏହି ବୈଠକ ରାଜାମାନଙ୍କୁ ଲୋକମାନଙ୍କ ପ୍ରତିନିଧିମାନଙ୍କୁ କ୍ଷମତା ହସ୍ତାନ୍ତର କରିବା ପାଇଁ ଉପଦେଶ ଦେଲା ତଥା ଭାଷା, ସଂସ୍କୃତି ଓ ଭୌଗୋଳିକ ସ୍ଥିତି ତଥା ଅର୍ଥନୈତିକ ଆବଶ୍ୟକତାକୁ ବିଚାର କରି ପ୍ରତିବେଶୀ ପ୍ରଦେଶ ସହିତ ମିଶ୍ରଣ ପାଇଁ ଆଲୋଚନା ଚଳାଇବା ପାଇଁ ରାଜାମାନଙ୍କୁ ପରାମର୍ଶ ଦେଲା । ଏଭଳି ପଦକ୍ଷେପ ଏକ ଗଣତାନ୍ତ୍ରିକ ଭାରତୀୟ ରାଜ୍ୟ ସଂଘ ଗଠନରେ ସହାୟକ ହେବ ବୋଲି ଏହି ବୈଠକ ମନେ କଲେ ।

ଏହି ବୈଠକ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି ଅନ୍ତର୍ଭୁକ୍ତ ରାଜାମାନଙ୍କୁ ଇଷ୍ଟର୍ଣ୍ଣ ଷ୍ଟେଟସ୍ ଫେଡେରାଲ ୟୁନିୟନ୍ ଗଠନ ଦିଗରେ ଅଗ୍ରସର ନ ହେବା ପାଇଁ ଉପଦେଶ ଦେଲା ।

ମହତାବଙ୍କ ଗଡଜାତ ଓ ପ୍ରଦେଶ ପାଇଁ ଯୁଗ୍ମ ଶାସନ ବ୍ୟବସ୍ଥା ପ୍ରସ୍ତାବକୁ ପଟ୍ଟାଭି ସୀତାରାମାୟା ତିନିଟି କାରଣରୁ ବିରୋଧ କଲେ। ପ୍ରଥମତଃ ୧୯୩୫ ମସିହାର ଭାରତ ଶାସନ ଆଇନ୍‌ର ସଂଶୋଧନ ବିନା ଗଡଜାତମାନଙ୍କୁ ଓଡିଶା ବିଧାନ ସଭାରେ ପ୍ରତିନିଧିତ୍ୱ ଦିଆଯାଇପାରିବ ନାହିଁ, ଦ୍ୱିତୀୟତଃ ମହତାବଙ୍କ ଯୋଜନାରେ ଗଡ଼ଜାତ ରାଜାମାନଙ୍କୁ ଅଧିକ ଗୁରୁତ୍ୱ ଦିଆଯାଇଥିଲା। କାରଣ ଏହାଦ୍ୱାରା ରାଜାମାନେ ନିଜ ରାଜ୍ୟରେ ପ୍ରତିପତ୍ତି ବଜାୟ ରଖି ଓଡିଶା ସରକାରରେ ମନ୍ତ୍ରୀ ହୋଇ ପାରିବେ, କିନ୍ତୁ ଓଡିଶା ପ୍ରଦେଶର ଲୋକମାନେ ଗଡଜାତ ଶାସନ ବିଷୟରେ କୌଣସି ଭାବରେ ସମ୍ପୃକ୍ତ ହୋଇପାରିବେ ନାହିଁ। ତୃତୀୟତଃ ରାଜାମାନଙ୍କ ପ୍ରତିପତ୍ତି ଅଖଣ୍ଡ ରହିଲେ ପ୍ରଦେଶ ସହିତ ଗଡଜାତର ମିଶ୍ରଣ ସମ୍ଭବ ହୋଇପାରିବ ନାହିଁ ।

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଦେଶ ସ୍ୱାଧୀନ ହେଲା ପରେ ଗଡଜାତର ରାଜାମାନଙ୍କୁ ବାସ୍ତବ ରାଜନୈତିକ ସମସ୍ୟାର ସମ୍ମୁଖୀନ ହେବାକୁ ପଡିଲା। ଇଂରେଜ ସାର୍ବଭୌମତ୍ୱ (Paramountcy) ଅପସରି ଗଲା । କିନ୍ତୁ ସେମାନଙ୍କୁ ଜାତୀୟତାବାଦ ଓ ଗଣତନ୍ତ୍ରର ପ୍ରବଳ ବିରୋଧର ସମ୍ମୁଖୀନ ହେବାକୁ ପଡିଲା । ଗଡଜାତ ଭିତରେ ପ୍ରଜାମଣ୍ଡଳମାନଙ୍କ ବିରୋଧ ସହିତ ଗଡଜାତ ରାଜାମାନଙ୍କୁ ଦୁଇଟି ରାଜନୈତିକ ବାସ୍ତବତାର ସମ୍ମୁଖୀନ ହେବାକୁ ପଡିଲା। ପ୍ରଥମତଃ ଭୌଗୋଳିକ, ଐତିହାସିକ ଓ ସାଂସ୍କୃତିକ ସମ୍ପର୍କ ଦୃଷ୍ଟିରୁ ତଥା ପ୍ରଶାସନିକ ଓ ବିକାଶଗତ ସମସ୍ୟା ଯୋଗୁଁ ଓଡିଶା

ସରକାର ଗଡଜାତଗୁଡିକର ପ୍ରଦେଶ ସହିତ ମିଶ୍ରଣ ଚାହୁଁଥିଲେ ଦ୍ୱିତୀୟତଃ କେନ୍ଦ୍ରରେ ଗଠିତ ନୂତନ ଜାତୀୟ ସରକାର ଗଡଜାତଗୁଡିକର ପ୍ରଦେଶ ସହିତ ମିଶ୍ରଣ ଓ ଗଣତନ୍ତ୍ରୀକରଣ ଚାହୁଁଥିଲେ ।

୧୯୪୭ ମସିହା ସେପ୍ଟେମ୍ବର ୨୬ ତାରିଖରେ ଗଡଜାତର ରାଜାମାନେ ଲୋକମାନଙ୍କୁ ଲୋକପ୍ରତିନିଧିମୂଳକ ଶାସନ ଦେବା ବିଷୟରେ ବିଚାରକରିବା ପାଇଁ ଭବାନୀପାଟଣାରେ ବୈଠକରେ ବସିଲେ । କେତେକ ରାଜା ଲୋକପ୍ରତିନିଧିମାନଙ୍କୁ କ୍ଷମତା ହସ୍ତାନ୍ତରର ପକ୍ଷପାତୀ ଥିଲେ । ଅନ୍ୟମାନେ ଏହାର ବିରୋଧ କଲେ ଏବଂ ବଳପ୍ରୟୋଗ ଦ୍ୱାରା ଜନ ଆନ୍ଦୋଳନକୁ ଦବେଇ ଦେଇ ହେବ ବୋଲି ମତ ବ୍ୟକ୍ତ କଲେ । ରାଜାମାନେ ସେମାନଙ୍କର ମିଳିତ ପୋଲିସ୍ ବାହିନୀକୁ ସୁଦୃଢ କରିବା ପାଇଁ ଅଧିକ ଗୋର୍ଖାମାନଙ୍କୁ ନିଯୁକ୍ତ କରିବାକୁ ସ୍ଥିର କଲେ ।

ଏହି ସମୟରେ ମୟୂରଭଞ୍ଜ ମହାରାଜା ତାଙ୍କ ରାଜ୍ୟରେ ଲୋକପ୍ରତିନିଧିମୂଳକ ସରକାର ଗଠନ କଲେ । ସେ ପ୍ରଜାମଣ୍ଡଳ ନେତା ଶରତ ଚନ୍ଦ୍ର ଦାସଙ୍କୁ ପ୍ରଧାନମନ୍ତ୍ରୀ ଭାବେ ନିଯୁକ୍ତ କଲେ । କଳାହାଣ୍ଡିର ପୂର୍ବତନ ମହାରାଜା ପି.କେ.ଦେଓ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ ୧୯୪୭ ମସିହା ଅଗଷ୍ଟ ୧୨ ତାରିଖ ଦିନ ତାଙ୍କ ରାଜ୍ୟରେ ବିଧାନସଭା କାର୍ଯ୍ୟ ଆରମ୍ଭ କରିଥିଲା । ପାଟଣା ମହାରାଜା ଆଂଶିକ ଲୋକପ୍ରତିନିଧିମୂଳକ ସରକାର ପ୍ରବର୍ତ୍ତନ କରିବା ପାଇଁ ଇଛା ପ୍ରକାଶ କରିଥିଲେ । କିନ୍ତୁ ୧୦,୦୦୦ ଲୋକଙ୍କ ଏକ ସମ୍ମିଳନୀରେ ରାଜ୍ୟ କୃଷକମାନେ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ଏହି ସମ୍ମିଳନୀ ଇଷ୍ଟର୍ଣ୍ଣ ଷ୍ଟେଟସ୍ ୟୁନିୟନ୍‌କୁ ସ୍ୱୀକୃତି ଦେବାକୁ ମନା କରିଥିଲା ।

ସ୍ୱାଧୀନତା ପରେ ରାଜାଙ୍କ ପ୍ରଜାମଣ୍ଡଳ ବିରୋଧୀ ମନୋବୃତ୍ତି ଯୋଗୁଁ ନୀଳଗିରି ଗଡଜାତରେ ଗଣ୍ଡଗୋଳର ସୂତ୍ରପାତ ହେଲା । ରାଜା ଲୋକମାନଙ୍କ ମଧ୍ୟରେ ଅପ୍ରିୟ ହେବାରୁ କିଛି ସମୟ ଇଂରେଜ ସରକାର ତାଙ୍କୁ କ୍ଷମତାରୁ ଅନ୍ତର କରିଥିଲେ । ପୁଣି କ୍ଷମତାସୀନ କରାଯିବାରୁ ସେ ଆଦିବାସୀମାନଙ୍କୁ ପ୍ରଜାମଣ୍ଡଳ ନେତାଙ୍କ ବିରୋଧରେ ହିଂସାକାଣ୍ଡରେ ନିଯୁକ୍ତ କଲେ । ଆଦିବାସୀମାନେ ପ୍ରଜାମଣ୍ଡଳ ନେତାଙ୍କ ଘରେ ଅଗ୍ନି ସଂଯୋଗ କଲେ । ଫଳରେ ଅଣଆଦିବାସୀ ପ୍ରଜାମଣ୍ଡଳ ଲୋକେ ପାର୍ଶ୍ୱବର୍ତ୍ତୀ ବାଲେଶ୍ୱର ଜିଲ୍ଲାକୁ ପଳାଇଲେ । ଆଦିବାସୀମାନଙ୍କର ଗଣ୍ଡଗୋଳ ଅନ୍ୟ ଆଡକୁ ବ୍ୟାପିଯାଇପାରେ ବୋଲି ଓଡିଶା ସରକାର ଆଶଙ୍କା କଲେ । ଦେଶୀୟ ରାଜ୍ୟ ଦାୟିତ୍ୱରେ ଥିବା ସରଦାର ବଲ୍ଲଭଭାଇ ପଟେଲ୍‌ଙ୍କ ସହିତ ନୀଳଗିରି ସମସ୍ୟା ଆଲୋଚନା କରିବା ପାଇଁ ମହତାବ ଦିଲ୍ଲୀ ଗଲେ । ଭାରତ ସରକାରଙ୍କ ଦ୍ୱାରା କ୍ଷମତା ପ୍ରାପ୍ତ ହୋଇ ଓଡିଶା ସରକାର ନୀଳଗିରି ଶାସନ ନିଜ ହାତକୁ ନେବା ପାଇଁ ସ୍ଥିରକଲେ । ୧୯୪୭ ମସିହା ନଭେମ୍ବର ମାସ ୧୪ ତାରିଖରେ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ଯଥେଷ୍ଟ ପୋଲିସ୍ ଫଉଜ ନେଇ ନୀଳଗିରି ଶାସନ ହାତକୁ ନେବାପାଇଁ ନୀଳଗିରିକୁ ଯାତ୍ରା କଲେ, ବିନା ପ୍ରତିରୋଧରେ ନୀଳଗିରିର ରାଜା କ୍ଷମତା ହସ୍ତାନ୍ତର କଲେ ଏବଂ ନୀଳଗିରିରେ ରହିଥିବା Eastern States Union ଫଉଜକୁ ନିରସ୍ତ୍ର କଲେ ।

ନୀଳଗିରି ଦଖଲ ପରେ ଓଡିଶା ଗଡଜାତଗୁଡିକର ସାଂବିଧାନିକ ସ୍ଥିତି ବିଚାର କରିବା ପାଇଁ ୧୯୪୭ ମସିହା ନଭେମ୍ବର ୨୦ ତାରିଖ ଦିନ ଦେଶୀୟ ରାଜ୍ୟ ବ୍ୟାପାରର ସଚିବ ଭି.ପି. ମେନନ୍‌ଙ୍କ ଅଫିସ୍ ପ୍ରକୋଷ୍ଠରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ଓଡିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ଭି.ପି. ମେନନ୍ ଓ ସି.ସି.ଦେଶାଇ (ଦେଶୀୟ ରାଜ୍ୟ ବିଭାଗର ଅତିରିକ୍ତ ସଚିବ), ବି.ଡି.ଏସ୍. ବେଦୀ (ସମ୍ବଲପୁରର ଆଞ୍ଚଳିକ କମିଶନର) ଏବଂ ନଗେନ୍ଦ୍ର ସିଂହ ଆଇ.ସି.ଏସ୍ ଯୋଗ ଦେଇଥଲେ । ବୈଠକରେ ଭି.ପି ମେନନ୍ କହିଲେ ଯେ ଓଡିଶାର ଗଡଜାତଗୁଡିକ ଭାରତରାଷ୍ଟ୍ରରେ ପ୍ରଥମେ ଅନ୍ତର୍ଭୁକ୍ତ ହେବା ଆବଶ୍ୟକ କାରଣ Constitution Act.ର ପଞ୍ଚମ ଓ ଷଷ୍ଠ ଧାରା ଅନୁସାରେ ସେମାନେ ଭାରତ ରାଷ୍ଟ୍ରର ଅନ୍ତର୍ଭୁକ୍ତ ନହେଲେ ଭାରତ ସରକାର ସେମାନଙ୍କ ଉପରେ କୌଣସି କ୍ଷମତା ବା କର୍ତ୍ତୃତ୍ୱ ପ୍ରତିଷ୍ଠା କରିପାରିବେ ନାହିଁ । ସେତେବେଳକୁ ୧୮ଟି ଗଡଜାତ (୧୧ଟି 'କ' ବର୍ଗର ଯଥା ମୟୂରଭଞ୍ଜ, ପାଟଣା, କଳାହାଣ୍ଡି, କେନ୍ଦୁଝର, ଗାଙ୍ଗପୁର, ଢେଙ୍କାନାଳ, ସୋନପୁର, ବାମଣ୍ଡା, ନୟାଗଡ, ଷଢେଇକଳା ଏବଂ ବୌଦ, ୫ଟି 'ଖ' ବର୍ଗର (ଯଥା ଆଠଗଡ, ଆଠମଲ୍ଲିକ, ଖଣ୍ଡପଡା, ଖରସୁଆଁ ଏବଂ ନରସିଂହପୁର ଏବଂ ୨ଟି 'ଗ' ବର୍ଗର ଯଥା ରଣପୁର ଏବଂ ତିଗିରିଆ) ଭାରତ ରାଷ୍ଟ୍ରର ଅନ୍ତର୍ଭୁକ୍ତ

ହୋଇ ସାରିଥିଲେ । ୮ଟି ଗଡଜାତ (୭ଟି 'ଖ' ବର୍ଗର ଯଥା ବଡମ୍ବା, ବଣାଇ, ଦଶପଲ୍ଲା, ହିନ୍ଦୋଳ, ନୀଳଗିରି, ରେଢାଖୋଲ ଏବଂ ତାଳଚେର ଏବଂ ଗୋଟିଏ 'ଗ' ବର୍ଗର ଗଡଜାତ (ପାଲଲହଡା) ଭାରତ ରାଷ୍ଟ୍ରର ଅନ୍ତର୍ଭୁକ୍ତ ହୋଇ ନ ଥିଲେ । ଦେଶୀୟରାଜ୍ୟ ବ୍ୟାପାର ମନ୍ତ୍ରଣାଳୟରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆଗଲା । ପ୍ରଥମତଃ ଭାଷା, ଅର୍ଥନୀତି, ସଂସ୍କୃତି ଏବଂ ରାଜନୀତିକୁ ବିଚାର ନ କରି ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ୟୁନିୟନ ଗଠିତ ହୋଇଥିବାରୁ ଏହି ସଂସ୍ଥାକୁ ଅସ୍ୱୀକାର କରାଗଲା । ବହୁ ଛୋଟ ରାଜ୍ୟର ରାଜାମାନେ ଏହାକୁ ଭାଙ୍ଗି ଦେବାକୁ ଚାହୁଁଥିଲେ । କେବଳ କୋରିଆ ଓ ପାଟଣାଗଡର ରାଜ୍ୟଦ୍ୱୟ ଏହି ସଂସ୍ଥାକୁ ଚଳାଇ ରଖିବାକୁ ଚାହୁଁଥିଲେ । ୧୯୪୭ ମସିହା ଡିସେମ୍ବର ପହିଲାରେ କୋରିଆ, ପାଟଣାଗଡ ଏବଂ ଖୈରାଗଡର ରାଜାମାନେ ନୂଆ ଦିଲ୍ଲୀରେ ଦେଶୀୟ ରାଜ୍ୟ ଦାୟିତ୍ୱରେ ଥିବା ଭାରତର ଗୃହ ମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କୁ ସାକ୍ଷାତ କରିଥିଲେ । ପଟେଲ ସେମାନଙ୍କୁ ସ୍ପଷ୍ଟ ଭାବରେ କହିଲେ ଯେ Eastern States Unionକୁ ନିଶ୍ଚିତ ଭାବରେ ଭାଙ୍ଗି ଦିଆଯିବ, ଓଡିଆ ଭାଷାଭାଷୀ ଗଡଜାତଗୁଡିକ ଓଡିଶାରେ ମିଶାଇ ଦିଆଯିବ ଏବଂ ହିନ୍ଦୀ ଭାଷାଭାଷୀ ଗଡଜାତଗୁଡିକ କେନ୍ଦ୍ରୀୟ ପ୍ରଦେଶରେ ମିଶିବ । ସେ କହିଲେ ଯେ 'ଖ' ଏବଂ 'ଗ' ବର୍ଗର ରାଜ୍ୟମାନେ ସ୍ୱାବଲମ୍ବୀ ହେବାପାଇଁ ଅକ୍ଷମ ହୋଇଥିବାରୁ ସେଗୁଡିକ ପ୍ରାଦେଶିକ ସରକାରରେ ସାମିଲ କରାଯିବ ଏବଂ କଟକରେ ହେବାକୁ ଥିବା ସାକ୍ଷାତକାରରେ ପ୍ରାଦେଶିକ ସରକାର ଏବଂ 'କ' ବର୍ଗର ରାଜ୍ୟଗୁଡିକ ପାଇଁ ଯୁଗ୍ମ ପ୍ରଶାସନିକ ବ୍ୟବସ୍ଥା ପ୍ରସଙ୍ଗ ଆଲୋଚନା କରାଯିବ । ତେଣୁ କଟକରେ ହେବାକୁ ଥିବା ସାକ୍ଷାତକାରକୁ 'କ', 'ଖ' ଓ 'ଗ' ଏହି ତିନି ବର୍ଗର ରାଜାମାନଙ୍କୁ ଡକାଗଲା ।

ରାଜାମାନଙ୍କୁ ସୁବିଧା ସୁଯୋଗ ପ୍ରଦାନ ସାରଙ୍ଗଧର ଦାସ ଓ ପବିତ୍ର ମୋହନ ପ୍ରଧାନଙ୍କ ଭଳି ଯେଉଁ ପ୍ରଜାମଣ୍ଡଳ ନେତାମାନେ ରାଜାମାନଙ୍କୁ ବିତାଡିତ କରିବାକୁ ଚାହୁଁଥିଲେ, ସେମାନଙ୍କ ପ୍ରତି ଏକ ପ୍ରକାର ଅପମାନ ଥିଲା । ରାଜାମାନଙ୍କ ସହିତ ଆଲୋଚନା ମାଧ୍ୟମରେ ଗଡଜାତ ସମସ୍ୟାର ସମାଧାନ ଏକ ସହଜ ଓ ଫଳପ୍ରଦ ଉପାୟ ବୋଲି କୁହାଯାଇପାରେ । ଗଡ଼ଜାତ ମିଶ୍ରଣ ଓ ଗଣତନ୍ତ୍ରୀକରଣ ଭଳି ଏକ ବୈପ୍ଳବିକ କାର୍ଯ୍ୟ ରାଜାମାନଙ୍କ ସହିତ ବନ୍ଦୋବସ୍ତ ଦ୍ୱାରା ସମାହିତ ହେଲା । ବନ୍ଦୋବସ୍ତର ସର୍ତ୍ତାବଳୀକୁ ଜାତୀୟତାବାଦୀମାନେ(କଂଗ୍ରେସ ସରକାର) ସ୍ଥିର କରିଥିଲେ । ଗଡ଼ଜାତ ମିଶ୍ରଣକୁ ଏକ ଅର୍ଦ୍ଧ-ବୈଧାନିକ (Quasi-legal) ଏବଂ ଅର୍ଦ୍ଧ-ବୈପ୍ଳବିକ ପଦକ୍ଷେପ ବୋଲି କୁହାଯାଇପାରେ । ପରିସ୍ଥିତିର ତାଡନା ଅନୁସାରେ ରାଜାମାନଙ୍କ ସହିତ ମିଳାମିଶା ଏବଂ ସେମାନଙ୍କୁ କିଛି ସୁବିଧା ସୁଯୋଗ ଦେବାକୁ ପଡିଥିଲା ।

ହରେକୃଷ୍ଣ ମହତାବଙ୍କ ପ୍ରାରମ୍ଭିକ ଏବଂ ଅନବରତ ଉଦ୍ୟମ, ପଟେଲଙ୍କ ସାହସିକ ନେତୃତ୍ୱ ଓ ମେନନ୍‌ଙ୍କ କୂଟନୈତିକ ଆଲୋଚନା ଫଳରେ ଗଡ଼ଜାତ ମିଶ୍ରଣ ସମ୍ଭବ ହୋଇପାରିଲା । ମହତାବଙ୍କ ଭୂମିକା ସମ୍ବନ୍ଧରେ ପଟେଲ୍ ପରେ ଲେଖିଥିଲେ 'ସେ ହିଁ ଥିଲେ ସେହି ନାଟକର ଜୀବନ୍ତ ଆତ୍ମା, ତାଙ୍କର ଉତ୍ସାହ ସବୁ ଅସୁବିଧାକୁ ହଟେଇ ଦେଇଥିଲା, ତାଙ୍କର ନିରବଚ୍ଛିନ୍ନ ଚେଷ୍ଟା ଶେଷରେ ଫଳବତୀ ହୋଇଥିଲା' ୪୭ ।

ଯେଉଁ ପ୍ରଜାମଣ୍ଡଳ କର୍ମୀମାନେ ଏବଂ କଂଗ୍ରେସ ସମାଜବାଦୀମାନେ ରାଜାମାନଙ୍କର କୁଶାସନକୁ ପଦାରେ ପକାଇଥିଲେ ଏବଂ ତୃଣମୂଳସ୍ତରରେ ଲୋକଙ୍କର ରାଜନୈତିକ ଚେତନାକୁ ଜାଗ୍ରତ କରିଥିଲେ ସେମାନେ (ସାରଙ୍ଗଧର ଦାସ, ପବିତ୍ରମୋହନ ପ୍ରଧାନ, ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଭଳି ନେତାମାନେ) ରାଜାମାନଙ୍କ ମନୋବଳକୁ ଦୁର୍ବଳ କରି ଗଡଜାତ ମିଶ୍ରଣ ସମ୍ଭବ କରିଥିଲେ ।

୧୯୪୭ ମସିହା Extra Provincial Jurisdiction Act ଅନୁସାରେ ୧୯୪୭ ମସିହା ଡିସେମ୍ବର ୨୩ ତାରିଖରେ ଭାରତ ସରକାର ଓଡିଶା ସରକାରକୁ ଗଡଜାତଗୁଡିକୁ ଜିଲ୍ଲା ଭଳି ଶାସନ କରିବା ପାଇଁ କ୍ଷମତା ଦେଲେ । ଏହି କ୍ଷମତା ଦାନ ୧୯୪୮ ମସିହା ଜାନୁଆରୀ ପହିଲାରୁ ଲାଗୁ ହେଲା । ଗଡଜାତର ଲୋକନେତା ବା ପ୍ରଜାମଣ୍ଡଳର ନେତାଙ୍କ ସହିତ ମିଶ୍ରଣ ସମୟରେ କିଛି ପରାମର୍ଶ କରାଯାଇନଥିଲେ ମଧ୍ୟ ମିଶ୍ରଣ ପରେ ରାଜ୍ୟପାଳ ତିନିଜଣ ଗଡଜାତ ନେତାଙ୍କୁ Executive Councillor ଭାବେ ନିଯୁକ୍ତ କରିଥିଲେ । ଏହି Executive Councillor ପଦମର୍ଯ୍ୟାଦା ରାଜ୍ୟମନ୍ତ୍ରିମଣ୍ଡଳର ମନ୍ତ୍ରୀମାନଙ୍କ ସହିତ ସମାନ ଥିଲା ।

ବଲାଙ୍ଗୀର ପାଟଣାର କପିଳେଶ୍ୱର ନନ୍ଦ, ନୀଳଗିରିର କୈଳାସ ଚନ୍ଦ୍ର ମହାନ୍ତି ଏବଂ ତାଳଚେରର ପବିତ୍ରମୋହନ ପ୍ରଧାନଙ୍କୁ Executive Councillorଭାବେ ରାଜ୍ୟପାଳ ନିଯୁକ୍ତ କରିଥିଲେ । ଏହାଛଡା ୧୯୪୮ ମସିହା ଫେବୃଆରୀ ମାସରେ ଓଡିଶାର ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଓଡିଶା ଗଡଜାତ ସଭା (Odisha States Assembly) ଗଢାଯାଇଥିଲା – ପ୍ରଧାନମନ୍ତ୍ରୀ, ତିନିଜଣ Executive Councillor, ପୂର୍ବତନ ଗଡଜାତମାନଙ୍କ ପାଇଁ ନିଯୁକ୍ତ ମୁଖ୍ୟ ଶାସକ ଏବଂ ପୂର୍ବତନ ଗଡଜାତରୁ ମନୋନୀତ ୩୪ ଜଣ ସଦସ୍ୟ । ୧୯୪୯ ମସିହା ଅକ୍ଟୋବର ୯ ତାରିଖରୁ ଓଡିଶା ଗଡଜାତ ସଭାର ପରିସମାପ୍ତି ଘଟିଲା ଏବଂ ପୂର୍ବତନ ଗଡଜାତ ଅଞ୍ଚଳରୁ ଓଡିଶା ବିଧାନସଭାକୁ ୩୧ ଜଣ ସଦସ୍ୟ ବଡଲାଟଙ୍କ ଦ୍ୱାରା ନିଯୁକ୍ତ ହେଲେ । ଫଳରେ ବିଧାନସଭାର ସଦସ୍ୟ ସଂଖ୍ୟା ୬୦ରୁ ୯୧କୁ ବୃଦ୍ଧି ପାଇଲା । ଏହି ନିଯୁକ୍ତିଗୁଡିକ ପାଇଁ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ଏବଂ ବିରୋଧୀ ଦଳର ନେତା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ସହିତ ପରାମର୍ଶ କରାଯାଇଥିଲା । ଏହି ସମୟରେ ଷଢେଇକଳା ଓ ଖରସୁଆଁର ଆଦିବାସୀମାନେ ଓଡିଶା ସହିତ ମିଶ୍ରଣ ବିରୋଧରେ ସ୍ୱର ଉତ୍ତୋଳନ କଲେ । ବିହାରର କଂଗ୍ରେସ ନେତାମାନଙ୍କ ପ୍ରରୋଚନାରେ ଆଦିବାସୀମାନେ ବିହାର ସହିତ ଷଢେଇକଳା ଓ ଖରସୁଆଁର ମିଶ୍ରଣ ଦାବୀ କଲେ । ଏହି ଦୁଇଟି ଗଡଜାତ ବିହାରର ସିଂହଭୂମ ଜିଲ୍ଲା ମଧ୍ୟରେ ଅବସ୍ଥିତ ଥିଲା । ଦେଶୀୟରାଜ୍ୟ ମନ୍ତ୍ରଣାଳୟର ମଧ୍ୟସ୍ଥତାରେ ୧୯୪୮ ମସିହା ମେ ୧୮ ତାରିଖଠାରୁ ଷଢେଇକଳା ଓ ଖରସୁଆଁକୁ ବିହାର ପ୍ରଦେଶରେ ଅନ୍ତର୍ଭୁକ୍ତ କରାଗଲା ।

ଇତିମଧ୍ୟରେ ମୟୂରଭଞ୍ଜରେ ଗଣ୍ଡଗୋଳିଆ ସ୍ଥିତି ଉପୁଜିଲାଣି । ଶରତ ଚନ୍ଦ୍ର ଦାସଙ୍କ ଅଧ୍ୟକ୍ଷତାରେ ଗଠିତ ଲୋକପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା କାର୍ଯ୍ୟ କରିପାରିଲା ନାହିଁ । ରାଜକୋଷ ଅର୍ଥଶୂନ୍ୟ ହୋଇଗଲା । ତେଣୁ ମହାରାଜା ଓ ପ୍ରଧାନମନ୍ତ୍ରୀ ୧୯୪୮ ମସିହା ଅକ୍ଟୋବର ୧୬ ତାରିଖରୁ ଶାସନ ଭାର ଭାରତ ସରକାରଙ୍କୁ ସମର୍ପଣ କଲେ । ଭାରତ ସରକାର ମୟୂରଭଞ୍ଜ ପାଇଁ ଜଣେ ଚିଫ୍ କମିଶନର ନିଯୁକ୍ତ କଲେ । ୧୯୪୯ ମସିହା ଜାନୁଆରୀ ପହିଲାରୁ ଭାରତ ସରକାର ମୟୂରଭଞ୍ଜକୁ ଓଡିଶା ସରକାରଙ୍କୁ ହସ୍ତାନ୍ତର କଲେ । ଓଡିଶା ସହିତ ମୟୂରଭଞ୍ଜର ମିଶ୍ରଣକୁ ସୋନାରାମ ସୋରେନ୍ ଓ ରାମଚନ୍ଦ୍ର ମାଝୀଙ୍କ ନେତୃତ୍ୱରେ ଆଦିବାସୀମାନେ ବିରୋଧ କଲେ । ଯେତେଦୂର ସମ୍ଭବ ଆଦିବାସୀମାନଙ୍କୁ କିଛି ବାହାର ଲୋକ ଓ ସଂସ୍ଥାମାନେ ଉତ୍ତେଜିତ କରିଥିଲେ । ହଜାର ହଜାର ସଂଖ୍ୟାରେ ସେମାନେ ବାରିପଦା ଆସିଲେ, ସଭାସମିତି ଓ ବିକ୍ଷୋଭମାନ ଆୟୋଜନ କଲେ । ବାମନଘାଟୀ ସବ୍‌ଡିଭିଜନକୁ ସେମାନେ ସ୍ୱାଧୀନ ଘୋଷଣା କଲେ ଏବଂ ବାରିପଦା ଓ ରାଇରଙ୍ଗପୁର ମଧ୍ୟରେ ରାସ୍ତାକୁ ଅବରୋଧ କଲେ । ଆଦିବାସୀଙ୍କ ବିରୋଧକୁ ଦବେଇଦେବା ଲାଗି ସାମରିକ ପୋଲିସ୍ ସାହାଯ୍ୟ ନିଆଗଲା । କିଛିଲୋକ ପୁଲିସ୍ ଗୁଳିରେ ପ୍ରାଣ ହରାଇଲେ । କିଛି ସମୟ ପରେ ପରିସ୍ଥିତି ସ୍ୱାଭାବିକ ହେଲା ଏବଂ ଆଦିବାସୀମାନେ ଓଡିଶା ସହିତ ମୟୂରଭଞ୍ଜ ମିଶ୍ରଣକୁ ଗ୍ରହଣ କଲେ ।

ଓଡିଶା କେବଳ ଆଦିବାସୀ ବିଦ୍ରୋହ ଯୋଗୁଁ ଷଢେଇକଳା ଓ ଖରସୁଆଁ ହରେଇ ନ ଥିଲା, ମୟୂରଭଞ୍ଜ ମିଶ୍ରଣ ବିଳମ୍ବିତ ହେବାରୁ ଓଡିଶା ସରକାର ପ୍ରତ୍ୟକ୍ଷ ଭାବରେ ଆଦିବାସୀ ବିଦ୍ରୋହକୁ ମୁକାବିଲା କରିପାରିନଥିଲେ । ଷଢେଇକଳା ଓ ଖରସୁଆଁ ହରେଇବା ଫଳରେ ମୋଟ ୨୬ଟି ଗଡଜାତରୁ ୨୪ଟି ଗଡଜାତ (୭୨୩୮୨.୨ ବର୍ଗ କିଲୋମିଟର) ଓଡିଶାରେ ମିଶିଲା । କଟକରେ ମିଶ୍ରଣ ରାଜିନାମା ସ୍ୱାକ୍ଷରିତ ହେବାପରେ ଷଢେଇକଳା, ଖରସୁଆଁ ଓ କଳାହାଣ୍ଡିରେ ମିଶ୍ରଣବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଥିଲା । କେତେକ ପୂର୍ବତନ ରାଜା ଓ କଟକର ରାଜନୈତିକ ଲୋକ ଏହି ଆନ୍ଦୋଳନକୁ ସମର୍ଥନ କରୁଥିଲେ । କିଛି ସମୟ ପରେ ଏହି ଆନ୍ଦୋଳନ ଦବି ଯାଇଥିଲା । ୧୯୩୬ରେ ଗଠିତ ଓଡିଶା ପ୍ରଦେଶ ଏବଂ ୨୪ ଟି ଗଡଜାତକୁ ମିଶାଇ ୧୩ଟି ଜିଲ୍ଲା ପୁନର୍ଗଠିତ କରାଗଲା, ଯାହା ବର୍ତ୍ତମାନ ୩୦ଟି ଜିଲ୍ଲାରେ ପରିଣତ ହୋଇଛି ।

୧୯୪୩ ଅଗଷ୍ଟରେ ବିଶ୍ୱବିଦ୍ୟାଳୟ ଆଇନ ବିଧାନସଭାରେ ପାସ୍ ହେଲା ଏବଂ ୧୯୪୪ ନଭେମ୍ବରରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ବିଭିନ୍ନ ଗଡଜାତର ରାଜାମାନେ ସେମାନଙ୍କ ରାଜ୍ୟର ରାଜଧାନୀରେ ଉଚ୍ଚଶିକ୍ଷା ପ୍ରସାରଣ ପାଇଁ ଉଦ୍ୟମ କରିଛନ୍ତି । ପ୍ରଥମ ଉଦ୍ୟମ ପାରଳା

# ବେସରକାରୀ ନଥି

5/7-5-30
FL. 2 Cuttack,
3.11.31.

Dear Gouranga,

I am sending today to the General Manager 4900 copies of a printed circular letter to be distributed among the Oriyas including Muhammadans who are residents of Orissa. These should be distributed not only among the Oriyas who are working in the, Tata Iron and Steel Company but also among Oriyas working in the subsidiary companies in the Jamshedpur area.

You promised to work whole-heartedly in this national cause. I wish you to decide in consultation with Mr. Keenan how these can be distributed. I think the best way to distribute them is to ask some Oriyas of each department to hand over to each Oriya working in the department a copy of the circular letter. This would be easier than the distribution in their respective residences. But in this matter you must consult with the General Manager and adopt the plan he approves.

I am enclosing Rs.50/- to meet expenses of distributing letters specially among the Oriyas working in the subsidiary companies. When I met you, you saidt that the mere announcement that I was there would bring together all Oriya workmen for a general meeting. That has been my experience in Orissa but I want to know the feelings of Oriyas in Jamshedpur. After distribution of these circular letters you will be able to find out the feelings of Oriyas in the matter and I wish you to write to me how matters stand. To meet expenses to be incurred in the distribution among the workmen in the subsidiary concerns in the shape of conveyance etc. I am enclosing Rs.50/- in this letter. If you want more money please wire to me. I am writing

ଓଡିଆମାନଙ୍କ ମଧ୍ୟରେ ମୁଦ୍ରିତ ବିଜ୍ଞାପନ ବ[ନ ବିଷୟରେ ଗୌରାଙ୍ଗଙ୍କ ନିକଟରୁ ମଧୁସୂଦନ ଦାସଙ୍କୁ ପତ୍ରର ଏକ ନକଲ। ୦୩.୧୧.୧୯୩୧ । ସଂଯୋଗ ସଂଖ୍ୟା ୨୦୩୧ । ସୁରେନ୍ଦ୍ର ମହାନ୍ତିଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

## ବେସରକାରୀ ନଥି

Acc.NO. 2047FUR.
S) 7-12-20

Cuttack, FL.1
26.11.31.

My dear Rajah Saheb,

I should like to hear from you about the attitude of the President and other members of the Committee regarding the Orissa claim to Singbhum District. I have no doubt you have received my Memorandum specially referring to the industrial concerns at Jamshedpur. Yesterday I sent maps referred to in my Memorandum.

The Congress people have selected Pandit Nilakantha Das to examine at the witness. I think we should object to his examination. I consider evidence of any representative of Congress is irrelevant and calculated to introduce a confusion of the real issues raised by the Government of India's order of reference. Congress is now -- engaged in a controversy with England, the subject of such controversy being what should be the -- constitution of India. The Congress looks upon India as a whole. The Congress view cannot any way help the solution of a problem involving the right

ଉତ୍କଳ ପ୍ରଦେଶ ଗଠନ ନିମନ୍ତେ କଂଗ୍ରେସ ଶାସକଙ୍କ ଶାସନ ବିଷୟରେ ରାଜାସାହେବଙ୍କ ନିକଟକୁ ମଧୁସୂଦନ ଦାସଙ୍କ ଏକ ପତ୍ରର ନକଲ। ୨୬.୧୧.୧୯୩୧। ସଂଯୋଗ ସଂଖ୍ୟା ୨୦୪୭। ସୁରେନ୍ଦ୍ର ମହାନ୍ତିଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

# ବେସରକାରୀ ନଥି


My dear [illegible] Babu,
I wrote you a letter from Simla. In view of the coming committee we shall have to make out a case for territorial redistribution of provinces. Please arrange with Orissa public men for plan of evidence for before the present commission. We can't expect them to stay 2 months. They must [illegible] in batches.
I hope you & Biswanath Babu are doing your best. With kind wishes
Yours sincerely
[illegible]



ଉତ୍କଳ ପ୍ରଦେଶ ଗଠନ ନିମନ୍ତେ କଂଗ୍ରେସ ଶାସକଙ୍କ ଶାସନ ବିଷୟରେ ରାଜାସାହେବଙ୍କ ନିକଟକୁ ମଧୁସୂଦନ ଦାସଙ୍କ ଏକ ପତ୍ରର ନକଲ। ୨୬.୧୧.୧୯୩୧। ସଂଯୋଗ ସଂଖ୍ୟା ୨୦୪୭। ସୁରେନ୍ଦ୍ର ମହାନ୍ତିଙ୍କ ଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

## ବେସରକାରୀ ନଥି

# INDIAN ROUND-TABLE CONFERENCE.



## DIRECTORY.

(Second Edition—14th November 1930.)

*(Subject to Revision.)*

---

SECRETARIAT-GENERAL,
ST. JAMES'S PALACE, S.W. 1.

ଇଣ୍ଡିଆନ୍ ରାଉଣ୍ଡ ଟେବୁଲ୍ କନ୍‌ଫେରେନସ୍ ଡାଇରୋକ୍ଟରୀ ଶୀର୍ଷକ ଏକ ପୁସ୍ତକ। ୧୪.୧୧.୧୯୩୦। ସଂଯୋଗ ସଂଖ୍ୟା ୧୦୫୩। ସତ୍ୟନାରାୟଣ ରାଜଗୁରୁଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

# ବେସରକାରୀ ନଥି

**INDIAN ROUND-TABLE CONFERENCE.**

**LIST OF DELEGATES, &c.**

**British Representatives.**

| *Name.* | *Address.* |
|---|---|
| *Government.* | |
| The Right Hon. J. Ramsay MacDonald, M.P., Prime Minister. | 10, Downing Street, S.W. 1. *Tel. No. Victoria* 1234. |
| The Right Hon. Lord Sankey, G.B.E., Lord Chancellor. | House of Lords. *Tel. No. Victoria* 6240. |
| The Right Hon. Wedgwood Benn, D.S.O., D.F.C., M.P., Secretary of State for India. | India Office, S.W. 1. *Tel. No. Victoria* 8920. |
| The Right Hon. Arthur Henderson, M.P., Secretary of State for Foreign Affairs. | Foreign Office, S.W. 1. *Tel. No. Victoria* 8440. |
| The Right Hon. J. H. Thomas, M.P., Secretary of State for Dominion Affairs. | Dominions Office, S.W. 1. *Tel. No. Victoria* 8840. |
| The Right Hon. Earl Russell | India Office, S.W. 1. *Tel. No. Victoria* 8920. |
| Mr. H. B. Lees Smith, M.P. | General Post Office, E.C. 1. *Tel. No. Central* 3600. |
| *Personally attached to the Prime Minister:* Mr. S. K. Brown, C.V.O. | India Office, S.W. 1. *Tel. No. Victoria* 8920. |
| *Conservative.* | |
| The Right Hon. Earl Peel, G.B.E. | 24, Old Queen Street, S.W. 1. *Tel. No. Victoria* 9034. |
| The Most Hon. The Marquess of Zetland, G.C.S.I., G.C.I.E. | 24, Old Queen Street, S.W. 1. *Tel. No. Victoria* 9034. |
| The Right Hon. Sir Samuel Hoare, Bart., G.B.E., C.M.G., M.P. | 24, Old Queen Street, S.W. 1. *Tel. No. Victoria* 9034. |
| Major the Hon. Oliver Stanley, M.C., M.P. | 24, Old Queen Street, S.W. 1. *Tel. No. Victoria* 9034. |
| *Secretary:* Mr. R. J. Stopford | 24, Old Queen Street, S.W. 1. *Tel. No. Victoria* 9034. |
| *Liberal.* | |
| The Most Hon. The Marquess of Reading, G.C.B., G.C.S.I., G.C.I.E., G.C.V.O. | 32, Curzon Street, W. |
| The Most Hon. The Marquess of Lothian, C.H. | 17, Waterloo Place, S.W. 1. *Tel. No. Regent* 3287. |
| Sir Robert Hamilton, M.P. | 25, Old Queen Street, S.W. 1. *Tel. No. Victoria* 7666. |
| Mr. Isaac Foot, M.P. | 25, Old Queen Street, S.W. 1. *Tel. No. Victoria* 7666. |
| *Secretary:* Prof. J. Coatman, C.I.E. | 25, Old Queen Street, S.W. 1. *Tel. No. Victoria* 7666. |
| *Secretaries to British Delegation.* | |
| Mr. V. Dawson, C.I.E., India Office | India Office, S.W. 1. *Tel. No. Victoria* 8920. |
| Mr. W. H. Lewis, I.C.S. (Joint Secretary, Reforms Office, Government of India). | India Office, S.W. 1. *Tel. No. Victoria* 8920. |
| Mr. K. S. Fitze, I.C.S. (Political Department, Government of India). | India Office, S.W. 1. *Tel. No. Victoria* 8920. |

4833 500 11.30

ଇଣ୍ଡିଆନ୍ ରାଉଣ୍ଡ ଟେବୁଲ୍ କନ୍‌ଫେରେନସ୍ ଡାଇରୋକ୍ଟରୀ ଶୀର୍ଷକ ଏକ ପୁସ୍ତକ। ୧୪.୧୧.୧୯୩୦। ସଂଯୋଗ ସଂଖ୍ୟା ୧୦୫୩। ସତ୍ୟନାରାୟଣ ରାଜଗୁରୁଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

# ବେସରକାରୀ ନଥି



The All-Parties Utkal Province Committee.

Acc. No. 858
Date 22-3-76
F. No. 3

c/o Udyoga Mandir,
Berhampore,
B.N.R.,
18-5-31.

Dear Sir,

The All-Parties Utkal Province Committee has constituted the following nine gentlemen into a sub-committee for Evidence and Collection of Materials :-

1. Sjt Brajasundar Das, Zamindar, c/o Mukur Press, P.O. Chandnichauk, Cuttack. B.N.R.
2. Rai Bahadur Laxmidhar Mahanti M.L.C., Gangamandir, Cuttack. B.N.R.
3. Sjt. Bhubanananda Das M.L.A., P.O. Chandnichauk, Cuttack. B.N.R.
4. Sjt. Biswanath Misra M.L.A., Bar-at-Law, Exhibition Road, Patna. E.I.R.
5. Sjt. Bhubaneswar Rath, Vakil, Berhampur, B.N.R.
6. Sjt. Satyanarayan Rajguru, Rajguru Street, Parlakimedi. B.N.R.,
7. Sri Sri Laxminarayan Harichndan Jagadev, Raja of Tekkali, Tekkali, (Ganjam Dist).
8. Sjt. Purnachandra Tripathi, Pleader, L Town, Jamshedpur, (Singbhum Dist. ).
9. Sjt Niranjan Patnaik, c/o Udyoga Mandir, Berhampur, B.N.R - Convener.

(2) I have requested the Secretary of the Main Committee Sjt Laxminarayana Patnaik, M.B.E., Tulsipur, Cuttack, B.N.R to open offices immediately in order that work may be started at once. But till such offices are opened we cannot afford to do nothing.

(3). The most important part of the work in connection with the establishment of the separate province has to be shouldered by our Sub Committee. Before a detailed programme is fixed up, I request individual members of the Committee to help me with suggestions as oft... ...important information, statistics

ନୂତନ ଓଡିଶା ପ୍ରଦେଶ ଗଠନ ସଂପର୍କରେ ନିରଞ୍ଜନ ପଟ୍ଟନାୟକଙ୍କ ଏକ ପତ୍ର। ୧୮.୦୫.୧୯୩୧। ସଂଯୋଗ ସଂଖ୍ୟା ୮୫୮। ସତ୍ୟନାରାୟଣ ରାଜଗୁରୁଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

## ବେସରକାରୀ ନଥି

Indian Posts and Telegraphs Department.

To (Telegraph Office) Madras

To (Person) (1) Prelegic (2) Revenue

Despatched

Date 1.8. 1932.

Acc. No... 826

Date... 22-3-76

F. No... 59

Oriya Amalgamation Committee Parlakimedi earnestly pray Council support for Orissa province ~~thirty years Oriya agitation~~ and majority recommendation of Orissa Report regarding Parlakimedi.

Secretary.

H. Darha 1.8.32

ଓଡ଼ିଶା ସହିତ ପାରଳାଖେମୁଣ୍ଡି ମିଶ୍ରଣ ବିଷୟରେ ଏକ ଟେଲିଗ୍ରାମ। ୦୧.୦୮.୧୯୩୨। ସଂଯୋଗ ସଂଖ୍ୟା ୮୨୬। ସତ୍ୟନାରାୟଣ ରାଜଗୁରୁଙ୍କ ବେସରକାରୀ ନଥିର ଏକ ଉଦ୍ଧୃତାଂଶ।

ଅଧୀକ୍ଷକ
ଓଡ଼ିଶା ରାଜ୍ୟ ଅଭିଲେଖାଗାର, ଭୁବନେଶ୍ୱର

## ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ

# ଉତ୍କଳଗୌରବ ମଧୁସୂଦନ ଓ କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କର ଭୂମିକା

ହୃଦାନନ୍ଦ ବେହେରା

୧୭୫୭ ମସିହାର ପଲାସୀ ଯୁଦ୍ଧଠାରୁ ତତ୍‌କାଳୀନ ଇଂରେଜ ସରକାରଙ୍କର ଓଡ଼ିଶା ପ୍ରତି ଶ୍ୟେନ ଦୃଷ୍ଟି ପଡ଼ିଥିଲା। ଆଧୁନିକ ଅସ୍ତ୍ରଶସ୍ତ୍ର ଓ ନିଜର କୂଟନୀତି ଯୋଗୁଁ ଉକ୍ତ ଯୁଦ୍ଧରେ ବଙ୍ଗର ନବାବ ସିରାଜଦ୍ଦୌଲାଙ୍କୁ ଇଂରେଜମାନେ ପରାସ୍ତ କରି ବଙ୍ଗ ଅଧିକାର କରି ନେଇଥିଲେ। ସେହି ସମୟରେ ଓଡ଼ିଶାରେ ଶାସନ କରୁଥିବା ମରହଟ୍ଟା ବର୍ଗୀମାନେ ଅତ୍ୟନ୍ତ ପ୍ରଜାପୀଡ଼କ ହୋଇପଡ଼ିଥିଲେ। ଓଡ଼ିଶାବାସୀ ବର୍ଗୀମାନଙ୍କର ଆକ୍ରୋଶର ଶିକାର ହୋଇ ନିଜକୁ ଅସହାୟ ମନେ କରୁଥିଲେ। ଇଂରେଜମାନେ ବଙ୍ଗ ଅଧିକାର କଲାପରେ, କଲିକତାରୁ ମାନ୍ଦ୍ରାଜ ସହଜରେ ଯାତାୟାତ କରିବା ପାଇଁ ଚିନ୍ତା କଲେ। ସେମାନେ ଦେଖିଲେ କଲିକତାରୁ ମାନ୍ଦ୍ରାଜ ଯିବାକୁ ହେଲେ ଓଡ଼ିଶା ମଧ୍ୟଦେଇ ଯିବାକୁ ହେବ। ତେଣୁ ପଲାସୀ ଯୁଦ୍ଧ ସମୟରୁ ଓଡ଼ିଶାକୁ ନିଜ ହାତ ମୁଠାକୁ ନେବା ପାଇଁ ଇଂରେଜମାନେ ନିଜର ଚେଷ୍ଟା ଜାରି ରଖିଥିଲେ ଓ ଏଥିନିମନ୍ତେ ଲର୍ଡ଼ କ୍ଲାଇବ୍ ଓ ୱାରେନ୍ ହେଷ୍ଟିଙ୍ଗସ୍ ଭିନ୍ନ ଭିନ୍ନ ସମୟରେ ମରହଟ୍ଟା ଶାସକମାନଙ୍କ ନିକଟକୁ ଦୂତ ପଠାଇଥିଲେ। ପ୍ରକୃତରେ ସେହି ସମୟରେ ଓଡ଼ିଶାର ଆଭ୍ୟନ୍ତରୀଣ ବ୍ୟାପାରକୁ ନେଇ ଇଂରେଜ ଓ ମରହଟ୍ଟାମାନଙ୍କ ମଧ୍ୟରେ ମନୋମାଳିନ୍ୟ ଲାଗି ରହିଥିଲା। ଏପରିକି ଓଡ଼ିଶା ମଧ୍ୟଦେଇ ମାନ୍ଦ୍ରାଜକୁ ଯିବା ନିମନ୍ତେ ଇଂରେଜ ସେନାପତି ତତ୍‌କାଳୀନ ମରହଟ୍ଟା ଶାସକ ମାଧୋ ଭୋନ୍‌ସଲାଙ୍କୁ କିଛି ଅର୍ଥ ଦେବାକୁ ବାଧ୍ୟ ହୋଇଥିଲେ। ସେତେବେଳର ବଡ଼ଲାଟ୍ ୱାରେନ୍ ହେଷ୍ଟିଙ୍ଗସ୍ ଏହାକୁ ସହଜରେ ଗ୍ରହଣ କରି ପାରିନଥିଲେ। ଫଳ ସ୍ୱରୂପ ଇଂରେଜମାନେ ଭିନ୍ନ ଭିନ୍ନ ସମୟରେ ଦୁର୍ବଳ ମରହଟ୍ଟା ଶାସକଙ୍କୁ ଓଡ଼ିଶାରୁ ବିତାଡ଼ିତ କରି ଓଡ଼ିଶାକୁ ନିଜ ଶାସନାଧୀନ କରିଥିଲେ। ସେହି ସମୟରେ ଓଡ଼ିଶାର ଜନସାଧାରଣ ମରହଟ୍ଟା ଶାସନରୁ ମୁକ୍ତ ହେବା ପାଇଁ ପ୍ରକାଶ୍ୟରେ ସାହାଯ୍ୟ ଚାହୁଁଥିଲେ ଓ ଇଂରେଜମାନଙ୍କର ଆଗମନକୁ ସ୍ୱାଗତ କରିଥିଲେ। ସମୁଦାୟ ଓଡ଼ିଶାକୁ ଦଖଲ କରିବାକୁ ଇଂରେଜ ବାହିନୀଙ୍କୁ ବହୁତ କମ୍ ସମୟ ଲାଗିଥିଲା ଓ ଇଂରେଜ ସେନାଙ୍କର ମୃତାହତ ମଧ୍ୟ ବହୁତ ନଗଣ୍ୟ ଥିଲା।



ଏହିପରି ଭାବେ ବର୍ଗୀ ଓ ଇଂରେଜମାନଙ୍କ ଦ୍ୱାରା କବଳିତ ହୋଇ ଛିନ୍ନ ଭିନ୍ନ ହୋଇ ପଡ଼ିଥିଲା ଉତ୍କଳ ଜନନୀ। ନିଜର ପ୍ରଶାସନିକ ସୁବିଧା ନିମନ୍ତେ ଓଡ଼ିଶାକୁ ଭାଷାଭିତ୍ତିକ ରାଜ୍ୟର ମାନ୍ୟତା ନ ଦେଇ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗ ଓ ବିହାର ପ୍ରଦେଶରେ ଓଡ଼ିଶାକୁ ମିଶାଇ ଦେଇଥିଲେ। ବିଶେଷ କରି ଇଂରେଜମାନେ ଓଡ଼ିଶା ଦଖଲ କଲାପରେ ଓଡ଼ିଶା ଓ ଓଡ଼ିଆଭାଷା ନିଜର ସତ୍ତା ହରାଇ ବସିଥିଲା। ଗଞ୍ଜାମକୁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ସହିତ ଓ ସମ୍ବଲପୁରକୁ ମଧ୍ୟପ୍ରଦେଶ ସହିତ ମିଶାଇ ଦେଇଥିଲେ। ମେଦିନିପୁର ବଙ୍ଗ ପ୍ରେସିଡେନ୍‌ସି ସହିତ ଓ ସିଂହଭୂମି ଆଦି

ଅଞ୍ଚଳ ବିହାର, ଛୋଟନାଗପୁର ସହିତ ମିଶି ଯାଇଥିଲା । ଫଳରେ ଓଡ଼ିଆମାନଙ୍କର ସ୍ୱାଭିମାନ କ୍ଷୁଣ୍ଣ ହେବା ସହିତ, ତତ୍‌କାଳୀନ ଓଡ଼ିଶାବାସୀଙ୍କ ମନରେ ଗଭୀର ରେଖାପାତ କରିଥିଲା । ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ବଜାୟ ରଖିବା ପାଇଁ ଓଡ଼ିଶାର ସ୍ୱାଭିମାନୀ ନେତୃମଣ୍ଡଳୀ, ସାହିତ୍ୟିକ ଓ ସାଧାରଣ ନାଗରିକ ବିଭିନ୍ନ ସମୟରେ ବିଭିନ୍ନ ଦପ୍ତରରେ ନିଜର ଆଭିମୁଖ୍ୟ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ଆନ୍ଦୋଳନ ଜାରି ରଖିଥିଲେ ।



ତତ୍‌କାଳୀନ ବଙ୍ଗୀୟ ଶିକ୍ଷିତ ସମାଜ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ସର୍ବସାଧାରଣରେ ପ୍ରଚାର କରୁଥିଲେ । ବାଲେଶ୍ୱର ହାଇସ୍କୁଲର ଜଣେ ବଙ୍ଗୀୟ ଶିକ୍ଷକ ପ୍ରକାଶ୍ୟରେ କହିଥିଲେ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ଼ଁ' । ଏହି ବଙ୍ଗୀୟ ଶିକ୍ଷକଙ୍କର ଉକ୍ତି ଫକୀର ମୋହନ ସେନାପତିଙ୍କ ମନରେ ଗଭୀର ଆଘାତ ଦେଇଥିଲା । ଫଳରେ ସେ ଏହାର କଟୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ଘୋର ବିରୋଧ କରିଥିଲେ । ଏହିଭଳି ଏକ ଘଡ଼ି ସନ୍ଧି ମୁହୂର୍ତ୍ତରେ ଓଡ଼ିଶାର ତତ୍‌କାଳୀନ ନେତୃମଣ୍ଡଳୀ ୧୮୮୨ ମସିହାରେ କଟକଠାରେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ । ଏହି ସଭା ମାଧ୍ୟମରେ ଓଡ଼ିଆ ଭାଷା ଆନ୍ଦୋଳନ କ୍ରିୟାଶୀଳ ହୋଇଥିଲା । ଗଞ୍ଜାମର କେତେଜଣ ଆଗ ଧାଡ଼ିର ସାହିତ୍ୟିକ ଓ ନେତୃମଣ୍ଡଳୀଙ୍କ ଦ୍ୱାରା ଗଠିତ ହୋଇଥିଲା 'ଗଞ୍ଜାମ ଉତ୍କଳ ହିତବାଦିନୀ ସଭା' । ଏହି ସଭାରେ ସଭ୍ୟମାନଙ୍କର ମୁଖ୍ୟ ଦାବି ଥିଲା ଗଞ୍ଜାମକୁ ମାନ୍ଦ୍ରାଜ ପ୍ରେସିଡେନ୍‌ସିରୁ ଅଲଗା କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସହିତ ମିଶ୍ରଣ କରି ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରାଯାଉ ।

ଠିକ୍ ଏହି ସମୟରେ ସମ୍ବଲପୁର ଅଞ୍ଚଳର ଓଡ଼ିଆମାନେ ନିଜର ପ୍ରତିକ୍ରିୟା ପ୍ରକାଶ କରିଥିଲେ । କାରଣ ଶାସନଗତ ସୁବିଧା ନିମନ୍ତେ ମଧ୍ୟପ୍ରଦେଶର ମୁଖ୍ୟ କମିଶନର ସମ୍ବଲପୁର କୋର୍ଟ କଚେରିରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷାର ପ୍ରଚଳନ କରିଥିଲେ । ସେତେବେଳେ ସମ୍ବଲପୁର ଅଞ୍ଚଳର ନେତୃମଣ୍ଡଳୀଙ୍କ ମଧ୍ୟରେ ମୁଖ୍ୟ ଥିଲେ ନୀଳମଣି ବିଦ୍ୟାରତ୍ନ ଓ ସ୍ୱଭାବ କବି ଗଙ୍ଗାଧର ମେହେର । ପୁନଶ୍ଚ କୋର୍ଟ କଚେରିରେ ଓଡ଼ିଆ ଭାଷାର ପ୍ରଚଳନ ନିମନ୍ତେ ସମ୍ବଲପୁରରେ ତୀବ୍ର ଆନ୍ଦୋଳନ ଦେଖାଦେଇଥିଲା ।

ଇଂରେଜ ସରକାରଙ୍କ ଏତାଦୃଶ କାର୍ଯ୍ୟକୁ ବିରୋଧ କରି ଉତ୍କଳ ସଭା ମାଧ୍ୟମରେ ମଧୁସୂଦନ ଦାସ, ଗୌରୀଶଙ୍କର ରାୟ ପ୍ରଭୃତି ନେତୃମଣ୍ଡଳୀ ଓଡ଼ିଶାର ସର୍ବତ୍ର ଆନ୍ଦୋଳନ ଆରମ୍ଭ କରିଦେଲେ ।

ସମ୍ବଲପୁରର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଲର୍ଡ଼ କର୍ଜ୍ଜନଙ୍କୁ ଭେଟି ନିଜର ଦାବିପତ୍ର ପ୍ରଦାନ କରିଥିଲେ ଏବଂ ୧୯୦୩ ମସିହା ଜାନୁଆରୀ ମାସରେ ସମ୍ବଲପୁର କୋର୍ଟରେ ଓଡ଼ିଆ ଭାଷା ପୁନଃ ପ୍ରଚଳନ ହୋଇଥିଲା ।

୧୯୦୨ ମସିହାରେ ମାନ୍ଦ୍ରାଜଠାରେ ଜାତୀୟ କଂଗ୍ରେସର ଅଧିବେଶନ ବସିଥିଲା । ଏହି ଅଧିବେଶନରେ ମଧୁବାବୁ ଓ ଗୌରୀଶଙ୍କର ରାୟ ଯୋଗ ଦେଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ନିମନ୍ତେ ଦାବି ଉପସ୍ଥାପନ କରିଥିଲେ । ମଧୁବାବୁ ଓ ଗୌରୀଶଙ୍କର ରାୟଙ୍କର ଏହି ଯୁକ୍ତିଯୁକ୍ତ ଦାବି କଂଗ୍ରେସ ଅଧିବେଶନରେ ନାକଚ ହୋଇଯାଇଥିଲା । ଫଳରେ ମଧୁବାବୁ କଂଗ୍ରେସ ନେତୃମଣ୍ଡଳୀଙ୍କର ଏତାଦୃଶ କାର୍ଯ୍ୟରେ ବୀତସ୍ପୃହ ହୋଇ ନିଜକୁ କଂଗ୍ରେସଠାରୁ ଦୂରେଇ ନେଇଥିଲେ ଏବଂ ନିଜ ପ୍ରଚେଷ୍ଟାରେ ଲର୍ଡ଼ କର୍ଜ୍ଜନଙ୍କୁ ଓଡ଼ିଶାକୁ ନିମନ୍ତ୍ରଣ କରି ଆଣିଥିଲେ । ଲର୍ଡ଼ କର୍ଜ୍ଜନ ଓଡ଼ିଶା ଗସ୍ତରେ ଆସି ଅନୁଭବ କରିଥିଲେ ଯେ, ଓଡ଼ିଆ ଏକ ସ୍ୱତନ୍ତ୍ର ସାଧୁ ଭାଷା ଅଟେ । ତେଣୁ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ ନିମନ୍ତେ ସ୍ୱୀକୃତି ପ୍ରଦାନ କରିଥିଲେ । କୁଳବୃଦ୍ଧଙ୍କ ପ୍ରଚେଷ୍ଟା ଯୋଗୁଁ ୧୯୦୫ ମସିହା ଜୁଲାଇ ମାସ ୧୯

ତାରିଖରେ ସମ୍ବଲପୁର ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ଓଡ଼ିଆ ଡିଭିଜନ୍ ସହିତ ମିଶିଥିଲା। ସମ୍ବଲପୁର ସହିତ କଳାହାଣ୍ଡି, ସୋନପୁର, ରେଢ଼ାଖୋଲ, ବାମଣ୍ଡା, ପାଟଣା, ମଧ୍ୟପ୍ରଦେଶରୁ ବଣେଇ ଓ ଗଙ୍ଗାପୁର ଛୋଟ-ନାଗପୁରରୁ ଅଲଗା କରି ଓଡ଼ିଶା ଡିଭିଜନ୍ ସହିତ ମିଶାଇ ଦିଆଯାଇଥିଲା।

ମଧୁବାବୁ କଂଗ୍ରେସଠାରୁ ନିଜକୁ ଦୂରେଇ ନେଇଥିବାରୁ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଆନ୍ଦୋଳନ ଆହୁରି ଦୃଢ଼ୀଭୂତ ହୋଇଥିଲା। ବିଭିନ୍ନ ସଭା ସମିତି ଓ ଦାବିପତ୍ର ମାଧ୍ୟମରେ ଭାଷାଭିତ୍ତିକ ରାଜ୍ୟ ନିମନ୍ତେ ଜୋରଦାର ଉଦ୍ୟମ ଜାରି ରଖିଥିଲେ। ଓଡ଼ିଶାର ବିଭିନ୍ନ ଭାଗର ଓଡ଼ିଆମାନଙ୍କୁ ଏକତ୍ରିତ କରିବା ପାଇଁ ଓ ଜନଜାଗରଣ ସୃଷ୍ଟି କରିବା ନିମନ୍ତେ ସେ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠା କରିଥିଲେ। ଏହି ସମ୍ମିଳନୀ ମାଧ୍ୟମରେ ସେ ବିଭିନ୍ନ ଦପ୍ତରରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ଦାବି ଉପସ୍ଥାପନ କରୁଥିଲେ। ଏହି କାର୍ଯ୍ୟରେ ମଧୁବାବୁଙ୍କୁ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବ୍ରଜସୁନ୍ଦର ଦାସ ପ୍ରଭୃତି ସାହାଯ୍ୟ କରି ଆସୁଥିଲେ। ତତ୍କାଳୀନ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ମଧୁବାବୁଙ୍କର ଅତ୍ୟନ୍ତ ଘନିଷ୍ଠ ଥିଲେ।

ଏହିଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ୧୯୨୭ ମସିହାରେ ବ୍ରିଟିଶ୍ ସରକାର ସାର୍-ଜନ୍ ଆଲସାବ୍ରକ ସାଇମନଙ୍କ ନେତୃତ୍ୱରେ ଏକ କମିଶନଙ୍କୁ ଭାରତର ଶାସନ-ସଂସ୍କାର ସମ୍ବନ୍ଧରେ ଭାରତୀୟମାନଙ୍କର ମତ ସଂଗ୍ରହ କରି ଜଣାଇବା ନିମନ୍ତେ ପ୍ରେରଣ କରିଥିଲେ। ଏହି କମିଶନରେ କୌଣସି ଭାରତୀୟ ସଭ୍ୟ ନଥିଲେ। ଫଳ ସ୍ୱରୂପ କଂଗ୍ରେସ ନେତୃମଣ୍ଡଳୀ ସ୍ଥିର କରିଥିଲେ, ଉକ୍ତ କମିଶନକୁ ଭାରତରେ ଅସହଯୋଗ କରାଯିବ। ଭାରତର ସବୁ ପ୍ରଦେଶରେ କମିଶନ ଅସହଯୋଗର ସମ୍ମୁଖୀନ ମଧ୍ୟ ହୋଇଥିଲେ।

ମଧୁବାବୁ ଜାଣିସାରିଥିଲେ ଯେ କଂଗ୍ରେସର ଗାନ୍ଧିଜୀଙ୍କ ବ୍ୟତୀତ ଅନ୍ୟ କୌଣସି ନେତା ଚାହୁଁ ନାହାଁନ୍ତି ଭାଷାଭିତ୍ତିରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଉ। ଯେଉଁ ସମୟରେ ସାଇମନ କମିଶନଙ୍କୁ ସାରା ଦେଶରେ ବିରୋଧ କରାଯାଉଥିଲା, ସେହି ସମୟରେ ମଧୁବାବୁ ସାଇମନ କମିଶନଙ୍କୁ ଓଡ଼ିଶାରେ ସ୍ୱାଗତ କରିବେ ବୋଲି ଚିନ୍ତାକଲେ। ସେ ଦୃଢ଼ ନିଶ୍ଚିନ୍ତ ହୋଇଯାଇଥିଲେ ଯେ ଯଦି କମିଶନଙ୍କୁ ଖୁସି କରାଯାଇପାରିବ, ହୁଏତ ତାଙ୍କର ଦାବି ବ୍ରିଟିଶ୍ ସରକାରଙ୍କ ନିକଟରେ ସୁଚାରୁରୂପେ ଉପସ୍ଥାପିତ ହୋଇପାରିବ। ତେଣୁ ସେ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ନିକଟକୁ ଏକ ଚିଠି ଲେଖିଥିଲେ। ପରୋକ୍ଷରେ କନିକାର ରାଜାଙ୍କୁ ଜଣାଇ ଦେଇଥିଲେ ଯେ କମିଶନଙ୍କୁ ଯଦି ସମ୍ବର୍ଦ୍ଧନା ଦିଆଯାଏ, ହୁଏତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ତାଙ୍କର ସହମତି ମିଳିଯାଇପାରେ। ଏହି ସମୟରେ ଓଡ଼ିଶାର କଂଗ୍ରେସ ନେତୃମଣ୍ଡଳୀ କମିଶନଙ୍କୁ ବିରୋଧ କରିବେ ବୋଲି ସ୍ଥିର କରିଥିଲେ। ଫଳ ସ୍ୱରୂପ ମଧୁବାବୁଙ୍କ ନିର୍ଦ୍ଦେଶରେ ତାଙ୍କର ସହକର୍ମୀ ବ୍ରଜସୁନ୍ଦର ଦାସ ବିହାରର ପାଟଣାଠାରେ କମିଶନଙ୍କୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ନ୍ୟାଯ୍ୟଦାବି ଲିଖିତ ଆକାରରେ ଜଣାଇଥିଲେ। ଏହି କାର୍ଯ୍ୟ ସଂପାଦନ ନିମନ୍ତେ କନିକାର ରାଜା ସାହେବ ମଧ୍ୟ ବହୁ ସହଯୋଗ କରିଥିଲେ। ସେହିଦିନର ସମ୍ବର୍ଦ୍ଧନା ହିଁ ପ୍ରାୟତଃ ଏକ ଭାଷା ଓ ସଂସ୍କୃତିଭିତ୍ତିକ ରାଜ୍ୟ ନିମନ୍ତେ ବାଟ ଫିଟାଇଥିଲା। ଭାଷାଭିତ୍ତିକ ରାଜ୍ୟ ଗଠନ ନିମନ୍ତେ ସାଇମନ କମିଶନ ସବୁଜ ସଙ୍କେତ ପ୍ରଦାନ କରିଥିଲା। ଓଡ଼ିଆମାନଙ୍କର ଦାବିର ଯଥାର୍ଥତା ନିମନ୍ତେ ଜାଣିବା ପାଇଁ କମିଶନ ଏକ ସବ୍ କମିଟି ଗଠନ କରିବାକୁ ପ୍ରତିଶ୍ରୁତି ଦେଇଥିଲା। ଓଡ଼ିଆମାନଙ୍କ ଦାବି ଯୁକ୍ତିସଂଗତ ଓ ଯଥାର୍ଥ ବୋଲି ସବ୍‌କମିଟିର ସମସ୍ତ ସଭ୍ୟ ରାଜି ହୋଇଥିଲେ ଏବଂ ଭାଷାଭିତ୍ତିକ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ସ୍ୱୀକୃତି ପ୍ରଦାନ କରିଥିଲେ।

ସାଇମନ୍‌କମିଶନର ସୁପାରିଶକ୍ରମେ ସି.ଆର୍.ଅଟଲିଙ୍କ ଅଧକ୍ଷତାରେ 'ଅଟଲି ସବ୍ କମିଟି' ନାମକ ଏକ ସୀମା ନିର୍ଦ୍ଧାରଣ କମିଟି ଗଠିତ ହୋଇଥିଲା। ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଏହି କମିଟି ନିଜର ମତ ପ୍ରଦାନ କରିଥିଲା। ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଯଥା- ଅନୁଗୁଳ, ମେଦିନିପୁର, ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଗଞ୍ଜାମ ଓ ମଧ୍ୟପ୍ରଦେଶ ଅଧୀନସ୍ଥ ଖଡ଼ିଆଳ ଆଦି ଅଞ୍ଚଳ ଓଡ଼ିଶା ସହିତ ମିଶିବା ପାଇଁ ଏହି କମିଟି ଇଂରେଜ ସରକାରଙ୍କୁ ପ୍ରସ୍ତାବ ଦେଇଥିଲା। କିନ୍ତୁ କମିଟିର ପ୍ରସ୍ତାବକୁ ମାନ୍ଦ୍ରାଜ ସରକାର ମାନି ନଥିଲେ।

୧୯୩୦ ମସିହାରେ ମହାରାଜ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ ଗଞ୍ଜାମ ନିର୍ବାଚନ ମଣ୍ଡଳୀରୁ ମାନ୍ଦ୍ରାଜ

ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ସେହି ବର୍ଷ ବିହାର ଓ ଓଡ଼ିଶା ସରକାର ଗୋଲ ଟେବୁଲ ବୈଠକକୁ ଓଡ଼ିଆମାନଙ୍କ ପ୍ରତିନିଧି ରୂପେ ମହାରାଜାଙ୍କ ନାମ ସୁପାରିଶ କରିଥିଲେ। ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନ ପରେ ପରେ ଇଂଲଣ୍ଡରେ ପ୍ରଥମ ଗୋଲ ଟେବୁଲ ବୈଠକ ଅନୁଷ୍ଠିତ ହୋଇଥିଲା। ଇଂଲଣ୍ଡରେ ଅନୁଷ୍ଠିତ ହେଉଥିବା ଏହି ଗୁରୁତ୍ୱପୂର୍ଣ୍ଣ ବୈଠକକୁ ଭାରତୀୟ ଜାତୀୟ କଂଗ୍ରେସ ବର୍ଜନ କରିଥିଲା। କିନ୍ତୁ କୃଷ୍ଣଚନ୍ଦ୍ର ନାରାୟଣ ଦେବ ଓଡ଼ିଆମାନଙ୍କ ନ୍ୟାଯ୍ୟ ଦାବିକୁ ବ୍ରିଟିଶ୍ ଦରବାରରେ ଉପସ୍ଥାପନ କରିବା ନିମନ୍ତେ ଏହି ବୈଠକରେ ଯୋଗ ଦେଇଥିଲେ ଏବଂ ବିଧିବଦ୍ଧଭାବେ ଗୋଲ ଟେବୁଲ ବୈଠକରେ ଉପସ୍ଥାପନ ମଧ୍ୟ କରିଥିଲେ। ଓଡ଼ିଆମାନଙ୍କର ଦାବି ଉପସ୍ଥାପନ କରିବା ନିମନ୍ତେ ତାଙ୍କୁ ବହୁତ କଷ୍ଟ କରିବା ପାଇଁ ପଡ଼ିଥିଲା। ଏପରିକି ସିନ୍ଧୁ ପ୍ରଦେଶ ସଂପର୍କରେ ଆଲୋଚନା କରିବା ବେଳେ ଓଡ଼ିଆ ଭାଷାଭାଷୀ ଲୋକ ଓ ଓଡ଼ିଆ ବିଷୟରେ କହିବା ପାଇଁ ତାଙ୍କୁ ଅନୁମତି ମିଳିଥିଲା। ସେ ଯଥାସାଧ୍ୟ ଭାବେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବା ପାଇଁ ଇଂରେଜ ସରକାରଙ୍କୁ ବୁଝାଇଥିଲେ। ଏକ ସମ୍ୟକ ଭାଷଣ ମାଧ୍ୟମରେ ସେ ଇଂରେଜ ସରକାରଙ୍କ ମନକୁ ଜୟ କରିପାରିଥିଲେ। ଗୋଲ ଟେବୁଲ ବୈଠକ ଚାଲିଥିବା ବେଳେ କୃଷ୍ଣଚନ୍ଦ୍ର ଇଂଲଣ୍ଡର ଭାରତ ସଚିବଙ୍କୁ ଭେଟି ଓଡ଼ିଶାର ଜନସାଧାରଣ କିପରି ଅନ୍ୟ ପ୍ରଦେଶର ଲୋକମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହେଉଛନ୍ତି, ସେହି କଥା ପ୍ରାଞ୍ଜଳ ଭାବେ ବୁଝାଇ ଦେଇଥିଲେ। ଗୋଲ ଟେବୁଲର ଅନ୍ୟ ସଭ୍ୟମାନଙ୍କୁ ମଧ୍ୟ ବ୍ୟକ୍ତିଗତ ଭାବେ ଭେଟି ଓଡ଼ିଆମାନଙ୍କର ଦାବି ସଂପର୍କରେ ଜଣାଇଥିଲେ। କୃଷ୍ଣଚନ୍ଦ୍ର ଦେବଙ୍କର ଏହି ପରିଶ୍ରମ ବୃଥା ଯାଇନଥିଲା। ଇଂରେଜ ସରକାର ଓଡ଼ିଆମାନଙ୍କ ଦାବି ଯଥାର୍ଥ ବୋଲି ଅନୁଭବ କରିଥିଲେ। ଫଳରେ ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ବ୍ରିଟିଶ୍ ସରକାର ସାମୁଏଲ୍ ଓଡୋନେଲ୍‌ଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରିଥିଲେ।

୧୯୩୧ ମସିହା ସେପ୍ଟେମ୍ବର ମାସରେ ଓ'ଡନେଲ୍ ସୀମା ନିର୍ଦ୍ଧାରଣ କମିଟି ଗଠିତ ହୋଇଥିଲା। ବିହାର, ମାନ୍ଦ୍ରାଜ, ବଙ୍ଗଳା ଓ ଓଡ଼ିଶାର ନେତୃମଣ୍ଡଳୀ ଏହି କମିଟିର ସଭ୍ୟ ଥିଲେ। ଓଡ଼ିଆମାନଙ୍କ ତରଫରୁ ମହାରାଜା କୃଷ୍ଣଚନ୍ଦ୍ର ସଭ୍ୟ ରହିଥିଲେ। ଏହି କମିଟି ତତ୍‌କାଳୀନ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗସ୍ତ କରି ବିଭିନ୍ନ ଲୋକମାନଙ୍କର ମତାମତ ସଂଗ୍ରହ କରିଥିଲେ। ଏହି ସମୟରେ ତେଲୁଗୁମାନେ ମାନ୍ଦ୍ରାଜରୁ ଓଡ଼ିଶାକୁ କୌଣସି ଅଞ୍ଚଳ ହସ୍ତାନ୍ତର ହୋଇପାରିବ ନାହିଁ ବୋଲି ଦୃଢ଼ ଯୁକ୍ତି ବାଢ଼ିଥିଲେ। କିନ୍ତୁ ପାରଳା ମହାରାଜାଙ୍କ ଦୃଢ଼ ନେତୃତ୍ୱ ଯୋଗୁଁ ପାରଳାଖେମୁଣ୍ଡି ଅଞ୍ଚଳର ଓଡ଼ିଆମାନେ ଓଡ଼ିଶାରେ ପାରଳାଖେମୁଣ୍ଡିକୁ ମିଶାଇ ଦେବା ପାଇଁ ଓ'ଡନେଲ୍ କମିଟି ଆଗରେ ଦାବି କରିଥିଲେ। ଏପରିକି ନିଜେ ମହାରାଜା ତାଙ୍କ ଜମିଦାରୀକୁ ମଧ୍ୟ ଓଡ଼ିଶାରେ ମିଶେଇଦେବା ପାଇଁ କମିଟି ଆଗରେ ନିଜର ମତ ରଖିଥିଲେ।

ଓ'ଡନେଲ୍ କମିଟି ୧୯୩୨ ମସିହା ଅପ୍ରେଲ୍ ୧୯ ତାରିଖରେ ନିଜର ରିପୋର୍ଟ ଦାଖଲ କରିଥିଲେ। ଏହି ରିପୋର୍ଟରେ ଓଡ଼ିଶାର ସୀମା ସର୍ବମୋଟ ୩୩,୦୦୦ ବର୍ଗମାଇଲ ହେବ ବୋଲି ଦର୍ଶାଯାଇଥିଲା। ୧୯୩୩ ମସିହାରେ ଇଂରେଜ ସରକାର ଏକ ଶ୍ୱେତପତ୍ର ପ୍ରକାଶ କରିଥିଲେ। ଏହି ଶ୍ୱେତପତ୍ରରେ ଓଡ଼ିଶାର ସୀମାକୁ ୨୧,୫୪୫ ବର୍ଗ ମାଇଲରେ ସୀମିତ କରାଯାଇଥିଲା ଏବଂ ଶ୍ୱେତପତ୍ରରେ ଓଡ଼ିଶାରୁ ଜୟପୁର ଓ ପାରଳାଖେମୁଣ୍ଡିକୁ ବାଦ୍ ଦିଆଯାଇଥିଲା।

ଉକ୍ତ ଶ୍ୱେତପତ୍ରରେ ଦର୍ଶାଯାଇଥିବା ବିଷୟବସ୍ତୁ କୃଷ୍ଣଚନ୍ଦ୍ରଦେବଙ୍କୁ ବହୁତ ବାଧିଥିଲା। ନିଜର ସମସ୍ତ ଶ୍ରମ ବ୍ୟର୍ଥ ଯିବ ବୋଲି, ସେ ଅନୁଭବ କରିଥିଲେ। ତଥାପି ଦୃଢ଼ମନା ରାଜା ନିଜର ଚେଷ୍ଟା ଜାରି ରଖିଥିଲେ। ୧୯୩୩ ମସିହା ଜୁଲାଇ ୩ ତାରିଖରେ କେତେଜଣ ଓଡ଼ିଆ ନେତାମାନଙ୍କୁ ଧରି ଲଣ୍ଡନରେ ଭାରତ ସଚିବଙ୍କୁ ଭେଟିଥିଲେ ଏବଂ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରେ ମିଶେଇବା ପାଇଁ ଦାବି କରିଥିଲେ। କୃଷ୍ଣଚନ୍ଦ୍ରଙ୍କର ଦାବିକୁ ଇଂରେଜ ସରକାର ସଂପୂର୍ଣ୍ଣ ରୂପେ ଗ୍ରହଣ କରିନଥିଲେ। ଜୟପୁରକୁ ଓଡ଼ିଶା ସୀମା ମଧ୍ୟରେ ଅନ୍ତର୍ଭୁକ୍ତ କରିବା ପାଇଁ ଇଂରେଜ ସରକାର ନିଜର ସହମତି ପ୍ରଦାନ କରିଥିଲେ, କିନ୍ତୁ ପାରଳାଖେମୁଣ୍ଡିକୁ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବାକୁ ରାଜି ହୋଇନଥିଲେ। ଇଂରେଜ ସରକାରଙ୍କୁ ତେଲୁଗୁ ପ୍ରତିନିଧିମାନେ ବୁଝାଇ ଦେଇଥିଲେ ଯେ, ପାରଳାଖେମୁଣ୍ଡିର ଅଧିକାଂଶ ଲୋକ ତେଲୁଗୁ ସଂପ୍ରଦାୟର ଅଟନ୍ତି। ତେଣୁ ପାରଳାଖେମୁଣ୍ଡିକୁ ଓଡ଼ିଶା ସୀମା ମଧ୍ୟରେ ଅନ୍ତର୍ଭୁକ୍ତ କରାଯିବା ଉଚିତ୍ ହେବନାହିଁ। କୃଷ୍ଣଚନ୍ଦ୍ରଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ଇଂରେଜ

ସରକାର ତାଙ୍କ ଦାବିକୁ ଗ୍ରହଣ କରିନଥିଲେ । ମହାରାଜା ନିଜକୁ ହତାଶ ମନେ ନକରି ନିଜର ଜମିଦାରୀକୁ ଦୁଇଭାଗ କରି କିଛି ଅଂଶ ମାନ୍ଦ୍ରାଜ ଓ କିଛି ଅଂଶ ଓଡ଼ିଶା ମଧ୍ୟରେ ବାଣ୍ଟିଦେବା ନିମନ୍ତେ ଇଂରେଜ ସରକାରଙ୍କ ନିକଟରେ ପ୍ରସ୍ତାବ ରଖିଥିଲେ । ଇଂରେଜ ସରକାର ମଧ୍ୟ ଏହି ପ୍ରସ୍ତାବରେ ରାଜି ନଥିଲେ ।

ଏହି ସମୟରେ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ଅଧ୍ୟକ୍ଷତାରେ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ଗଠିତ ହୋଇଥିଲା । ଅଧ୍ୟକ୍ଷ ଲର୍ଡ଼ ଲିନ୍‌ଲିଥ୍‌ଗୋ ଓ ମହାରାଜା କୃଷ୍ଣଚନ୍ଦ୍ରଙ୍କର ମଧ୍ୟରେ ସୁସମ୍ପର୍କ ଥିଲା । ତେଣୁ କୃଷ୍ଣଚନ୍ଦ୍ରଙ୍କର ବିଭାଜନ ପ୍ରସ୍ତାବକୁ ସେ ମୋହର ମାରିଥିଲେ । ଅର୍ଥାତ୍ ପାରଳାଖେମୁଣ୍ଡି ଜମିଦାରୀରୁ କିଛି ଅଂଶ ଓଡ଼ିଶା ପ୍ରଦେଶରେ ମିଶାଇ ଦେବାପାଇଁ ରାଜି ହୋଇଥିଲେ ।

ସର୍ବଶେଷରେ ଓଡ଼ିଶାବାସୀଙ୍କର ବିଭିନ୍ନ ସମୟରେ ଦାବି ହୋଇ ଆସୁଥିବା ଭାଷା ଓ ସଂସ୍କୃତି ଭିତ୍ତିକ ଦାବିକୁ ଇଂରେଜ ସରକାର ଗ୍ରହଣ କରିଥିଲେ । ଅନୁଗୁଳ, ପଦ୍ମପୁର, ଖଡ଼ିଆଳ, ଗଞ୍ଜାମ, ବ୍ରହ୍ମପୁର, ଜୟପୁର, ପାରଳାଖେମୁଣ୍ଡି ପ୍ରଭୃତି ଓଡ଼ିଶା ସହ ମିଶି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବ ବୋଲି ସ୍ଥିର କରିଥିଲେ ।

୧୯୩୫ ମସିହାରେ ଭାରତ ଶାସନ ଆଇନ ଅନୁସାରେ ଓଡ଼ିଶାକୁ ଏକ ନୂତନ ସ୍ୱତନ୍ତ୍ର ପ୍ରଦେଶ ରୂପେ ସରକାର ସ୍ୱୀକୃତି ପ୍ରଦାନ କରିଥିଲେ ଓ ୧୯୩୬ ମସିହା ମାର୍ଚ୍ଚ ୩ ତାରିଖରେ ଏହା ଇଂରେଜ ସରକାରଙ୍କ ଅନୁମୋଦନ ଲାଭ କରିଥିଲା ।

ଓଡ଼ିଶାର ତତ୍‌କାଳୀନ ନେତୃମଣ୍ଡଳୀ ଓ ଜନସାଧାରଣଙ୍କର ବହୁ ଦିନର ଅଭିଳାଷ ପରିଶେଷରେ ୧୯୩୬ ମସିହା ଅପ୍ରେଲ ମାସ ୧ ତାରିଖ ଦିନ ପୂର୍ଣ୍ଣ ହୋଇଥିଲା । ଭାରତ ଶାସନ ଆଇନ୍‌ର ୨୮୯ ଧାରା ଅନୁସାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ପାଇଲା । ଇଂରେଜ ସରକାରଙ୍କ ଅନୁମୋଦନକ୍ରମେ ଆମର ଏହି ଅଧୁନାତନ ଓଡ଼ିଶା ୧୯୩୬ ମସିହା ଅପ୍ରେଲ ୧ ତାରିଖ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ମାନ୍ୟତା ଲାଭ କରିଥିଲା । ସେତେବେଳେ ୬ଟି ଜିଲ୍ଲା ଯଥା- କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଏବଂ କୋରାପୁଟକୁ ନେଇ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା ଏବଂ ଏହି ନୂତନ ଓଡ଼ିଶାର ପ୍ରଥମ ରାଜ୍ୟପାଳ ରୂପେ ସାର୍ ଜନ୍ ଅଷ୍ଟିନ୍ ହବାକ୍ ଶପଥ ନେଇଥିଲେ । ସେହିଦିନଠାରୁ ପ୍ରତ୍ୟେକ ବର୍ଷ ଅପ୍ରେଲ ମାସ ୧ ତାରିଖକୁ 'ଉତ୍କଳ ଦିବସ' ରୂପେ ସାରା ଓଡ଼ିଶାରେ ପାଳିତ ହୋଇ ଆସୁଅଛି । ଏହି ଦିବସକୁ ଓଡ଼ିଶାବାସୀ ଆନନ୍ଦର ସହିତ ଉତ୍ସବ ରୂପେ ପାଳନ କରି ଆସୁଛନ୍ତି । ରାଜ୍ୟ ସରକାର ଅପ୍ରେଲ ୧ ତାରିଖକୁ ଏକ ସରକାରୀ ଛୁଟି ଦିବସ ରୂପେ ଘୋଷଣା ମଧ୍ୟ କରିଛନ୍ତି । ରାଜ୍ୟ ଶାସନର ସୁପରିଚାଳନା ନିମନ୍ତେ ରାଜ୍ୟର ଜିଲ୍ଲା ସଂଖ୍ୟାରେ ବୃଦ୍ଧି ଘଟି ବର୍ତ୍ତମାନ ଏହା ୩୦ଟି ଜିଲ୍ଲାରେ ପରିଣତ ହୋଇଅଛି । ଯେଉଁ ମହାନ ରଥୀ ସ୍ୱତନ୍ତ୍ର ଓଡ଼ିଶାର ସ୍ୱପ୍ନ ଦେଖୁଥିଲେ, ସେହି କୁଳବୃଦ୍ଧ ମଧୁସୂଦନ ଦାସ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଅବ୍ୟବହିତ ପୂର୍ବରୁ ଇହଲୀଳା ସମ୍ବରଣ କରିସାରିଥିଲେ । ସେଇ ମହାନ୍ ଉତ୍କଳୀୟ ଜନନାୟକଙ୍କର ୧୯୩୪ ମସିହାରେ ମହାପ୍ରୟାଣ ଘଟିଥିଲା । କଟକ ଜିଲ୍ଲା ସତ୍ୟଭାମାପୁରର କୋମଳମତି ସେଇ ବାଳକ ''ଗୋବିନ୍ଦ ବଲ୍ଲଭ'' ପରବର୍ତ୍ତୀ ସମୟରେ ''ମଧୁସୂଦନ'' ନାମରେ ନାମିତ ହୋଇଥିଲେ ମଧ୍ୟ ତାଙ୍କୁ ''ଉତ୍କଳଗୌରବ'' ଉପାଧିରେ ଭୂଷିତ କରାଯାଇଥିଲା । ସେ ଓଡ଼ିଶାର ପ୍ରଥମ ଲ' ଗ୍ରାଜୁଏଟ୍ ପ୍ରଥମ ବାରିଷ୍ଟର ଏବଂ ଜଣେ ସଫଳ କୃତୀ ଶିକ୍ଷକ ଓ ଶିଳ୍ପପତି ହେବାର ଗୌରବ ଲାଭ କରିଥିଲେ ।

ସୂର୍ଯ୍ୟନିବାସ, ସୁଭଦ୍ରାପୁର
ପୋ- ଉତ୍ତମାପୁର, କଟକ-୧୧



# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

ନିର୍ମଳା କୁମାରୀ ମହାପାତ୍ର

୧୯୩୬, ଅପ୍ରେଲ ୧ ତାରିଖ । କଟକର ରେଭେନ୍ସା କଲେଜ ହଲ୍ । ଭିତରେ ଚାଲିଛି ସଭା । ବାହାରେ ମିଷ୍ଟାନ୍ନ ବଣ୍ଟନ ହେଉଛି । ବାରବାଟୀ ଦୁର୍ଗ ନିକଟରେ ହଜାର ହଜାର ଲୋକଙ୍କୁ ଉଦ୍ୟାନ ଭୋଜିରେ ଆପ୍ୟାୟିତ କରାଯାଉଥିଲା ସେଦିନ । ସମସ୍ତେ ଆନନ୍ଦିତ । କାହିଁକି ? ତାହା ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଶୁଭ ଅବସର । ସେଦିନ ରେଭେନ୍ସା କଲେଜ ହଲ୍‌ରେ ପାଟଣା ହାଇକୋର୍ଟର ତତ୍କାଳୀନ ପ୍ରଧାନ ବିଚାରପତି ସାର୍ କର୍ଟନି ଟେରେଲ୍ ଶପଥପାଠ କରାଇଥିଲେ ସାର୍ ଜନ୍ ଅଷ୍ଟିନ୍ ହବାକ୍ ସାହେବଙ୍କୁ ମାନ୍ୟବର ରାଜ୍ୟପାଳଭାବେ । ଏହି ଉତ୍ସବରେ ମାନ୍ୟବର ରାଜ୍ୟପାଳ ମହୋଦୟ ବ୍ରିଟିଶ ସାମ୍ରାଜ୍ୟର ମହାମାନ୍ୟ ସମ୍ରାଟ ଷଷ୍ଠଜର୍ଜ ଓ ଭାରତର ବଡଲାଟ୍ ଲର୍ଡ ଲିନ୍‌ଲିଥଗୋଙ୍କର ସୌଜନ୍ୟରୁ ପ୍ରାପ୍ତ ଶୁଭେଚ୍ଛା ବାର୍ତ୍ତା ଓଡ଼ିଶାର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ପାଠ କରିଥିଲେ । ସେ ମଧ୍ୟ ଏଥିସହିତ ତାଙ୍କ ଭାଷଣରେ ସ୍ପଷ୍ଟ କରିଥିଲେ ଯେ ଓଡ଼ିଶାର ଲୋକମାନଙ୍କର ବହୁ ଦିନର ସ୍ୱପ୍ନ ଏବେ ବାସ୍ତବ ରୂପ ପାଇଛି । ପ୍ରକାଶ ଥାଉ କି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବେଳେ ଏହାର ଜିଲ୍ଲା ସଂଖ୍ୟା ଥିଲା ଛଅ, ଯଥା– ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ, କୋରାପୁଟ ଆଉ ସମ୍ବଲପୁର । ଦେଶ ସ୍ୱାଧୀନ ହେବା ପରେ ଗଡଜାତ ମିଶ୍ରଣକ୍ରମେ ୧୯୪୮–୪୯ରେ ରାଜ୍ୟର ସୀମା ବଢ଼ିଲା । ମାନ୍ଦ୍ରାସ ପ୍ରେସିଡେନ୍ସିରୁ ବାଲିଗୁଡା ସବ୍–ଡିଭିଜନ ଆସି ମିଶିଲା । ଅତଏବ ଜିଲ୍ଲା ସଂଖ୍ୟା ହେଲା ତେର । ପ୍ରଶାସନିକ ସୁବିଧା ପାଇଁ ୧୯୯୪ ମସିହାରେ ସେହି ରାଜ୍ୟକୁ ତିରିଶଗୋଟି ଜିଲ୍ଲାରେ ପୁନଃଗଠିତ କରାଯାଇଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ମୂଳରେ ରହିଛି ସୁଦୀର୍ଘ ସଂଗ୍ରାମର ଇତିହାସ । ଇଂରେଜ ସରକାର ଶାସନଗତ ସୁବିଧା ପାଇଁ ଭାରତକୁ ତିନି ଖଣ୍ଡରେ ବିଭକ୍ତ କରିଥିଲେ । ଯଥା– ଉତ୍ତରଖଣ୍ଡ, ମଧ୍ୟଖଣ୍ଡ ଓ ଦକ୍ଷିଣଖଣ୍ଡ । ଏଇ ବ୍ୟବସ୍ଥା କ୍ରମେ ଓଡ଼ିଆ ଭାଷାଭାଷୀ ଲୋକେ ବଙ୍ଗ, ବିହାର, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ରହିଯିବା ହେତୁ ଓଡ଼ିଶାର ଅସ୍ତିତ୍ୱ ରହିଲା ନାହିଁ । ବିକାଶ ହୋଇପାରିଲା ନାହିଁ । ଏ ସବୁକୁ ଲକ୍ଷ୍ୟ କରି ବ୍ୟାସକବି ଫକିରମୋହନ 'ଉତ୍କଳ ଭ୍ରମଣଂ' କାବ୍ୟରେ ଲେଖିଥିଲେ –

'ଭାରତର ସର୍ବଦେଶେ ଏମନ୍ତ ପ୍ରଚାର
ପବିତ୍ର ଉତ୍କଳ ଭୂମି ଅଟେ ସ୍ୱର୍ଗଦ୍ୱାର
ପ୍ରକୃତି ଯେମନ୍ତ ଶୋଭା ଏଠାରେ ମେଲିଛି,
ଏମନ୍ତ ସୌନ୍ଦର୍ଯ୍ୟରାଶି ଭାରତେ କାହିଁଛି ?

x x x

ଅଇଲେ ଶିବାଜୀ ଥରେ ଦେଖିବେ ଉତ୍କଳ,
ଅଛି କି ନା ଏହା ପୂର୍ବପରି ଅବିକଳ ।
ମାତ୍ର ଆହା ଏହି ଦେଶ ହୋଇ ଖଣ୍ଡଖଣ୍ଡ,
ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ ।
ଦକ୍ଷିଣଟା କମାମାନେ ବସିଛନ୍ତି ମାଡି
ଉତ୍ତରଟା ଗଲାଣି ତ ବଙ୍ଗାଳୀଙ୍କ ବାଡି ।
ପଶ୍ଚିମ ଦିଗର କଥା ବୋଇଲେ ନ ସରେ
ପଡିଲାଣି ମରହଟ୍ଟା ପଶ୍ଚିମା ଭାଗରେ ।'

ଫକୀରମୋହନ ଗ୍ରନ୍ଥାବଳୀ/ପ୍ରଥମଭାଗ ପୃ–୨୦୧

ଓଡ଼ିଶାକୁ ତିନିଥେଣ୍ଟିଆ କାକୁଡିବାଡି କରୁଥିଲେ ବାହାରର ଲୋକେ । ଓଡ଼ିଆ ଚାଷୀ ମାଟି ଚଷି ଧାନ କାଟୁଥିଲେ । କିନ୍ତୁ ଉପଭୋକ୍ତା ଥିଲେ ବାହାରର ମଣିଷ । କୌଣସି ସୁବିଧା ସୁଯୋଗ ଓଡ଼ିଆମାନଙ୍କ ପାଇଁ ରହୁନଥିଲା । ତା' ପଛରେ ଥିଲା ଓଡ଼ିଶା ଭୂଖଣ୍ଡର ବିକ୍ଷିପ୍ତୀକରଣ । ପ୍ରଶାସନକଳଠାରୁ ଦୂରରେ ରହିବା । ବାହାରର ଲୋକେ ଯାହା ଯାହା କରୁଥିଲେ ସେ ସମ୍ପର୍କରେ ବ୍ୟାସକବି ଲେଖନ୍ତି –

'ଓଡ଼ିଆ ମାନଙ୍କୁ କିନ୍ତୁ କଲେ ସର୍ବନାଶ ।'

x x x

'ମାରୁଆଡି କାପୋଡିଆ ଭୋଜପୁରୀ ମୁଦି
ବାଣିଜ୍ୟ ବେପାର ଦ୍ୱାରା ରଖିଛନ୍ତି ମୁଦି ।
ଓଡ଼ିଆ କାଟିବେ ଧାନ ଚଷି ଚଷି ମାଟି
ମାତ୍ରକ ଖାଇବେ ରସ ତହୁଁ ଗୁଜୁରାଟି ।
ହାକିମ ଓକିଲ ସବୁ ଅଟନ୍ତି ବିଦେଶୀ
ଡାକଘର କିରାଣୀଟି ନୁହେଁ ମଧ ଦେଶୀ ।...'

ଫକୀରମୋହନ ଗ୍ରନ୍ଥାବଳୀ/ପ୍ରଥମଭାଗ–ପୃ–୨୦୧

ଏପରି ସ୍ଥିତିକୁ ତ ନିଃସ୍ୱାବସ୍ଥା କୁହାଯାଇପାରେ । ଏହାର ପ୍ରତିକାର ପାଇଁ ଓଡ଼ିଶାକୁ ଦୁର୍ଦ୍ଦଶାରୁ ଉଦ୍ଧାର କରିବା ପାଇଁ ଯେଉଁ ବରପୁତ୍ରମାନେ ଘୋର ସଂଗ୍ରାମ ଜାରି ରଖିଥିଲେ, ପ୍ରତ୍ୟକ୍ଷରେ ଓ ପରୋକ୍ଷରେ ମଧ ସେମାନଙ୍କ ପ୍ରତି ଆମ୍ଭର ଭକ୍ତିପୂତ ପ୍ରଣାମ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ମାହୋଲ ଦେଖିବାକୁ କିନ୍ତୁ ସେମାନଙ୍କ ମଧରୁ ଅନେକେ ଇହଧାମରେ ନଥିଲେ । ସେମାନଙ୍କର ଦୀର୍ଘ ତାଲିକାରୁ (ମୃତ୍ୟୁକାଳ କ୍ରମରେ) କିଞ୍ଚିତ ଅବତାରଣା କରାଯାଇପାରେ । ଯଥା – ଟି.ଇ. ରେଭେନ୍ସା, ରାୟ ବାହାଦୁର ନନ୍ଦକିଶୋର ଦାସ, ଜନ୍ ବିମ୍ସ, କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, କର୍ମବୀର ଗୌରୀଶଙ୍କର ରାୟ, ବ୍ୟାସକବି ଫକିରମୋହନ ସେନାପତି, କବି ଗଙ୍ଗାଧର ମେହେର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ପଲ୍ଲୀକବି ତଥା ଶିକ୍ଷାବିତ୍ ନନ୍ଦକିଶୋର ବଳ, ବାଗ୍ମୀ ବିଶ୍ୱନାଥ କର, ସର୍ବୋପରି କୁଳବୃଦ୍ଧ ଉତ୍କଳଗୌରବ ମଧୁସୂଦନ ଦାସ । ଦୈନିକ ଖବରକାଗଜ 'ଆଶା'ର ସୌଜନ୍ୟରୁ ଚିକିଟିର ରାଜା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଉଛି ଶୁଣି ରୋଗଶଯ୍ୟାରେ ବି ଆନନ୍ଦରେ ଗଦ୍‌ଗଦ୍ ହୋଇ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ 'ଜୟ ଜୟ' କହିଥିଲେ । ଏହାଛଡା ମଧୁବାବୁଙ୍କର ଦେହାନ୍ତ ହୋଇଥିଲା ୪ ଫେବୃଆରୀ ୧୯୩୪ରେ । ତା' ପୂର୍ବରୁ ସାର୍ ଜନ୍ ଅଷ୍ଟିନ୍ ହବାକଙ୍କ ସୌଜନ୍ୟରୁ ପ୍ରାପ୍ତପତ୍ର (ତା ୧୭.୧୦.୧୯୩୩)ରୁ ସେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ (ଓଡ଼ିଶା ପ୍ରଦେଶ) ଗଠିତ ହେବାର ପ୍ରାକ୍ ସୂଚନା ପାଇଥିଲେ । ସେଇ ଚିଠିର ସାରମର୍ମ ଥିଲା – 'ଯେଉଁ ଲକ୍ଷ୍ୟ ପାଇଁ ଆପଣ (ମଧୁବାବୁ) ସାରା ଜୀବନ କାର୍ଯ୍ୟକରି ଆସିଥିଲେ ଆଜି ତାହା ପୂର୍ଣ୍ଣତା ପଥରେ ।' ନିମ୍ନରେ ପ୍ରୋକ୍ତ ଚିଠିଟିର ନକଲ ଅବତାରଣା କରାଯାଉଅଛି ।

Cuttack

Dear Mr. Das, 17.10.33

I return with thanks the copy of the Early Annals of the English in Bengal. I am Putting in a suitable passage into the report.

I hope that your association with the committee has been as agreeable to you as it has been with me. I greatly appreciate the help which you have given. You must be very much grateful to think that the object which you had at heart for so many years in now in sight of fulfilment.

Yours sincerely,

J.A. Hubback.

କୁଳବୃଦ୍ଧ/ସୁରେନ୍ଦ୍ର ମହାନ୍ତି/ପୃ. ୩୫୩

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପଥରେ ରହିଛି ବହୁ ପତ୍ରପତ୍ରିକା, (ଯଥା– ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ, ପ୍ରଜାବନ୍ଧୁ, ଗଡଜାତ ବାସିନୀ, ଉତ୍କଳ ସାହିତ୍ୟ ଓ ଅନୁଷ୍ଠାନ ଯଥା– ଉତ୍କଳ ସମ୍ମିଳନୀ) ।

ଉତ୍କଳ ସମ୍ମିଳନୀ ୧୯୦୩, କଟକ ଅଧିବେଶନରେ ସଭାପତିତ୍ୱ କରିଥିଲେ ଶ୍ରୀରାମଚନ୍ଦ୍ର ଭଞ୍ଜ, ମୟୂରଭଞ୍ଜର ମହାରାଜା । ଏହାର ପ୍ରାରମ୍ଭିକ ସଂଗୀତ ଲେଖିଥିଲେ କବିବର ରାଧାନାଥ ରାୟ । ଯୁଗଜୟୀ ସଂଗୀତ ଲେଖିଥିଲେ କବିବର ରାଧାନାଥ ରାୟ । ଯୁଗଜୟୀ ସଙ୍ଗୀତ– 'ସର୍ବେଷାଂ ନୋ ଜନନୀ

ଭାରତ...'ର ପ୍ରଥମ ଛଅପଦ । ସେହି କବି ୨୦୦୮ରେ ପୁରୀ ଅଧିବେଶନ ପାଇଁ ସେଥିରେ ଆଉ ତିନିପଦ ସଂଯୁକ୍ତ କରିଥିଲେ । ଆଃ... କି ସୁନ୍ଦର ସେ ସଙ୍ଗୀତ ! ସେହି ସାଂଗୀତିକତାରେ ରହିଛି ଭୈରବୀ ରାଗ– କାବାଲୀ ତାଳର ତାନ । ରଚନାରେ ଭରି ରହିଛି ରାଧାନାଥୀୟ କାବ୍ୟକଳା–କୁଶଳ–ପରିପକ୍ୱ ଅଭିଜ୍ଞତାର ରୂପାୟନ । ଛନ୍ଦ ମାଧୁରୀରେ ଦେଶର ଐତିହ୍ୟ, ସଂସ୍କୃତିକୁ ବାରମ୍ବାର ଘୋଷିବାର ଉଲ୍ଲେଖ । ବାଦ୍ୟକାରର ଝଙ୍କାର, କଣ୍ଠଶିଳ୍ପୀର ତନ୍ମୟତାରେ ଶ୍ରୋତା ହୁଅନ୍ତି ମନ୍ତ୍ରମୁଗ୍ଧ । ବିଜନିତ ହର୍ଷଂ, ଭାରତବର୍ଷଂ.. ବିଶ୍ୱେ ଉତ୍କର୍ଷ ନିଦାନମ୍ । ଭାରତମେକା ଗତିରସ୍ମାକଂ... କି ସୁନ୍ଦର ପଙ୍କ୍ତି । ଶବ୍ଦ ସଂଯୋଜନା । ସେଥିରେ ସଭାରେ ବସିଥିଲେ ଗୋଲାପୀ ପଗଡିଭିଡି ଉତ୍ସୁକ ଜନତା । ସମସ୍ତଙ୍କ ମନରେ ସ୍ୱପ୍ନ– 'ସ୍ୱତନ୍ତ୍ରଭାବେ ଗଠିତ ରାଜ୍ୟ ପ୍ରାପ୍ତି' । କାହିଁ ୧୯୦୩ ମସିହା, ପୁଣି କାହିଁ ଘଟିଲା ୧୯୩୬ ମସିହା ଏପ୍ରିଲ ୧ ତାରିଖରେ । ମଝିରେ ରହିଲା ୩୩ବର୍ଷର ସଂଘର୍ଷ ! ସେହି ଉତ୍ସାହକୁ ସଦାଜାଗ୍ରତ କରି ରଖିବା ପାଇଁ କବି ଲେଖକ ହେଲେ ବଦ୍ଧପରିକର । ସେଦିନ ୧୯୦୩, ଡିସେମ୍ବର ୩୦–୩୧, ଇଦ୍‌ଗା ପଡିଆର ଅଧିବେଶନରେ କବି କୃଷ୍ଣମୋହନ ପଟ୍ଟନାୟକଙ୍କର ସଂଗୀତ ଜାଗରଣ ଆବୃତ୍ତି କରାଯାଇଥିଲା । ତାହାର କିୟତ୍ ଅଂଶ ନିମ୍ନରେ ପ୍ରଦତ୍ତ, ଯଥା–

'ଆଜି ସାଗରେ ଭୂଧରେ ପ୍ରାନ୍ତରେ ଅମ୍ବରେ
ଶୁଭୁ ଉତ୍କଳର ଜୟଗୀତି ।
ଯାଇଛି ଅତୀତ ହଜିନାହିଁ ବୀଣା
ଦବି ନାହିଁ ତାନ ହେଲେ ହେଁ ପ୍ରାଚୀନ
ନବ ଜାଗରଣେ ନବ ଗୁଂଜରଣେ
ଉଠୁ ସେ ତନ୍ତ୍ରରୁ ନବସ୍ଫୀତି ।

x x x

ଡାକି ହିମାଚଳ କହେ ସୀମାଚଳେ
କି ସଂଗୀତ ସ୍ଫୁରେ ଚିଲିକା କଲ୍ଲୋଳେ
ମୋ ହିମ ଗଳଇ ତୋ ସୀମା ଟଳଇ
ଦେଖି ଉତ୍କଳର ପୁଣ୍ୟ ପ୍ରୀତି ।

x x x

ଅଛି ହୀରାଖଣ୍ଡ ଅଛି ସ୍ୱର୍ଣ୍ଣରେଖା
ମନ୍ଦିରେ ମନ୍ଦିରେ ଇତିହାସ ଲେଖା
କୈବଲ୍ୟ ବିଧାନେ, ଏବେ ବି ଶ୍ରୀଧାମେ
ଅଛି ପ୍ରଚାରିତ ସାମ୍ୟନୀତି ।

କୁଳବୃଦ୍ଧ/ସୁରେନ୍ଦ୍ର ମହାନ୍ତି/ ପୃ. ୩୮୬

**କିପରି ସମ୍ଭବ ହେଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ**

ଓଡ଼ିଶାର ବରପୁତ୍ରଗଣଙ୍କର ପୁନଃ ପୁନଃ ସ୍ମାରକପତ୍ର, ଉଚ୍ଚ ପ୍ରଶାସକଗଣଙ୍କୁ ବାସ୍ତବ ଚିତ୍ର ବୁଝାଇବା ସତ୍ତ୍ୱେ ବଙ୍ଗ–ବିହାର–ଓଡ଼ିଶା ଚିତ୍ରପଟରୁ ପୁନରାୟ ବିହାର–ଓଡ଼ିଶା ଗଠନ ହେବା ଥିଲା ମଥାବଥାର ବ୍ୟାପାର । ସେ ପ୍ରସଙ୍ଗରେ କୁହାଗଲା ଯେ ଓଡ଼ିଶା ଲୋକେ କଲିକତା ଯାଉଥିଲେ । ଗଙ୍ଗାସ୍ନାନ କରୁଥିଲେ । ଏବେ ନୂଆ ରାଜଧାନୀ ପାଟନା ହେଲା । କ'ଣ ଗୟାଶ୍ରାଦ୍ଧ କରିଯିବେ ? କେବେ ହେବ ଆମର ନିଜସ୍ୱ ରାଜଧାନୀ ? ପୁଣି ତାହା ଆମ ନିଜ ରାଜ୍ୟରେ ? ଜାତୀୟ କଂଗ୍ରେସ ଓଡ଼ିଶାର ଏ ପ୍ରସଙ୍ଗକୁ ଏଡାଇ ଚାଲିଲା । ଏଣୁ ଓଡ଼ିଶାର ନେତୃମଣ୍ଡଳୀ କଂଗ୍ରେସରୁ କିଛି ନପାଇବା ଭାବି ପୁନଃ ନିଜ ସମସ୍ୟା ନିଜେ ସମାଧାନରେ ଲାଗିଲେ । ସନ ୧୯୨୮ ଡିସେମ୍ବର ମାସରେ ସାଇମନ କମିଶନ ଭାରତ ଆସିଲେ । ସାରା ଭାରତରେ ଏଇ ସାଇମନ କମିଶନକୁ ପ୍ରତ୍ୟାଖ୍ୟାନ କରାଗଲା ବେଳେ ଓଡ଼ିଶାର ନେତୃବୃନ୍ଦ ପାଟଣା ରେଳଷ୍ଟେସନରେ କମିସନର ସଦସ୍ୟଗଣଙ୍କୁ ସମ୍ବର୍ଦ୍ଧନା ଦେଲେ । ପାଟଣା ଷ୍ଟେସନର କାନ୍ଥବାଡ, ଚାରିଆଡେ ଥିଲା ପୋଷ୍ଟର । Orissa welcomes simon commission. ଏଥିରେ ମଧୁବାବୁଙ୍କ ବୁଦ୍ଧିମତ୍ତା, ବ୍ରଜସୁନ୍ଦର ଦାସଙ୍କର ନେତୃତ୍ୱ ଏଠାରେ ଖୁବ୍ ସୁନ୍ଦର କାମ କଲା । ବ୍ରଜସୁନ୍ଦର ଦାସ ଲୀବରାଲ ଲୀଗ ପକ୍ଷରୁ ନେତାଭାବେ ସ୍ୱତନ୍ତ୍ର ଓଡ଼ିଶା ଗଠିତ ହେଲେ ଓଡ଼ିଶାର ଲୋକେ ଟିକସ ଦେଇ ରାଜ୍ୟର ଆର୍ଥିକ ସ୍ୱଚ୍ଛଳତା ବଜାୟ ରଖିବାର ପ୍ରତିଶ୍ରୁତି ଦେଇଥିଲେ । ପ୍ରବଳ ଉତ୍ସାହରେ ସେ କମିଶନଙ୍କୁ ଜବାବ ଦେଇଥିଲେ– 'We will tax, tax and tax ourselves'. ଏହାର ତୁରନ୍ତ ସୁଫଳ ମିଳିଥିଲା । କମିଶନ ମିଷ୍ଟର ଆଟଲୀଙ୍କ ନେତୃତ୍ୱରେ ଅନୁସନ୍ଧାନ ପାଇଁ ଏକ ସବ୍‌କମିଟି ନିଯୁକ୍ତ କଲେ । ଚେୟାରମ୍ୟାନ୍ ଶ୍ରୀ ଆଟଲୀଙ୍କ ସହ ଏଥିରେ ସଭ୍ୟ ଥିଲେ ସାର ସୁରବର୍ଦ୍ଧୀ, କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଓ ଦେଓ୍ୱାନ

ବାହାଦୁର ଲକ୍ଷ୍ମୀନାରାୟଣ ମହାନ୍ତି । ଏଇ କମିଟିର ସମର୍ଥନ ସ୍ୱତନ୍ତ୍ର ଓଡ଼ିଶା ଗଠନର ଦୁଆର–ଝରକା ମେଲାଇଲା ଅବା !

ତା' ପରେ ୧୯୩୧ ମସିହା ସେପ୍ଟେମ୍ବର ୧୮ ତାରିଖରେ ସାର୍ ଓଡୋନେଲ୍‌ଙ୍କ ଅଧ୍ୟକ୍ଷତାରେ ବସିଲା କମିଟି ରାଜ୍ୟ ସୀମାରେଖାର ଆଲୋଚନା ଓ ଚିହ୍ନଟ ପାଇଁ । ଏଥିରେ ସଦସ୍ୟ ଥିଲେ ବମ୍ବେର ଏଚ୍.ଏମ୍.ମେହେଟ୍ଟା ଓ ଆସାମର ତରୁଣରାମ ଫୁକନ୍ । ଏଥିରେ ଓଡ଼ିଶା ପକ୍ଷରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ବିହାର ପକ୍ଷରୁ ସଚ୍ଚିଦାନନ୍ଦ ସିଂହ ଓ ଆନ୍ଧ୍ରପ୍ରଦେଶ ପକ୍ଷରୁ ସି.ଭି.ଏସ୍. ନରସିଂହ ରାଜୁ ଉପସ୍ଥିତ ରହିଲେ । ଆଗରୁ ମଣ୍ଟେଗୁ–ଚେମସ୍‌ଫୋର୍ଡ କମିଟି ପାଖରେ ଓଡ଼ିଶାର ସୀମା ଦାବି ବଳିଷ୍ଠଭାବେ ଉପସ୍ଥାପିତ କରାଯାଇଥିଲା । ଯେପର୍ଯ୍ୟନ୍ତ ଓଡ଼ିଆ ଭାଗବତ, ଲକ୍ଷ୍ମୀପୁରାଣର ଗାନ ରହିଛି, ସେପର୍ଯ୍ୟନ୍ତ ଓଡ଼ିଶାର ସୀମା ପରିବ୍ୟାପ୍ତ । କାରଣ ପ୍ରତି ଓଡ଼ିଆ ଘରେ ଭାଗବତ ଓ ଲକ୍ଷ୍ମୀପୁରାଣ ବୋଲାଯାଏ । ଏବେ ଓଡୋନେଲ୍ କମିଟି ପାଖରେ ଦାବି ଉପସ୍ଥାପିତ କଲେ ଦି ଉତ୍କଳ ୟୁନିଅନ୍ କମିଟି । ଓଡ଼ିଶାବାସୀଙ୍କୁ ଅତ୍ର–ତତ୍ର–ସର୍ବତ୍ର, ବିହାର–ବଙ୍ଗ–ମଧ୍ୟପ୍ରଦେଶ, ଆନ୍ଧ୍ର ସବୁଠିଁ ଜାଗ୍ରତ କରିବା ପାଇଁ ପ୍ରଚାରପତ୍ର ବଣ୍ଟନ କରାଯାଇଥିଲା । ସେଥିରେ ଛପାଯାଇଥିବା ପଦରୁ କିଂଚିତ ତଳେ ଦିଆଗଲା । ଯଥା–

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ
ପୂରୁବ କୀରତି ପୂରୁବ ଗୌରବ
ପଡିବ କି ତୋର ମନେ ।

ଏହା ଥିଲା ମଧୁବାବୁଙ୍କ ରଚିତ 'ଉତ୍କଳ ସନ୍ତାନ' କବିତାର କିଛି ଅଂଶ । ସେସମୟରେ ତରୁଣ କବି ମାୟାଧର ମାନସିଂହ ଲେଖିଲେ କବିତା– 'ଉତ୍ତିଷ୍ଠ ଉତ୍କଳ' ଯାହାକି 'ଆଶା' ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । ପ୍ରେରଣାଦାୟୀ ସେହି କବିତାର କିୟତ୍ ଅଂଶ ଏଠାରେ ଉଦ୍ଧାର କରାଯାଉଛି । ଯଥା–

'ଉଠରେ ସୁପ୍ତ ଜାତି
ନିଦ୍ରା–ବିଭୋର ଦେଖି ତୋ ପଡୋଶୀ
ନେବେ ତୋ ଅଙ୍ଗକାଟି ।
ଉତ୍ତରେ ଅଛି ଚତୁର ବଙ୍ଗ,
ଦକ୍ଷିଣେ ରହିଛି ଟାକି ତେଲଙ୍ଗ
ଗୃଧ୍ର ସମାନ ଖୁଁପିବେ ଅଙ୍ଗ
ନେବେ ଆନନ୍ଦେ ବାଁଟି,
ଜୀବନଟା ଯଦି ଖାଲି ଚାହୁଁ, ଆଜି
ଉଠରେ ସୁପ୍ତ ଜାତି ।

x x x

ଇତିହାସ କହେ ପରା,
ଗଙ୍ଗା କୂଳରୁ ଗୋଦାବରୀ ଯାଏ
ଥିଲା ଉତ୍କଳ ଧାର ?
ପିତା–ପିତାମହ–ରକ୍ତାର୍ଜିତ
'ଜୟ ଗଜପତି ଜୟ' ଗର୍ଜିତ
ଓଡ଼ିଆ ପାଇକ–ବାହୁ–ସର୍ଜିତ
ପୂର୍ଣ୍ଣ–ଶସ୍ୟ ଫଳା ।

x x x

ସମ୍ବଲପୁର ଡାକୁ ଗଞ୍ଜାମେ
ସେ ଡାକ ଉଠୁରେ ସିଂହଭୂମ୍ ଧାମେ
ଜୟପୁର ଥରୁ ଜନନୀର ନାମେ
ସାରା ଦେଶେ ଉଠୁ ରୋଳ,
ହାତ ଧରାଧରି ଠିଆ ହୋଇ ଥରେ
ଜୟ ଉତ୍କଳ ବୋଲ–––,

ମାନସିଂହ ଗ୍ରନ୍ଥାବଳୀ/ପାଟିବାଣୀ/ପ୍ରଥମଖଣ୍ଡ
ପୃ–୨୮୭–୨୮୯

ଏବେ ଓଡୋନେଲ କମିଟିର ସୁପାରିଶ ପ୍ରତି ଧ୍ୟାନ ଦେବା । ପ୍ରୋକ୍ତ କମିଟି ରିପୋର୍ଟ କଲେ କି ପରିକଳ୍ପିତ ଓଡ଼ିଶାରେ ସନ୍ନିବେଶିତ ହେବ– (୧) ପୁରୀ (୨) କଟକ (୩) ବାଲେଶ୍ୱର ଜିଲ୍ଲା ସହ ସମ୍ବଲପୁର, ଅନୁଗୋଳ, ଖଡିଆଳ ଓ ରାୟପୁର ମୁଲକର ବୃହତ୍ତର ଭାଗ । ତତ୍‌ସହିତ ମଧ୍ୟ ରହିବ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଏଜେନ୍‌ସି ଅଞ୍ଚଳ । ଗୋଲଟେବୁଲ ବୈଠକରେ ପ୍ରାୟ ସମସ୍ତଙ୍କ ସମ୍ମତିକ୍ରମେ ଭାଷା ଓ ଜାତୀୟତା ଦୃଷ୍ଟିରୁ ଓଡ଼ିଶା ପ୍ରଦେଶ ଗଠିତ ହେଲେ ତାହାହେବ ସୁସଂଗଠିତ ଐକାନ୍ତିକ ପ୍ରଦେଶ, ଯାହା ପ୍ରତି ଭାରତର ସବୁ ଅଞ୍ଚଳ ଓ ଦଳର ପୂର୍ଣ୍ଣ ସମର୍ଥନ ରହିବ ।

ଗୋଲଟେବୁଲ ବୈଠକରେ ଗୃହୀତ ପ୍ରସ୍ତାବକ୍ରମେ ପ୍ରସ୍ତାବିତ ଓଡ଼ିଶାର ଭୌଗୋଳିକ ପରିସୀମାରୁ ଜୟପୁର ଓ ପାରଳାଖେମୁଣ୍ଡି ଦୁଇ ଜମିଦାରୀ ବାଦ ପଡିଥିଲା କଥା ଥିଲା ସେକାଳର ଆଉ ଏକ ସମସ୍ୟା, ମୁଣ୍ଡବିନ୍ଧାର କାରଣ । ଯାହାହେଉ ସେତେବେଳେ ଖଲ୍ଲିକୋଟର ରାଜା ଶ୍ରୀରାମଚନ୍ଦ୍ର ମର୍ଦ୍ଧରାଜ ଦେଓ ଲଣ୍ଡନରେ ଅବସ୍ଥାନ କରୁଥାଆନ୍ତି । ତାଙ୍କ ସହିତ ଅନ୍ୟ ଉଦ୍ୟୋକ୍ତାମାନେ ଥିଲେ- ଲିଙ୍ଗରାଜ ପାଣିଗ୍ରାହୀ, ଭୁବନାନନ୍ଦ ଦାସ ଓ ଶ୍ୟାମସୁନ୍ଦର ଗନ୍ତାୟତ । ସମସ୍ତଙ୍କର ସମ୍ମିଳିତ ଉଦ୍ୟମକ୍ରମେ ତତ୍କାଳୀନ ଗୃହ ବିଭାଗର ସଚିବ ସାର୍ ସାମୁଏଲ୍ ହୋରେଙ୍କ ସୁବିଚାରରୁ ନୂତନ ପ୍ରକଳ୍ପିତ ଓଡ଼ିଶାରେ ବ୍ରହ୍ମପୁର ସହର, ପାରଳାଖେମୁଣ୍ଡି ସହର, ଜୟପର ରାଜ୍ୟ, ଅନୁଗୋଳ, ପଦ୍ମପୁର ଓ ଖଡିଆଳର ସମ୍ମିଶ୍ରଣ ହେବ ବୋଲି ସୂଚନା ମିଳିଲା ।

ଏହାପରେ ଥିଲା ଯୁଗ୍ମ ପାର୍ଲିଆମେଣ୍ଟ କମିଟିର ସୁପାରିଶ । ଏଇ କମିଟିର ସୁପାରିଶ ଅନୁସାରେ ପ୍ରୋକ୍ତ ଅଞ୍ଚଳ ପରିକଳ୍ପିତ ଓଡ଼ିଶାରେ ଅଙ୍ଗୀଭୂତ ହେବାର ନକ୍ସା ଚୂଡାନ୍ତହେଲା । ଏଇ ଗୋଲଟେବୁଲ ବୈଠକରେ ଯୋଗ ଦେଇ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ସାହସିକତାର ପରିଚୟ ଦେଇଥିଲେ । ଜାନୁଆରୀ ୧୬, ୧୯୩୧ରେ ସେ ଗୋଲଟେବୁଲ ବୈଠକରେ କହିଥିଲେ- 'ମୁଁ ଆପଣମାନଙ୍କ ଆଗରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରଶ୍ନ ଉତ୍‌ଥାପନ କରୁଛି । ଏହା ଓଡ଼ିଆମାନଙ୍କର ଜୀବନ-ମରଣର ପ୍ରସଙ୍ଗ । ବର୍ତ୍ତମାନ ଓଡ଼ିଆମାନେ ବିଭିନ୍ନ ପ୍ରଦେଶରେ ପ୍ରଶାସନିକ କେନ୍ଦ୍ରଠାରୁ ଦୂରରେ ଲାଞ୍ଚପରି ରହି ବିଭିନ୍ନ ଲାଂଛନା ଏବଂ ଅସୁବିଧା ଭୋଗ କରୁଛନ୍ତି । ସଂଖ୍ୟାଲଘୁ ଭାବେ ଅନ୍ୟ ପ୍ରଦେଶମାନଙ୍କରେ ରହୁଥିବା ନିୟୁତ ନିୟୁତ ଲୋକମାନଙ୍କ ସହ ମିଶି ରହିଥିବା ହେତୁ ଓଡ଼ିଆମାନଙ୍କ ଉପରେ କାହାରି ଦୃଷ୍ଟି ପଡୁନାହିଁ ।

ଯାହା ହେଉ ଗୋଲଟେବୁଲ ବୈଠକରେ ଦାବି ଉପସ୍ଥାପିତ କରି, ସାକ୍ଷ୍ୟ ଦେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶରେ ଜୟପୁର ଓ ପାରଳାଖେମୁଣ୍ଡିକୁ ସମ୍ମିଶ୍ରିତ କରାଇବାର ବିଜୟ ଗଜପତି କୃଷ୍ଣଚନ୍ଦ୍ରଙ୍କର ଖ୍ୟାତିକୁ ବହୁଗୁଣିତ କରାଇଥିଲା । ଏ ସମ୍ପର୍କରେ ବିହାରର ପ୍ରଖ୍ୟାତ ଜନନାୟକ ସଚ୍ଚିଦାନନ୍ଦ ସିଂହ ତାଙ୍କୁ ସର୍ବଭାରତୀୟ ସ୍ତରରେ ବହୁ ପ୍ରଶଂସା କରିଥିଲେ । ଇତିହାସ କହେ- ଅତୀତରେ ଓଡ଼ିଶାର ରାଜାମାନେ ଦକ୍ଷିଣ ଓ ଉତ୍ତରରେ ବହୁତ ଯୁଦ୍ଧ କରି ବିଜୟୀ ହୋଇଛନ୍ତି । କିନ୍ତୁ ପାରଳାର ମହାରାଜା ଲଣ୍ଡନର ଟେମସ୍ ନଦୀକୂଳରେ ଓଡ଼ିଆମାନଙ୍କର ମୁଖ୍ୟ ସେନାପତି ଭାବରେ ଏହି ଶେଷ ଯୁଦ୍ଧ (ଗୋଲଟେବୁଲ ବୈଠକର ଆଲୋଚନା)ରେ ବିଜୟୀ ହୋଇ ଯେଉଁ ଅକ୍ଷୟ କୀର୍ତ୍ତି ରଖିଗଲେ, ତାହା ଅତୁଳନୀୟ ।

ଏହାପରେ ବସିଥିଲା ୧୯୩୩ ମସିହାରେ ନଅଜଣିଆ ହବାକ କମିଟି । ଏହାର ଅଧ୍ୟକ୍ଷ ଥିଲେ ସାର ଜନ୍ ଅଷ୍ଟିନ୍ ହବାକ । ସଦସ୍ୟଗଣ ଥିଲେ, ମିଷ୍ଟର ମଧୁସୂଦନ ଦାସ CIE (Comparion of Indian Empire), ଲକ୍ଷ୍ମୀଧର ମହାନ୍ତି, ବି.ଏନ୍.ଧୀର ନରେନ୍ଦ୍ର, ଏନ୍.ନାଇଡୁ, ଡବ୍ଲ୍ୟୁ. ଓ. ନିଉସାମ, ନୀଳମଣି ସେନାପତି, ଲୋକନାଥ ମିଶ୍ର ଓ ଗୌରଚନ୍ଦ୍ର ଦେଓ । ସେମାନଙ୍କ ନିଷ୍ପତ୍ତି ଅନୁସାରେ କଟକ ରହିଲା ରାଜଧାନୀ ନଗର । ହାଇକୋର୍ଟ ମଧ କଟକରେ ରହିବାର କଥା ହେଲା । ଭାରତ ସରକାରଙ୍କ ଆଇନ୍‌ରେ ଦଫା ୨୮୯ ଅନୁସାରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଶାସନିକ ପାହ୍ୟା ପ୍ରଦତ୍ତ ହେଲା । ଅତଏବ ୧୯୩୬, ଏପ୍ରିଲ ପହିଲାରେ ଓଡ଼ିଶାରେ ଆନନ୍ଦର ଲହରୀ ଖେଳିଗଲା । ସେସମୟରେ ଉପସ୍ଥିତ ଥିବା ନେତୃବୃନ୍ଦରେ ଥିଲେ- ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ବିଶ୍ୱନାଥ ଦାସ, ବ୍ରଜମୋହନ ପଟ୍ଟନାୟକ, ଗୋରାଚାନ୍ଦ ପଟ୍ଟନାୟକ, ଇତିଫୁର ରହମନ୍, ବ୍ରଜସୁନ୍ଦର ଦାସ, ଭିକାରିଚରଣ ପଟ୍ଟନାୟକ, ଗୋପାଳଚନ୍ଦ୍ର ପ୍ରହରାଜ, ହରିହର ମହାପାତ୍ର, ବାରିଷ୍ଟର ବିଶ୍ୱନାଥ ମିଶ୍ର, ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜ, ପାରେଶ୍ୱର ମହାନ୍ତି ଆଦି । ଆଜି ସେହି ବରପୁତ୍ରମାନଙ୍କ ଉଦ୍ଦେଶ୍ୟରେ ଆମ୍ଭର ପ୍ରଣିପାତ ।

ସେକ୍ଟର ୨/୪୨୬, ନୀଳାଦ୍ରିବିହାର
ଭୁବନେଶ୍ୱର

# ଓଡ଼ିଆ ଭାଷାର ପ୍ରଥମ ସହିଦ୍

ଡକ୍ଟର ସୁବ୍ରତ କୁମାର ପୃଷ୍ଟି

ଭାରତର ଭାଷାଭିତ୍ତିକ ପ୍ରଥମ ରାଜ୍ୟ ଭାବରେ ଗଠିତ ହୋଇଥିବା ଓଡିଶାର ବୟସ ୮୧ ହେଲା । ସେହିଭଳି ଓଡିଆ ଏକ ଗୌରବମୟ ପ୍ରାଚୀନ ମୌଳିକ ଭାଷା ଭାବରେ ଓଡିଆଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବାର ତୃତୀୟ ବର୍ଷ ଅତିକ୍ରମ କଲା । ସ୍ୱାଧୀନ ସଂଘୀୟ ଭାରତର ରାଜ୍ୟ ପୁନର୍ଗଠନ ପାଇଁ ଆଦର୍ଶ ଥିବା ଓଡିଶାର ୨୫୦୦ବର୍ଷର ଏହି ସମୃଦ୍ଧ ଭାଷା ସମଗ୍ର ଭାରତବର୍ଷ ସହିତ ଦକ୍ଷିଣପୂର୍ବ ଏସିଆ ଅଞ୍ଚଳ ପର୍ଯ୍ୟନ୍ତ ବ୍ୟାପ୍ତ ଥିବାର ସ୍ପଷ୍ଟ ପ୍ରମାଣ ମିଳେ । ଐତିହାସିକ ତଥ୍ୟ ଅନୁସାରେ ଓଡିଆଭାଷା ପାଇଁ ପ୍ରଥମ ରାଜନୈତିକ ପଟ୍ଟ ପରିବର୍ତ୍ତନ ହୁଏ ଏକାଦଶ ଶତାବ୍ଦୀରେ, ଯେତେବେଳେ ଦକ୍ଷିଣର ସାମନ୍ତରାଜା ଚୋଳଗଙ୍ଗଦେବ ସକଳୋତ୍କଳର ରାଜା ହୋଇ ଲୋକଭାଷା ଉଡ୍ର ବା ଓଡିଆକୁ ପୁଣିଥରେ ସଂସ୍କୃତ ସହିତ ରାଜଭାଷାର ମାନ୍ୟତା ଦେଲେ । ସେହିପରି ଦ୍ୱିତୀୟ ପଟ୍ଟ ପରିବର୍ତ୍ତନ ହୋଇଥିଲା ପଞ୍ଚଦଶ ଶତାବ୍ଦୀରେ, ଯେତେବେଳେ କପିଳେନ୍ଦ୍ରଦେବଙ୍କଦ୍ୱାରା କେବଳ ଉଡ୍ର ବା ଓଡିଆଭାଷା ରାଜଭାଷାର ମାନ୍ୟତା ପାଇଲା । ତୃତୀୟ ଭାଷା ଆନ୍ଦୋଳନ ହୋଇଥିଲା ଊନବିଂଶ ଶତାବ୍ଦୀରେ, ଯେତେବେଳେ ଓଡିଆ ଅଞ୍ଚଳରେ ତେଲୁଗୁ, ହିନ୍ଦୀ ଓ ବଙ୍ଗଳାଭାଷାକୁ ରାଜଭାଷା ଭାବରେ ଘୋଷଣା କରାଗଲା । ଦୁଃଖର କଥା ପ୍ରଥମ ଦୁଇ ଭାଷା ଆନ୍ଦୋଳନର ବିସ୍ତୃତ ତଥ୍ୟ ନ ଥିବାବେଳେ ତୃତୀୟଟିର ତଥ୍ୟ ଆମ ପାଖରେ ଗଚ୍ଛିତ ଥିଲେ ମଧ୍ୟ ଜାତି ବଦଳରେ ଜାତିଆଣ ପ୍ରୀତି ଅଧିକ ଥିବାରୁ ଏହାର ସ୍ପଷ୍ଟ ଚିତ୍ର ଲୋକଲୋଚନକୁ ଆସିପାରୁ ନାହିଁ ।

ଓଡିଶାରେ ଇଂରେଜ ଶାସନର ଇତିହାସ ବେଶୀ ଦିନର ନୁହେଁ । ମୋଗଲ ଅଧିକୃତ ଓଡିଶାର ୫ ଦଣ୍ଡପାଟ ମଧ୍ୟରୁ ଚିକାକୋଲ ଓ ରାଜମୁଣ୍ଡାରି ଦଣ୍ଡପାଟ ୧୭୨୬ରେ ସ୍ୱତନ୍ତ୍ର ହାଇଦ୍ରାବାଦ ରାଜ୍ୟ ଗଠନ ହେବା ପରେ ଉତ୍ତର ସରକାର ନାମ ଗ୍ରହଣ କଲା । ପରେ ହାଇଦ୍ରାବାଦର ଉତ୍ତରାଧିକାର ଯୁଦ୍ଧରେ ଏହି ଅଞ୍ଚଳ ପ୍ରଥମେ ଫରାସୀ ଗଭର୍ଣ୍ଣର ଡ୍ୟୁପ୍ଲେଙ୍କ ଅଧୀନକୁ ୧୭୫୧ରେ ଓ ୧୭୫୪ରେ ଇଂରେଜନ ଅଧୀନକୁ ଆସିବା ପରେ ମାଡ୍ରାସ ସହିତ ଏହାର ମିଶ୍ରଣ ଘଟିଲା । ସେହିପରି ଜଳେଶ୍ୱର ଦଣ୍ଡପାଟର ୯୦ ଭାଗ ଅଞ୍ଚଳ ୧୭୫୭ରେ ଓ ଅବଶିଷ୍ଟ ଓଡିଶା ୧୮୦୩ରେ ଇଂରେଜ ଶାସନ ଅନ୍ତର୍ଭୁକ୍ତ ହୋଇ ବଙ୍ଗଳା ସହିତ ମିଶିଥିଲା । ପରବର୍ତ୍ତୀ କାଳରେ କଳାହାଣ୍ଡି, ସମ୍ବଲପୁର, ବସ୍ତର, ରାୟପୁର ଆଦି ଅଞ୍ଚଳକୁ ଛୋଟନାଗପୁର କମିଶନର ଓ ପରେ ୩୦.୪.୧୮୬୩ରେ ଗଠିତ ମଧ୍ୟପ୍ରଦେଶ ଡିଭିଜନରେ ମିଶାଇ ଦିଆଗଲା । ମାଡ୍ରାସ ଅଧୀନସ୍ଥ ଓଡିଆ ଅଞ୍ଚଳ ବ୍ୟତୀତ ଆଉ ସବୁ ଅଞ୍ଚଳରେ ଓଡିଆରେ ସବୁ କାମ ହେଉଥିଲା । ଏହି ସମୟରେ ଚକରା ବିଶୋଇଙ୍କ ନେତୃତ୍ୱରେ ଦେଖାଦେଇଥିବା କନ୍ଧ ବିଦ୍ରୋହ ଦମନରେ ବୌଦରାଜା ପିତାମ୍ବର ଦେବ ବିଫଳ ହେବାରୁ ୧୫ ଫେବୃଆରୀ ୧୮୫୫ରେ ବୌଦର ଦକ୍ଷିଣ ଭାଗକୁ କନ୍ଧମାଳ ନାମକ ସ୍ୱତନ୍ତ୍ର ତହସିଲ ସ୍ଥାପନ କରାଯାଇ ଏହା ପ୍ରତ୍ୟକ୍ଷ ଶାସନରେ ରହିଲା । ଏହାର ବାଲିଗୁଡା ଉପଖଣ୍ଡ ସହ ନିକଟତମ ରାଜ୍ୟ ଘୁମୁସର ମାଡ୍ରାସ ଅଧୀନରେ ରହିଲା । ବର୍ତ୍ତମାନର ନକସାଲ ଦମନ ଭଳି ସେହି ସମୟରେ ଏହି ଅଞ୍ଚଳର ଇଂରେଜ ବିରୋଧୀ ବିଦ୍ରୋହକୁ ଦୃଢ ଭାବରେ ଦମନ କରିବା ପାଇଁ ମେରିଆ ପ୍ରଥା

ବିଲୋପ ନାମକ ଏକ ଅଭିନବ କୌଶଳ ଗ୍ରହଣ କରାଗଲା । ଏହି ଦମନ ଦାୟିତ୍ୱରେ ଥିବା ଇଂଲିଶ ଏଜେଣ୍ଟ ମାକନିଲଙ୍କ ଅତ୍ୟଧିକ ଅତ୍ୟାଚାରରେ ଅତିଷ୍ଠ ହୋଇ କନ୍ଧମାନଙ୍କ ହତ୍ୟା ଯୋଜନାକୁ ବେଲଗୁଣ୍ଠାର ଜଣେ ଦଫାଦାର ଦୀନବନ୍ଧୁ ପଟ୍ଟନାୟକ କୌଶଳ କରି ବିଫଳ କରିଦେଲେ । ଏହି ଦୀନବନ୍ଧୁ ପଟ୍ଟନାୟକଙ୍କ ବିଷୟରେ କୁହାଯାଏ ଯେ, ବହୁ ଦିନରୁ ଆଦିବାସୀ ଓ ଦଳିତ ମଧ୍ୟରେ ଥିବା ଦୀର୍ଘଦିନର ସହାବସ୍ଥାନକୁ ଭାଙ୍ଗିବା ପାଇଁ ହିନ୍ଦୁ–ଖ୍ରୀଷ୍ଟିଆନ ବିଭେଦକୁ ଆୟୁଧ କରିଥିଲେ । କାରଣ ସେସମୟର କେତେକ ଶିକ୍ଷିତ ବ୍ୟକ୍ତି ଖ୍ରୀଷ୍ଟିଆନ ହୋଇ କନ୍ଧମେଳିକୁ ଦିଗଦର୍ଶନ ଦେଉଥିଲେ । ପାଇକ ବିଦ୍ରୋହକୁ ଯେପରି ଛଳନା, ବିଶ୍ୱାସଘାତକତା ଓ କୂଟନୀତି ପ୍ରୟୋଗ କରି ଚରଣ ପଟ୍ଟନାୟକ ମାଧ୍ୟମରେ ଦମନ କରିଦିଆଗଲା, ଠିକ ସେହିପରି କନ୍ଧ ବିଦ୍ରୋହକୁ ଦଫାଦାର ଦୀନବନ୍ଧୁ ପଟ୍ଟନାୟକ ଛଳନା, ବିଶ୍ୱାସଘାତକତା ଓ କୂଟନୀତି ମାଧ୍ୟମରେ ଦମନ କରି ପୁରସ୍କାର ସ୍ୱରୂପ ବିଶିପଡାର ପ୍ରଥମ ତହସିଲଦାର ନିଯୁକ୍ତ ହୋଇ ଇଂରେଜ ଅତ୍ୟାଚାରକୁ ଅଧିକ ପ୍ରୋତ୍ସାହିତ କଲେ ।

କନ୍ଧ ବିଦ୍ରୋହର ଦମନ ପାଇଁ ଇଂରେଜ ଶାସକଙ୍କୁ ତେଲେଙ୍ଗା କର୍ମଚାରୀଙ୍କ ପୂର୍ଣ୍ଣ ସହଯୋଗ ସହିତ ଓଡିଆ ତହସିଲଦାର ଦୀନବନ୍ଧୁଙ୍କ ଷଡଯନ୍ତ୍ର ସମଗ୍ର କନ୍ଧମାଳ, ବାଲିଗୁଡା ଓ ଘୁମୁସର ଅଞ୍ଚଳରେ ଏକ ଆତଙ୍କର ଛାୟା ଦେଖାଦେଲା । ଏହି ସମୟରେ ଉପକୂଳ ଓଡିଶାରେ ବଙ୍ଗାଳୀ କର୍ମଚାରୀଙ୍କ ସହଯୋଗରେ ଇଂରେଜ କମ୍ପାନୀ ସରକାରଙ୍କ ଦ୍ୱାରା ମନୁଷ୍ୟକୃତ ନଅଙ୍କ ଦୁର୍ଭିକ୍ଷ ସୃଷ୍ଟି ହୋଇ ଦୁଇ ତୃତୀୟାଂଶ ଓଡିଆଙ୍କ ମୃତ୍ୟୁ ସମଗ୍ର ଓଡିଆ ଜାତି ପାଇଁ ଏକ ସତର୍କ ଘଣ୍ଟି ବଜାଇଥିଲା । ପୁଣି ଓଡିଆଙ୍କ ଅଭାବରେ ଓଡିଆ ପୁସ୍ତକ ଅଭାବର ଆଳ ଦେଖାଇ ବଙ୍ଗ ଅଧୀନସ୍ଥ ଓଡିଶାର ହାତଗଣତି ନୂତନ ବିଦ୍ୟାଳୟରେ ଓଡିଆ ବଦଳରେ ବଙ୍ଗଳା ମାଧ୍ୟମ ଶିକ୍ଷା ବ୍ୟବସ୍ଥା ପ୍ରଚଳନ ପାଇଁ ଦାବି ଆଉ ଏକ ସାଂସ୍କୃତିକ ବିପଦର ସୂଚନା ଦେଉଥିଲା । ତେବେ ମୁଷ୍ଟିମେୟ ଉପକୂଳ ଓଡିଆଙ୍କ ଦୃଢ ପ୍ରତିବାଦ ଯୋଗୁଁ ତା. ୮.୧୧.୧୮୬୯ରିଖରେ ଓଡିଶା କମିଶନର ରେଭେନ୍ସାଙ୍କ ଶିକ୍ଷା ସମ୍ପର୍କିତ ଘୋଷଣାନାମା 'ଓଡିଶାରେ ଯିଏ ରହିବ, ସେ ଓଡିଆ ପଢିବାକୁ ବାଧ୍ୟ' ପ୍ରକାଶ ସହିତ ମାକଲେ ଶିକ୍ଷାପଦ୍ଧତି ଅନୁସରଣରେ ନିର୍ମିତ ଏହି ନୂତନ ପ୍ରକାର ବିଦ୍ୟାଳୟର ପାଠ୍ୟପୁସ୍ତକ ଅଭାବ ପୂରଣ ଉଦ୍ଦେଶ୍ୟରେ ଓଡିଆ ଭାଷାରେ ବିଭିନ୍ନ ପାଠ୍ୟପୁସ୍ତକ ରଚନା ପାଇଁ ପ୍ରୋତ୍ସାହନ ଦିଆଗଲା । ଏଥିରେ ବ୍ୟଥିତ ହୋଇ ବହୁ ବଙ୍ଗଳା ଭାଷା ଶିକ୍ଷକ ଓଡିଶା ଛାଡିଥିବା ବେଳେ ଆଶା ହରାଇ ନ ଥିବା ନୂତନ ଭାବରେ ନିଯୁକ୍ତ ବାଲେଶ୍ୱର ଜିଲ୍ଲାସ୍କୁଲର ବଙ୍ଗଳାଭାଷା ଶିକ୍ଷକ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ଓଡିଆ ଭାଷାର ଅସାରତା ଦେଖାଇବାକୁ ଜାନୁଆରୀ ୧୮୭୦ରେ 'ଉଡିୟା ଏକଟା ସ୍ୱତନ୍ତ୍ର ଭାଷା ନୟେ' ନାମକ ଦୁର୍ବଳ ଯୁକ୍ତି ପୂର୍ଣ୍ଣ କ୍ଷୁଦ୍ର ପୁସ୍ତକ ଲେଖିଲେ । କିନ୍ତୁ ସବୁ ଆଶା ଆଶଙ୍କାର ପୂର୍ଣ୍ଣଚ୍ଛେଦ ରେଭେନ୍ସାଙ୍କ ନିର୍ଦ୍ଦେଶନାମା ପକାଇ ସାରିଥିବାରୁ ଏହି ପୁସ୍ତକ କେବଳ ଶିରୋନାମା ଭିତରେ ବଞ୍ଚି ରହିଗଲା । ଏଠାରେ ଉଲ୍ଲେଖଯୋଗ୍ୟ ଭାଷା ସମ୍ପର୍କିତ ଏହି ବାଦବିବାଦ କେବଳ ନୂତନ ଭାବେ ପ୍ରତିଷ୍ଠିତ ଇଂରାଜୀ ବିଦ୍ୟାଳୟର ଶିକ୍ଷାର ମାଧ୍ୟମକୁ ନେଇ ହୋଇଥିଲେ ମଧ୍ୟ ସେ ସମୟର ଥିବା ୧୦୦ଟି ସ୍କୁଲରେ ମୋଟ ୧୦ଜଣ ବି ଓଡିଆ ପିଲା ପଢୁ ନ ଥିଲେ । ଏହି ବିଦ୍ୟାଳୟର ସବୁ ଛାତ୍ର ଥିଲେ ବଙ୍ଗାଳୀ, ମରାଠୀ ଓ ମୁସଲିମ୍ । ପୁଣି ଏହି ସମୟରେ ଓଡିଆଭାଷାରେ ସରକାରୀ କାର୍ଯ୍ୟ ଚାଲୁଥିବାରୁ ତଥା ଏହି ବାଦବିବାଦରେ ଭାଷା ବଦଳରେ ଶିକ୍ଷାର ମାଧ୍ୟମକୁ ଗୁରୁତ୍ୱ ଦିଆଯାଇଥିବାରୁ ଓଡିଆଭାଷା ବଦଳରେ କେବଳ ପାଠ୍ୟପୁସ୍ତକ ପ୍ରସ୍ତୁତି ବିଷୟକ ବିଶେଷ ଚର୍ଚ୍ଚା ଥିଲା ।

ଅନ୍ୟ ପକ୍ଷରେ ଉତ୍ତର ସରକାର ବା ଘୁମୁସର ଅଞ୍ଚଳରେ ପ୍ରଶାସନିକ କାର୍ଯ୍ୟ ତେଲୁଗୁରେ ହେବାଦ୍ୱାରା ଜନସାଧାରଣ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ । କଚେରି ଲେଖାପଢା କାମ କରୁଥିବା ଚତୁର ଶିଷ୍ଟକରଣ ଓ ବ୍ରାହ୍ମଣ ନିଜ ଜୀବିକାପାଇଁ ମାତୃଭାଷା ଓଡିଆ ଛାଡି ତେଲୁଗୁ ଶିଖିଲେ । ଏମାନଙ୍କ କଥିତ ଭାଷା ଓଡିଆ ମିଶା ତେଲୁଗୁ ହେଲା । ଏମାନେ ତେଲୁଗୁ କର୍ମଚାରୀମାନଙ୍କ ସହ ମିଶି ଓଡିଆଙ୍କୁ ଅଧିକ ଶୋଷଣ କଲେ । ଇଂରେଜ ସହିତ ତେଲୁଗୁ କର୍ମଚାରୀ ଓ ଓଡିଆ ଗୁମାସ୍ତାଙ୍କ ଅତ୍ୟାଚାର ସହିତ ତାଳ ଦେଇ ବଙ୍ଗ ଅଧୀନସ୍ଥ ଓଡିଆଙ୍କ ଦୟନୀୟ ସ୍ଥିତି ଦେଖିବା ପରେ ମାନ୍ଦ୍ରାସ ଅଧୀନସ୍ଥ ଶିକ୍ଷିତ ଓଡିଆଙ୍କ ଚେତନା ଉଦୟ ଘଟିଲା । ଏଣେ ଅମାନୁଷିକ ଭାବରେ କନ୍ଧ ବିଦ୍ରୋହ ଦମନ ଏହି ଚେତନାକୁ ଆହୁରି ଶକ୍ତିଶାଳୀ କରିଦେଲା । ଏହି ସମୟରେ ୧୮୬୪ରେ ଭେଙ୍କଟେଶ୍ୱର

ଦେଓ ବାଲିଗୁଡା ଅଧୀନସ୍ଥ କାଟିଙ୍ଗିଆ ଜମିଦାରି ଦାୟିତ୍ୱ ନେଲେ। ଜଣେ ଦୂରଦ୍ରଷ୍ଟା, ସ୍ୱାଭିମାନୀ ଓ ସ୍ୱାଧୀନଚେତା ବ୍ୟକ୍ତି ଭାବରେ ସେ ଅନୁଭବ କଲେ ଯେ, ଓଡିଆଭାଷୀ ଅଞ୍ଚଳକୁ ଏକ ଶାସନାଧୀନ ନ କଲେ ତଥା ଏହି ମାଟିର ଉତ୍ତରପିଢି ମାତୃଭାଷାରେ ଶିକ୍ଷା ନ ପାଇଲେ ଐତିହ୍ୟସମ୍ପନ୍ନ ଓଡିଶାର ଅସ୍ତିତ୍ୱ ଲୋପ ପାଇଯିବ। ଏଥିପାଇଁ ସେ ଓଡିଆଭାଷା ଆନ୍ଦୋଳନ ଆହ୍ୱାନ ଦେଇଥିଲେ। ଏହା ହିଁ ଥିଲା ପ୍ରକୃତରେ ଓଡିଆଭାଷା ଆନ୍ଦୋଳନର ପ୍ରଥମ ସ୍ୱର, ଯାହା ଶୁଭିଥିଲା ସୁଦୂର କନ୍ଧମାଳ ମାଟିରୁ। ନିଜ ଚିନ୍ତନକୁ ସାକାର କରିବା ପାଇଁ ଦାନିଏଲ ମହାନ୍ତି, ବଳରାମ ମହାରଣା, ରସୁଲକୁଣ୍ଡାର ଦୀନବନ୍ଧୁ ମହାନ୍ତି, ପୁରୁଷୋତ୍ତମପୁର ସବ୍‌ରେଜିଷ୍ଟ୍ରାର ନରସିଂହ ଦାସ, କନକତୁରର ଜନାର୍ଦ୍ଦନ ଦାସ ପ୍ରମୁଖଙ୍କ ସମ୍ପୂର୍ଣ୍ଣ ସହଯୋଗ କ୍ରମେ ୧୮୬୮ରେ ଗଢିଲେ ଗଞ୍ଜାମ ହିତବାଦିନୀ ସଭା।

ସେ ହେଲେ ଏହାର ସର୍ବସମ୍ମତ ସଭାପତି ଓ ଉଇଲିୟମ ମହାନ୍ତି ଏହାର ସମ୍ପାଦକ। ଦକ୍ଷିଣ– ପଶ୍ଚିମ ଓଡିଶାର ସମସ୍ତ ଦେଶୀୟ ରାଜା, ଜମିଦାର, ଲେଖକ, ମାତୃଭାଷାପ୍ରେମୀ ଶିକ୍ଷିତ ଓଡିଆ, ଛୋଟବଡ ସାଂସ୍କୃତିକ ଅନୁଷ୍ଠାନ ଓ ସଂଗଠନର ସଦସ୍ୟମାନଙ୍କ ସହ ଯୋଗାଯୋଗ ସ୍ଥାପନ କରି ସେ ଗଞ୍ଜାମ ହିତବାଦିନୀ ସଭାର ପ୍ରଥମ ବୈଠକ ୧୪.୯.୧୮୭୦ରେ ରସୁଲକୁଣ୍ଡା (ବର୍ତ୍ତମାନର ଭଞ୍ଜନଗର)ଠାରେ ଆୟୋଜନ କଲେ। ଏହି ସଭାପକ୍ଷରୁ ଓଡିଆଭାଷୀ ଅଞ୍ଚଳରେ ଓଡିଆଭାଷା ପ୍ରଚଳନ ପାଇଁ ମାନ୍ଦ୍ରାଜ ସରକାରଙ୍କୁ ସ୍ମାରକପତ୍ର ଦେବା ସହିତ 'ମହରଗ ବେଳେ ଗାଈ ଓ ବିପତ୍ତି ବେଳେ ଭାଇ' ଡାକ ବଚନ ଅନୁରୂପେ ଉତ୍କଳର ଭାଇମାନେ ମାନ୍ଦ୍ରାଜ ଅଧୀନସ୍ଥ ହତଭାଗ୍ୟ ଓଡିଆଙ୍କୁ ରକ୍ଷା କରନ୍ତୁ ବୋଲି ସଦସ୍ୟ ଜନାର୍ଦ୍ଦନ ଦାସ ଉତ୍କଳଦୀପିକା (୨୨.୧୦.୧୮୭୦)ମାଧ୍ୟମରେ ଉପକୂଳ ନେତୃବୃନ୍ଦଙ୍କୁ ଆକୁଳ ପ୍ରାର୍ଥନା କଲେ। ଏହି ବୈଠକର ସଫଳତା ପରେ ଭାଷା ଆନ୍ଦୋଳନକୁ ଶକ୍ତିଶାଳୀ କରିବା ପାଇଁ ୧୮୭୨ରେ ବଙ୍ଗଳା ଓ ମାଡ୍ରାସ ଅଧୀନରେ ଥିବା ଓଡିଆ ରାଜା, ଜମିଦାର ଓ ବୁଦ୍ଧିଜୀବୀଗଣଙ୍କୁ ଏକତ୍ର କରିବା ଉଦ୍ଦେଶ୍ୟରେ ଗଞ୍ଜାମ ବଦଳରେ ଓଡିଆ ହିତବାଦିନୀ ସଭା ନାମ ପରିବର୍ତ୍ତନ କଲେ ଓ ଏହାର ସମ୍ପାଦକ ରହିଲେ ନିଜେ ଭେଙ୍କଟେଶ୍ୱର ରାଓ। ଏହି ସଭା ପକ୍ଷରୁ କାଳିପଦ ବନ୍ଦୋପାଧ୍ୟାୟଙ୍କ ହାତରେ ବ୍ରିଟିଶ ମହାରାଣୀଙ୍କ ନିକଟକୁ ୪ଦଫା ସମ୍ବଳିତ ଦାବିପତ୍ର ପଠାଇଥିଲେ। ଉତ୍କଳ ଦୀପିକାର ୧୮ ଅକ୍ଟୋବର ୧୮୭୩ ସଂଖ୍ୟାରେ ପ୍ରକାଶିତ ଏହି ଦାବିଗୁଡିକ ହେଲା, ୧–ଗଞ୍ଜାମବାସୀଙ୍କୁ ଓଡିଆଭାଷା ଓ ଲିପିରେ ଯୋଗାଯୋଗ କରିବା ପାଇଁ ଅନୁମତି ଦିଆଯାଉ। ୨– ସମସ୍ତ ସରକାରୀ କାଗଜପତ୍ର, ରେକର୍ଡ ଆଦି ଓଡିଆରେ ଲେଖାଯାଉ। ୩– ସମସ୍ତ ବିଦ୍ୟାଳୟରେ ଓଡିଆ ମାଧ୍ୟମରେ ଶିକ୍ଷା ଦିଆଯାଉ। ୪– ଓଡିଆ ଭାଷାରେ ସମସ୍ତ ପରୀକ୍ଷା ଦେବା ପାଇଁ ବିଦ୍ୟାର୍ଥୀଙ୍କୁ ଅନୁମତି ଦିଆଯାଉ।

ହିତବାଦିନୀ ସଭାର ଦାବୀ ସିଧାସଳଖ ବ୍ରିଟିଶ ମହାରାଣୀଙ୍କ ନିକଟରେ ପହଞ୍ଚିବା ଫଳରେ ତାଙ୍କରି ଆଦେଶ ବଳରେ ୪.୩.୧୮୭୨ରିଖରେ ସରକାରୀ ଆଦେଶଦ୍ୱାରା ଓଡିଆଭାଷା ପୁନଃ ପ୍ରଚଳନ ହେଲା। ଏହି ଆଦେଶ କିପରି ବିକୃତ ଓଡିଆରେ ପ୍ରକାଶ ପାଇଥିଲା, ତାହାର ଅବିକଳ ନକଲ ଏଠାରେ ପ୍ରଦାନ କରାଗଲା।

'ତେଲେଙ୍ଗା ଭାଷାରେ ଲେଖାଇ ଓଡ୍ର ଲୋକେ ଦାଖଲ କରିବା ଅର୍ଜିମାନଙ୍କରେ ଅର୍ଜିଦାରର ତାପର୍ଯ୍ୟ ଜଣା କରିବାରେ ହୁଡିଲା ପରିରେ କେତେକ କଥାର ଦୃଶ୍ୟ ହେଲା। ଅର୍ଜିରେ ଜଣା କରିବାକୁ ଉଦ୍ଦେଶ୍ୟ କରିବା ଭାବ ଫିଟିଯାଇ ତହିଁକି ପ୍ରତ୍ୟକ୍ଷ ବିରୁଦ୍ଧ ହୋଇଥିବା ଭାବ କେତେକ ସଙ୍ଗତିରେ ସମ୍ଭବିଲା। ଓଡ୍ର ଭାଷାରେ ଥିବା ଯାବନ୍ତ ଅର୍ଜି କଚେରିମାନଙ୍କରେ ଦାଖଲ କରି ଘେନିବାର ହେଉଅଛି ବୋଲି ଓ ତେଲୁଗୁ ଲେଖା ହୋଇଥିଲା କୋ ପ୍ରକାର ଶ୍ରଦ୍ଧା କରାଯାଉଅଛି କି ଓଡ୍ରରେ ଲେଖା ହୋଇଥରଲେ ମଧ୍ୟ ତେମନ୍ତ ଏକା ଧ୍ରଦ୍ଧା କରାଯିବ ବୋଲି ସର୍ବସାଧାରଣରେ ଜଣା ହୋଇନାହିଁ।'

ଏହି ସମୟରେ ପ୍ରକାଶିତ ବିଭିନ୍ନ ଚିଠିପତ୍ର, ବିଜ୍ଞପ୍ତି, ସମନ ଆଦି କିଭଳି ଜାଣିଶୁଣି ତ୍ରୁଟିପୂର୍ଣ୍ଣ ଭାବରେ ସର୍ବସାଧାରଣ ପାଇଁ ପ୍ରକାଶ କରାଯାଇଥିଲା, ତାହାର ଏକ ଦୃଷ୍ଟାନ୍ତ ଗଞ୍ଜାମ ଗେଜେଟରେ ପ୍ରକାଶିତ ଏକ ଓଡିଆ ବିଜ୍ଞପ୍ତିର ଅବିକଳ ରୂପ ନିମ୍ନରେ ଦିଆଗଲା।

'ରଇତମାନେ ଆପଣା ପଟ୍ଟାମାନଙ୍କରେ ଲାଗିଥିବା ସରକାରି ଭୂମି ଆସନ୍ତା ବରଷକୁ ଛାଡିଦେବାକୁ ତାପର୍ଯ୍ୟ ଥିବା

ସରିକି ଏପ୍ରେଲ ମାସ ୩୦ ତାରିଖକୁ ଭିତରେ ସେ ଭୂମିମାନଙ୍କ ନମ୍ବର ନାମ ଆପଣାର ତଳେ ଥିବା ସେ ନମ୍ବର ପରାରୁ ବନ୍ଦ ପରିମାଣ ସିସ୍ତୁ ଟଙ୍କା ମଧ ନମୋଦ କରି ଛାଡପତ୍ର ଲେଖି କରଣକାର୍ଯ୍ୟଙ୍କ ସନ୍ତକ ସହିତରେ ତହସିଲଦାରଙ୍କ ଜବାବ ନେବାର ଅଛି। ସଦରକାଳ ଅତିକ୍ରମଣ ହେବା ପକ୍ଷକୁ ସେ ଆସନ୍ତା ବରଷକୁ ଆପଣାର ପଟ୍ଟାଭୂମିମାନଙ୍କୁ ପୂରା ସିସ୍ତୁ ସେଇ ଘେନିମା ପୂଟୀ ରଇତଙ୍କୁ ଛାଡ ହୋଇଯିବ ନାହିଁ।

ଛାଡିଦେବା ଭୁମିମାନେ ଅନ୍ୟତ୍ର ରଇତଙ୍କୁ ଦିଆଯିବ। ଫେରେ ଆପଣଙ୍କୁ ଏକା ଦିଆଇବାର ଅଛି ବୋଲି ଲୋଡିବା ପକ୍ଷକୁ ଅନ୍ୟ ଲୋକଙ୍କ ଦରଖାସ୍ତ ପ୍ରତିକି ଆପଣାର ଦରଖାସ୍ତ ବଳହୀନ ହେବାର ବୋଲି ଜାଣିବାର ଅଛି। ଏ ସଙ୍ଗତି ରଇତ ସମସ୍ତଙ୍କୁ କରଣ କାର୍ଯ୍ୟମାନେ ଉତ୍ତମ କରି ଜଣା କରି ସେଥିକୁ ଅନୁସରି ଅମଳ ଚଳାଉଥିବାର ଅଛି।

ଓଡିଆଭାଷାରେ ସରକାରୀ କାମ ପାଇଁ ବ୍ରିଟିଶ ମହାରାଣୀଙ୍କ ନିର୍ଦ୍ଦେଶ ଠିକ ଭାବରେ କାର୍ଯ୍ୟକାରୀ ନ ହେବାରୁ ବ୍ରହ୍ମପୁର ଜିଲ୍ଲା ପାଠଶାଳାରେ ୨୯.୭.୧୮୭୩ରେ ଓଡିଆ ହିତବାଦିନୀ ସଭାର ଗୁରୁତ୍ୱପୂର୍ଣ୍ଣ ବୈଠକ ବସି ଏହାର ତୀବ୍ର ପ୍ରତିବାଦ କରାଗଲା। ଭାଷା ଆନ୍ଦୋଳନ ଶକ୍ତିଶାଳୀ ହେଉଥିବାରୁ ଉଭୟ ଇଂରେଜ ଓ ତେଲୁଗୁ କର୍ମଚାରୀ ଆତଙ୍କିତ ହୋଇ ଉଠିଲେ। ଯେକୌଣସି ଉପାୟରେ ଓଡିଆ ହିତବାଦିନୀ ସଭାକୁ ଭାଙ୍ଗିବା ସହିତ ଭେଙ୍କଟେଶ୍ୱର ଦେଓଙ୍କ ପ୍ରଭାବ ହ୍ରାସ ପାଇଁ ତାଙ୍କ ବିରୁଦ୍ଧରେ ଷଡଯନ୍ତ୍ର କଲେ। ଏହି ମାଟିର ସବୁ ଜନବିରୋଧୀ ଷଡଯନ୍ତ୍ରର ମୁଖ୍ୟ ନାୟକ ତହସିଲଦାର ଦୀନବନ୍ଧୁ ପଟ୍ଟନାୟକଙ୍କ ଚକ୍ରାନ୍ତରେ କନ୍ଧ ନେତା ପର୍ଶୁରାମ କହଁର ଓ ବ୍ରିଟିଶ ଏଜେଣ୍ଟ ଫୋର୍ବେସଙ୍କ ସାକ୍ଷ୍ୟ ଦ୍ୱାରା କାଟିଙ୍ଗିଆ ଜମିଦାରିରୁ ଭେଙ୍କଟେଶ୍ୱର ଦେଓଙ୍କୁ ୨୫.୪.୧୮୭୪ରେ ଉଚ୍ଛେଦ କରାଗଲା। ଭାଷାକୁ ନେଇ ଏକ ଗଣ ବିଦ୍ରୋହର ସ୍ୱପ୍ନ ଦେଖୁଥିବା ଅନ୍ଧାରୀ ମୂଳକର ସେହି ମାଟିପ୍ରାଣ ସଂସ୍କୃତି ସଂସ୍କାରକ ଭେଙ୍କଟେଶ୍ୱର ଦେଓଙ୍କ ଅର୍ଥନୈତିକ ସ୍ୱାଧୀନତାକୁ ସଂକୁଚିତ କରାଯାଇ ମାତ୍ର ବାର୍ଷିକ ୫୦ଟଙ୍କାର ପେନସନ ମଧରେ ଜୀବିକା ନିର୍ବାହ ପଥକୁ ସୀମିତ କରାଗଲା। ସମ୍ପତ୍ତି ଚାଲିଗଲା ପରେ ନିରୂପାୟ ଶୂନ୍ୟ ଭେଙ୍କେଟେଶ୍ୱର ଓଡିଆ ଆନ୍ଦୋଳନକୁ ଗତିଶୀଳ କରାଇ ନ ପାରିବାରେ ମ୍ରିୟମାଣ ହୋଇ ୧୮୮୩ରେ ଯୁବ ବୟସରେ ଅକାଳ ମୃତ୍ୟୁଲାଭ କଲେ। ଭାଷା ଓ ସଂସ୍କୃତିକୁ ନେଇ ଇଂରେଜ ଶାସକଙ୍କ ବିରୁଦ୍ଧରେ ପ୍ରଥମ କରି ସମଗ୍ର ଓଡିଶାରେ ଆରମ୍ଭ ହୋଇଥିବା ପ୍ରତିବାଦର ସ୍ୱରକୁ ଚାପି ଦିଆଗଲା।

ଏହି ଭାଷା ଓ ଜାତିପ୍ରେମୀ ମହାମନୀଷୀଙ୍କ ଏପରି ଅବସ୍ଥାରେ ବ୍ୟଥିତ ତଥା ଦିଗହରା ହୋଇଥିବା ଉଇଲିୟମ ମହାନ୍ତି ସ୍ୱାଭିମାନୀ ଓଡିଆଙ୍କୁ ଏକତ୍ର କରିବା ଉଦ୍ଦେଶ୍ୟରେ ୧୮୭୬ରେ 'ସ୍ୱଦେଶୀ' ନାମକ ଜାତୀୟତାବାଦୀ ପତ୍ରିକା ଓଡିଆ ଭାଷାରେ ପ୍ରକାଶ କଲେ। ମାତ୍ର ଏହା ନ ଚାଲିବାରୁ ବାଧ ହୋଇ ତିନୋଟି ଭାଷାରେ ପ୍ରକାଶ କଲେ। ଉଗ୍ର ଓଡିଆ ଭାବନା ଏହି ପତ୍ରିକାର ମୂଳମନ୍ତ୍ର ହୋଇଥିବାରୁ ଅଣଓଡିଆଙ୍କ ପ୍ରତିବାଦରେ ଏହାର ଅକାଳ ମୃତ୍ୟୁ ଘଟିଲା।

ଏବେ ଏହି ଐତିହାସିକ ଘଟଣାର ପୁନରାବୃତ୍ତି ପୁଣି ଦେଖାଦେଇଛି। ଭାଷାଭିତ୍ତିକ ପ୍ରଥମ ରାଜ୍ୟ ଓଡିଶାର ଶାସନ ଓଡିଆରେ କରିବା ପାଇଁ ୧୯୫୪ରୁ ଆଜି ପର୍ଯ୍ୟନ୍ତ ଅଚଳ ଥିବା ଭାଷା ଆଇନକୁ ସଚଳ କରିବା ପାଇଁ ଓଡିଆ ଭାଷା ଆନ୍ଦୋଳନ ଚାପରେ ୭ଜଣ ବେସରକାରୀ ସଦସ୍ୟଙ୍କୁ ନେଇ ମନ୍ତ୍ରୀସ୍ତରୀୟ କମିଟି ଗଠନ କଲେ। କମିଟିର ୪ଟି ବୈଠକରେ ପ୍ରାୟ ୧୦ଟି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆଯାଇ ଦୀର୍ଘ ୬୦ବର୍ଷର ଭାଷା ଆଇନ କାର୍ଯ୍ୟକାରୀ କରିବା ବ୍ୟବସ୍ଥା କରାଗଲା। ଓଡିଆଭାଷା ଓ ଜାତିପାଇଁ ନିଜକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିବା ଓଡିଆଭାଷାର ପ୍ରଥମ ଶହୀଦ୍ ଭେଙ୍କଟେଶ୍ୱର ଦେଓଙ୍କ ଓଡିଆ ହିତବାଦିନୀ ସଭାର ସ୍ୱର ଯେପରି ସମୟକ୍ରମେ ସମଗ୍ର ଓଡିଶାବାସୀଙ୍କୁ ଏକତ୍ର କରି ଗଞ୍ଜାମ ସମ୍ମିଳନୀ ଓ ଉତ୍କଳ ସମ୍ମିଳନୀକୁ ଜନ୍ମ ଦେଇଥିଲା, ଠିକ ସେହିପରି ଶାସ୍ତ୍ରୀୟତାର ଭିତ୍ତିରୁ ସୃଷ୍ଟି ହୋଇଥିବା ଓଡିଆ ଆନ୍ଦୋଳନ ସମୟକ୍ରମେ ପୁଣି ଏକ ଗଣ ସଂଗଠନଦ୍ୱାରା ଆନ୍ଦୋଳନ ମାଧ୍ୟମରେ ସମଗ୍ର ରାଜ୍ୟକୁ ବ୍ୟାପିଯାଇ ଓଡିଆରେ ଶିକ୍ଷା, ଶାସନର ସ୍ୱପ୍ନକୁ ନିଶ୍ଚିତ ରୂପେ ପୂରଣ କରିବ।

**ସହାୟକ ପୁସ୍ତିକା**

୧. *O'malley, L.S.S.* "Bengal District Gazetteer : Sambalpur", 1909, p-34-36

୨. *Behara, Dandapani*, "Freedom Movement in the State of Ghumsar in Orissa, 1836-1866", Punthi Pustak, 1984 , PP_ 100-101

୩. ପୃଷ୍ଟି, ସୁବ୍ରତ କୁମାର, ଓଡିଆଭାଷା ସାହିତ୍ୟ ପରିଚୟ, ଏ.କେ ମିଶ୍ର ପବ୍ଲିଶର୍ସ ପ୍ରା.ଲି. କଟକ,୨୦୧୧, ପୃ–୨୩୪–୨୩୫

୪. *Pati , Biswamoy*, "Situating Social History: Orissa, 1800-1997", Orient Blackswan, New Delhi, P-102-103.

୫. ମହାପାତ୍ର, ବାଇକୋଳି, ଓଡିଆ ଆନ୍ଦୋଳନର ଇତିହାସ, ଗୋପବନ୍ଧୁ ସାହିତ୍ୟ ମନ୍ଦିର, କଟକ,୧୯୭୬, ପୃ ୧୮– ୧୯।

୬. *Ghosh, Srikanta* "Law Enforcement in Tribal Areas", p-132, 1987.

୭. *Patnaik, Nihar Ranjan* "Orissa in the First War of Independence" Orissa Review August – 2007, P-14.

୮. *Pati, Biswamoy* "Faith Under Fire", Media House, Delhi, 2008 P-51-52.

୯. *Mishra, Chittaranjan* "Role of Venketeshwar Deo on Odia", Odisha Review-April 2016, PP-70-72.

ସଦସ୍ୟ ସଚିବ
'ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା'
ଘର କ୍ରମାଙ୍କ – ୩ ଆର ୯
ବକ୍ସି ଜଗବନ୍ଧୁ ବିଦ୍ୟାଧର ନଗର
ଭୁବନେଶ୍ୱର–୧୫

# ସେହି ମାଆକୁ ପ୍ରଣାମ

**ନିବେଦିତା ଭଞ୍ଜ**

ଉତ୍କଳ ଭୂଇଁରେ ଜନମ ଆମର
କୋଟି ପୁଣ୍ୟବଳେ ପାଇଛୁ ତା'କୋଳ
ତା'ପାଣି ପବନେ ଗଢା ଏ ଜୀବନ
ଦୃଷ୍ଟିରେ ଭରିଛ ଶୋଭା ସନ୍ଦର୍ଶନ... ।

ବିମୋହିତ କରେ ତା' ପ୍ରକୃତି ରାଜି
ପତ୍ର ପୁଷ୍ପ ଫଳେ ସାଜିଛି ପ୍ରକୃତି
ଜଳ ସ୍ଥଳ ବନ ପର୍ବତ ଆକାଶ
ନବୀନ ନୀରଦ ମେଖଳା ପଣତ... ।

କେତେ ନଦନଦୀ ବିଶାଳ ଉଦଧି
ଅପୂର୍ବ ଆହ୍ଲାଦେ ଗାଏ ତବ ସ୍ତୁତି
କଳ କଣ୍ଠ କଣ୍ଠେ ପ୍ରଭାତ ପ୍ରସ୍ତୁତି
ଉଷାର ଆଲୋକେ ମାଆର ଆଳତୀ... ।

ତୋର ପ୍ରାଣ କେନ୍ଦ୍ରେ ନୀଳାଦ୍ରି ମଣ୍ଡଳ
ତା' ମଧ୍ୟେ ବିରାଜ ପ୍ରଭୁ ଆଦି ମୂଳ
କେତେ ଗଉରବ କେତେ ସଉରଭ
ଭକତି ମୁକତି ଚଉବର୍ଗ ଭର୍ତ୍ତି
ଚକ୍ରେ ଉଡଇ ବାନା ଚଞ୍ଚଳ... ।

ଉତ୍ତ୍ର କାରିଗର ନିର୍ମାଣ ଚାତୁରୀ
ଦେଇଛି ସେ ଦେହେ ଚାରୁକଳା ଭରି
କେତେ କଥା କେତେ ଗାଥା
ଜାଗଇ ରୋମାଞ୍ଚ ଭାବନାର ଉତ୍ସ
କେତେ ବୀର ଧୀର ଗଢିଛି ଏ ଦେଶ... ।

ଯେ ଦେଶେ ଧଉଳି ଖଣ୍ଡ ଉଦୟଗିରି
ବଉଦ୍ଧ କୀରତି ଶୋଭେ ଚଉକତି
ଶିକ୍ଷା ଓ ସଂସ୍କୃତି ସମନ୍ୱୟ ଧର୍ମ
ଝଙ୍କାର ତୋଳୁଛି ଦେଶବାସୀ ପ୍ରେମ
ସେହି ମାଆକୁ ଆମର ପ୍ରଣାମ
ସେହି ମାଆକୁ ଆମର ପ୍ରଣାମ.. ।

୮୬, ସତ୍ୟନଗର, ଭୁବନେଶ୍ୱର

# ଓଡ଼ିଆ ଭାଷାର ଶାସ୍ତ୍ରୀୟତା

ପ୍ରଫେସର (ଡଃ) ନଟବର ଶତପଥୀ

୨୦୦୨ ମସିହାରେ ଭାରତ ସରକାର ପ୍ରାଚୀନ କେତୋଟି ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାର ବିଧି ଗ୍ରହଣ କରିଲେ। ପ୍ରଥମେ ଦୃଷ୍ଟି ଥିଲା ସଂସ୍କୃତ ଓ ତାମିଲ ଭାଷା ଉପରେ । ସଂସ୍କୃତକୁ ନେଇ ବିବାଦ କମ୍ । ତାମିଲ ଭାଷାଭାଷୀମାନେ ଊନବିଂଶ ଶତକ (ପ୍ରାୟ ୧୯୦୨)ରୁ ସଂସ୍କୃତ ପରି ପ୍ରାଚୀନ ଓ ସମୃଦ୍ଧ ବୋଲି ଦାବି କରି ଆସିଥିଲେ। ଏହାର ଯୁକ୍ତି ଯଥାର୍ଥ । କାରଣ ଭାରତର ସଭ୍ୟତା ଓ ସଂସ୍କୃତିରେ ଉଭୟ ସଂସ୍କୃତ ଓ ତାମିଲ (ବା ଦ୍ରାବିଡ଼ ଗୋଷ୍ଠୀ) ଏକ ପ୍ରକାର ଭୂମିକା ପ୍ରସ୍ତୁତ କରି ଆସିଛନ୍ତି । ସଂସ୍କୃତ ସପକ୍ଷରେ ବେଦ, ଦ୍ରାବିଡ଼ ସପକ୍ଷରେ ହଜି ଯାଇଥିବା ମହେଞ୍ଜୋଦାର, ହରପ୍ପା। ଏହାକୁ ମୂଳ କରି ପ୍ରାଚୀନତା ଓ ଶାସ୍ତ୍ରୀୟତା ପ୍ରସଙ୍ଗର ବହୁ ଚର୍ଚ୍ଚା ହୋଇଛି । ଭାରତର କେଉଁ ଭାଷା ଶାସ୍ତ୍ରୀୟତାର ସମ୍ମାନ ଯୋଗ୍ୟ, ତାହା ନିରପେକ୍ଷ ସଂସ୍କାର ବିଚାର ଉପରେ ଛାଡ଼ି ଦିଆ ନଯାଇ ପ୍ରାଦେଶିକ ସ୍ତରରେ ବିଚାର ବିମର୍ଶ ପାଇଁ ଛାଡ଼ି ଦିଆଯାଇଛି। ଯେଉଁ ପ୍ରଦେଶ ପାରିଲା ସେ ତା'ର ଯୁକ୍ତି ଯେତେ ନୁହେଁ ତତୋଧିକ ରାଜନୈତିକ ପ୍ରଭାବ ବଳରେ ଶାସ୍ତ୍ରୀୟତା ଗଣ୍ଠିଲିଟି ମୁଣ୍ଡରେ ଥୋଇ ଦିଲ୍ଲୀ ଦରବାରରୁ ଫେରିଲା । ଏହି ବିଚାରରେ ପ୍ରଥମେ ତାମିଲ, (୨୦୦୪) ଦ୍ୱିତୀୟେ ସଂସ୍କୃତ (୨୦୦୫), କନ୍ନଡ ଓ ତେଲୁଗୁ (୨୦୦୮), ମାଲୟାଲାମ(୨୦୧୨) ଶାସ୍ତ୍ରୀୟତା ଲାଭ କଲେ । ଓଡ଼ିଆ ଭାଷା ଏହି କ୍ରମରେ କେତେ ଯୋଗ୍ୟ ତା'ର ବିଚାର ଓଡ଼ିଆମାନଙ୍କ ଉପରେ ପଡ଼ିଛି । କିନ୍ତୁ ଏଠାରେ ଆବଶ୍ୟକ ଦୁଇଟି ଅଭାବ ଶାସ୍ତ୍ରୀୟତା ଲାଭ ପାଇଁ ଥିଲା ଆଡି ପରି । ପ୍ରଥମତଃ ଭାଷା ବିଚାର କ୍ଷେତ୍ରରେ ବୌଦ୍ଧିକ (ଯାହା ବା ଅଛି ସଂଗଠିତ ନୁହେଁ) ଆଗ୍ରହର ଅଭାବ । ଦ୍ୱିତୀୟତଃ ରାଜନୀତିକ ଇଛାଶକ୍ତି ବା ପ୍ରଭାବ ପକାଇବା ପରି ସାମର୍ଥ୍ୟର ଅଭାବ। ଶାସ୍ତ୍ରୀୟତା ପ୍ରାପ୍ତିରେ ରାଜନୀତିକ ଶକ୍ତିର ପ୍ରଭାବଠାରୁ ବୌଦ୍ଧିକ ଶକ୍ତି ଅଧିକ କାର୍ଯ୍ୟକାରୀ ହୋଇଥାଏ । କାରଣ ପ୍ରଥମଟି କନ୍ଦଳ ପୂର୍ଣ୍ଣ । ଦଳ, କ୍ଷମତା, ସଂଖ୍ୟା, ସହଯୋଗ, ସ୍ୱାର୍ଥର ବିଚାର ଉପରେ ନିର୍ଭର କରେ। କ୍ୱଚିତ୍ ଭାଷାଭାଷୀ ଅଞ୍ଚଳ ଏ ସବୁର ଊର୍ଦ୍ଧ୍ୱ ଉଠି ସାମୂହିକ ଭାବେ ଜାତିର ସ୍ୱାର୍ଥ ଚିନ୍ତା କରନ୍ତି। ଅପର ପକ୍ଷରେ ବୌଦ୍ଧିକତା ହୁଏ ଆଶ୍ରୟ ଯୋଗ୍ୟ। ଓଡ଼ିଆ ଭାଷା ପ୍ରଥମ ଅପେକ୍ଷା ଦ୍ୱିତୀୟର ଆଶ୍ରୟ ନେଇଛି ଏବଂ ରାଜନୀତିକ ଇଚ୍ଛା ଶକ୍ତିକୁ ଜାଗ୍ରତ କରିଛି ।

ଭାରତର ଭାଷା ଗୋଷ୍ଠୀ ଭିତରେ ସଂସ୍କୃତ ସର୍ବପ୍ରାଚୀନ ଭାଷା ବୋଲି ଆମେ ଜାଣିଥିଲୁ । ଅବଶ୍ୟ ଏହା ଏକଦେଶଦର୍ଶୀ ବିଚାର । ସାମ୍ରାଜ୍ୟବାଦୀ ଭାଷାବିତ୍‌ମାନେ ଆମକୁ ଭାଷା, ଭାଷା ପରିବାର, ଭାଷାର ବ୍ୟୁତ୍ପତ୍ତି ବିକାଶ, ଉତ୍ପତ୍ତି ସ୍ଥଳ ବିଷୟରେ ଯାହା ପଢ଼ାଇଲେ ତାକୁ ହିଁ ଭିତ୍ତିକରି ଭାରତର ଭାଷା ସମୂହକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରିଦେଲୁ । ତାହା ହେଉଛି ଆର୍ଯ୍ୟ ପରିବାର–ସଂସ୍କୃତ ଏହି ପରିବାରର ଜନନୀ । ଦ୍ୱିତୀୟଟି ଦ୍ରାବିଡ଼ ଭାଷା ପରିବାର– ଏହାର ଜନନୀ କେଉଁ ଏକ ଅଣଇତିହାସ କାଳର ଭାଷା, ତାକୁ ଠାବ କରିବା ଭାଷାବିତ୍‌ଙ୍କ ପକ୍ଷେ ସମ୍ଭବ ହୋଇନାହିଁ । ତୃତୀୟଟି ଅଷ୍ଟ୍ରିକ୍ ଭାଷା ଗୋଷ୍ଠୀ– ଏଥିରେ ଯାବତୀୟ ଆଦିବାସୀ ଭାଷା ଖୁନ୍ଦା ହୋଇ ଏକ ବୃହତ୍ ପରିବାରର ପରିଚୟ ଦେଲେ । ସ୍ୱାଭାବିକ ଭାବେ ସଂସ୍କୃତ ଓ ଦ୍ରାବିଡ଼ ଭାଷା ପରିବାର ଭାରତବର୍ଷର ଦୁଇ ପ୍ରମୁଖ ଭାଷା ପରିବାର ବୋଲି ଆଜି ଯେଉଁ ଧାରଣା ଉତ୍ପନ୍ନ ହୋଇଛି, ତାହା କେତେ ଯେ ବିଭ୍ରାନ୍ତିକର ଓ ହୀନ ବୁଦ୍ଧିର ଖେଳ ତାହା ବୁଝିବା

ପାଇଁ ଲୋକ ନାହାନ୍ତି । ଦ୍ରାବିଡ଼ ଭାଷା ଗୋଷ୍ଠୀକୁ ପ୍ରାଚୀନ ବୋଲି ଦର୍ଶାଇବାକୁ କେତେକ ମହେଞ୍ଜୋଦାର ହପ୍‌ପା କାଳକୁ ଯୋଡ଼ି ଦିଅନ୍ତି । ଆମ ଜଗନ୍ନାଥଙ୍କୁ ଯେମିତି ବହୁ ପ୍ରାଚୀନ ବୋଲି ଦର୍ଶାଇବାକୁ ପଣ୍ଡିତମାନେ ଋଗ୍ ବେଦର 'ଅଦ୍ଦୋ ଯଦ୍ଦାରୁ ପ୍ଲବତେ...' ମନ୍ତ୍ରଟି ମୁଣିରୁ ବାହାର କରନ୍ତି । ଭାରତବର୍ଷ ବହୁ ଭାଷାର ଦେଶ । ଏତେ ଭାଷା ଭାରତକୁ କେବେ କାହାରିଠୁ ପୃଥକ କରି ନ ଥିଲା । ବହୁ ଖଣ୍ଡଖଣ୍ଡରେ ରାଜନୀତି, ଶାସନ ଓ ସଂସ୍କୃତିର ଭିନ୍ନତା ସତ୍ତ୍ୱେ ଭାରତର ଆତ୍ମା ଯେମିତି ଥିଲା ଏକ । କିନ୍ତୁ ଏବେ ଏଇ ବିଂଶ ବା ଏକବିଂଶ ଶତକରେ ବିଦ୍ୱାନ ଓ ରାଜନୀତିକ ନେତାମାନେ ଭାଷାକୁ ବିଚ୍ଛିନ୍ନତାର ମଞ୍ଜି କରିଛନ୍ତି । ସବୁଠାରୁ ବିରୂପ କଥାଟି ହେଉଛି ତାମିଲକୁ ପ୍ରଥମେ ଶାସ୍ତ୍ରୀୟ ମାନ୍ୟତା ଦେବା ପରେ ସଂସ୍କୃତକୁ ସେଥିରେ ଭୂଷିତ କରିବା ରାଜନୀତିର ଗୋଟି ଚାଳନା ପରି ଏଇଠୁ ଆରମ୍ଭ ହେଲା ଭାଷା ରାଜନୀତି । ଓଡ଼ିଆ ଭାଷା ଏତେ ପ୍ରାଚୀନ ବୋଲି ଓଡ଼ିଆମାନଙ୍କର ଧାରଣା ନ ଥିଲା । କାରଣ ଓଡ଼ିଶାରେ ଭାଷା ଅଧ୍ୟୟନ ଗବେଷଣାର ସୁଯୋଗ ଅଭାବ, ମନୋଭାବର ଦୁର୍ବଳତା ଆହୁରି ଏକ ସଂକଟ । ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଓଡ଼ିଆ ଭାଷାତତ୍ତ୍ୱ' ୧୯୨୭ରେ ପ୍ରକାଶ ପାଇଥିଲେ ମଧ୍ୟ ତାହା ଚର୍ଚ୍ଚାକୁ ଆସିଲା ନାହିଁ । ଓଡ଼ିଆ ପଢୁଥିବା ବା ପଢ଼ାଉଥିବା ଲୋକେ ବରଂ ବଙ୍ଗଳା ଭାଷାତତ୍ତ୍ୱ ପଢ଼ି ପରୀକ୍ଷା ବୈତରଣୀ ଡେଇଁଗଲେ, ତା ପରବର୍ତ୍ତୀ କାର୍ଯ୍ୟ ପାଇଁ ହେଲେ ବିମୁଖ । ସେହି ପଣ୍ଡିତମାନେ ଅଦ୍ୟାବଧି ଚର୍ଯାକବିତା ସମୂହକୁ ଓଡ଼ିଆ ଭାଷାର ଆଦ୍ୟ ରୂପ ମନେ କରି ଆସିଥିଲେ ।

ଦୈବାତ୍ ୨୦୦୯ ମସିହାରେ କୌତୁକ ବଶତଃ କୌଣସି ଏକ ସମ୍ବାଦପତ୍ରର ସୂଚନାରୁ ଆମ (ମୁଁ, ଛାତ୍ର ସୁବ୍ରତ କୁମାର ପୃଷ୍ଟି) ମନରେ ଜିଦି ଆସିଲା ଶାସ୍ତ୍ରୀୟ ମାନ୍ୟତା ଦାବି ପାଇଁ ପ୍ରାମାଣିକ ତଥ୍ୟ ଅନୁସନ୍ଧାନ କରିବା । ଯାହା ତଥ୍ୟ ଉପଲବ୍ଧ ହେଲା, ତାହା ଅଳ୍ପ ହେଲେ ବି ପ୍ରାଚୀନତାର ଦୃଢ଼ ପରମ୍ପରା ମିଳିଯାଏ । ଏ ଦିଗରେ ପ୍ରଥମ ଉଲ୍ଲେଖ ଭରତମୁନିଙ୍କ ନାଟ୍ୟଶାସ୍ତ୍ରର 'ଉଡ୍ର ବିଭାଷା' । ଏହି ବିଭାଷାର ଶିଳାଲେଖର ରୂପ ଅଶୋକ ଓ ଖାରବେଳଙ୍କ ଶିଳାଲେଖରୁ ସୂଚନା ମିଳିଯାଏ । ଏହା ଖ୍ରୀ.ପୂ ୩ୟ ଶତକରୁ ୧ମ ଶତକ ମଧ୍ୟରେ ଖୋଦିତ । ଏଇଠାରୁ ଇତିହାସର ଅରୁଣୋଦୟ ।

ସଂସ୍କୃତ ଓ ତାମିଲ କେଉଁଟି ପ୍ରାଚୀନ ? ଏ ପ୍ରଶ୍ନ ଯେତିକି ଅବାନ୍ତର ସେତିକି ଅବିମୃଶ୍ୟକର ଯେ ତାମିଲରେ ବହୁ ସଂସ୍କୃତ ଶବ୍ଦ ମିଳେ ବା ସଂସ୍କୃତରେ ତାମିଲ ଶବ୍ଦ । ଯେମିତି ଓଡ଼ିଆ ଭାଷାରେ ଦ୍ରାବିଡ ଭାଷାର ପ୍ରଭାବ ଦର୍ଶାଇବାକୁ ଯାଇ ପାଶ୍ଚାତ୍ୟ ଭାଷାବିତ୍ କଥା ଛାଡ଼, ଏବକାର ଓଡ଼ିଆ ଭାଷା ଚର୍ଚ୍ଚାକାରମାନେ ଏଣ୍ଡୁରି, ଗିନା, ତାଟିଆ, ପୁର, ପଲ୍ଲୀ ପ୍ରଭୃତିକୁ ଦ୍ରାବିଡ଼ ଶବ୍ଦରେ ଗଣୁଛନ୍ତି । ଓଡ଼ିଆ ଅଧ୍ୟାପକ ବା ଭାଷା ବିଜ୍ଞାନୀମାନେ ଏଇ ଦେଣାକୁ ସ୍ୱୀକାର ନ କରିଲେ ଯେମିତି ବିରାଟ ଭୁଲ ହୋଇଯିବ । ଗୋଟିଏ ଭାଷାକୁ ଜାଣିବାର ଅର୍ଥ ସେ ଭାଷା ଉପରେ ଅନ୍ୟ ଭାଷାର ପ୍ରଭାବକୁ ଖୋଜିବା– ଏପରି ଧାରଣା ସୃଷ୍ଟି ହୋଇଛି । ଭାଷା ଭୂମିଜାତ ଏକ ସଂପଦ । ଆବଶ୍ୟକତାରୁ ତାହାର ଜନ୍ମ ଓ ପ୍ରସାର । ପ୍ରତ୍ୟେକ ଶବ୍ଦ ଗୋଟିଏ ବସ୍ତୁର ବସ୍ତୁତ୍ୱର ବାହକ, ଏଣୁ ଶବ୍ଦ ବସ୍ତୁର ପ୍ରତୀକ । ସେହି ପ୍ରତୀକଟି ଅର୍ଥ ଭିତରେ ପ୍ରସାରିତ ହୁଏ । ଭାଷା ବ୍ୟବହାରକାରୀ ଶବ୍ଦଟି ଉଚ୍ଚାରଣ କରୁ କରୁ ଦଉଡ଼ି ଯାଏ ନାହିଁ ବସ୍ତୁଟି ଦେଖିବାକୁ, ସେ ଅର୍ଥଟି ମାତ୍ର ଖୋଜେ । ଗୋଟିଏ ଭୂମିର ପ୍ରତ୍ୟେକ ଲୋକ ସମାନ ପ୍ରକାର ଆବଶ୍ୟକତା ଭୋଗିଲେ ଯେତେଯେତେ ଶବ୍ଦ ଗଢ଼ି ହୋଇଯାଏ ସେସବୁ ଭିତରେ ସାଦୃଶ୍ୟ ରହିବାରେ ଅସ୍ୱାଭାବିକତା ନାହିଁ । କେତୋଟି ଉଦାହରଣ ନିଆଯାଉ–

| ଓଡ଼ିଆ | ଦ୍ରାବିଡ଼ |
|---|---|
| ଅଡ଼ା–ଆଡ଼ି | ଆଚ୍ଚି/ଅଚ୍ଚମ (ତାମିଲ) |
| | ଆଡ଼୍‌ଡ଼ି / ଅଡ଼ା, ଅଡ଼୍‌ଡ଼ା (କନ୍ନଡ଼) |
| | ଆଡ଼୍‌ଡ଼ି – ତେଲୁଗୁ) |
| ଛେରାପହଁରା | ଏର୍ (ତାମିଲ) \| (ଦେବଦେବୀଙ୍କ |
| | ଏରୁ (ତେଲୁଗୁ) \| (ଚାରିଚକିଆ ଯାନ) |
| ଫୋଟକା | ପୋଙ୍ଗୁ, ବସନ୍ତ ରୋଗ ଅର୍ଥରେ– (ମାଲୟାଲାମ୍) |
| ଚନ୍ଦନ | ଚାନ୍ତୁ, ଚାନ୍ତୁ (ତାମିଲ / ମାଲୟାଲାମ) |
| | ସାଦୁ (କନ୍ନଡ଼) |
| | ଚାଦୁ (ତେଲଗୁ) |

କୁଡ଼ିଆ କୁଡ଼ୀ (ତାମିଲ)

କୁଡ଼ିକା (ତେଲୁଗୁ)

(ଦ୍ର- ଓଡ଼ିଆ ଭାଷାର ସୃଷ୍ଟି ଓ ବିକାଶ, ପୃ-୭୪୮-୪୯- ଡଃ ଉପେନ୍ଦ୍ର ପ୍ରସାଦ ଦଳାଇ)

ଏହିପରି ଅନେକ ଶବ୍ଦର ତାଲିକା ଓଡ଼ିଆମାନେ କରିଛନ୍ତି। ବିସ୍ମୟକର ଯେ ଓଡ଼ିଆ ଫୋଟକା ମାଲୟାଲାମ ପୋଙ୍ଗୁ ଶବ୍ଦ ସହ କିପରି ଯୋଟ ହେଉଛି, ଏହିପରି ଛେରାପହଁରା ସହ ଏର୍ ବା ଏରୁର ଧ୍ୱନିତାତ୍ତ୍ୱିକ ସମତା କେଉଁଠି ? ଏହା ସତ୍ୟ ଯେ ୧୫ ଶତକରେ ଓଡ଼ିଶା ସାମ୍ରାଜ୍ୟର ବିସ୍ତାର ଘଟି ଦକ୍ଷିଣ ଭାରତ ପାନ୍ନାର ଉପକୂଳ ଯାଏ ବ୍ୟାପି ଥିଲା । ସେହି ଦିଗ୍‌ବିଜୟରେ ଭାଗିଦାର କିମ୍ବା ଶାସନ କାଳରେ ସଂପୃକ୍ତ ବ୍ୟକ୍ତିମାନେ ଦକ୍ଷିଣ ଭାରତର ସଂସ୍କୃତି ସଂସ୍ପର୍ଶରେ ଆସି ତାର ଭାଷା ଶିଖିଥିବେ। ସେହି ସୂତ୍ରରେ କେତେ ଶବ୍ଦ ଓଡ଼ିଆକୁ ଆସିଛି। ଏହାର ଅର୍ଥ ନୁହେଁ ଓଡ଼ିଆ ଶବ୍ଦରୁ ବିପୁଳ ପରିମାଣ ଦ୍ରାବିଡ଼ ଜାତ ।

ଭାଷାକୁ ଧରି ସାଂସ୍କୃତିକ ବା ସାହିତ୍ୟିକ ସାମ୍ୟ ବୈଷମ୍ୟ ଅନୁସନ୍ଧାନ କରାଯାଇପାରେ, ମାତ୍ର ରାଜନୀତି କରିବା ପ୍ରବଣତା ଶାସ୍ତ୍ରୀୟ ମାନ୍ୟତା ପରିପ୍ରେକ୍ଷୀରେ ବହୁଗୁଣିତ ହୋଇଥିବା ଲକ୍ଷ୍ୟ କରାଯିବ । ତାମିଲ ଭାଷାକୁ ଏପରି ମାନ୍ୟତା ଦେବା ପଛରେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଭାଷାବିତ୍ ଜର୍ଜ ଏଲ୍ ହାର୍ଟଙ୍କ ବିଚାର ଓ ଶାସ୍ତ୍ରୀୟତାର ସଂଜ୍ଞାଦି ନିରୂପଣ ମୁଖ୍ୟତଃ କାର୍ଯ୍ୟ କରିଛି। ଜର୍ଜହାର୍ଟ କହିଲେ (୧) ଭାଷା ଓ ସାହିତ୍ୟ ହୋଇଥିବ ପ୍ରାଚୀନ ! ସେ ଭାଷାରେ ଥିବ ଏକ ସ୍ୱାଧୀନ ପରମ୍ପରା (୨) ଭାଷାଭିତ୍ତିକ ଐତିହ୍ୟ ଦୃଷ୍ଟିରୁ ତାହାର ନିଜସ୍ୱ ଉତ୍ସଟିଏ ଥିବ, ଅନ୍ୟ କୌଣସି ଭାଷାର ଉତ୍ସରୁ ତାର ଉତ୍ପତ୍ତି ହୋଇ ନଥିବ। (୩) ଭାଷାର ବିକାଶ ସ୍ତରରେ ତାହା ଏକ ନିରବଚ୍ଛିନ୍ନ ସାହିତ୍ୟ ପରମ୍ପରା ସୃଷ୍ଟିରେ ସହାୟକ ହୋଇଥିବ। ତାମିଲ ବହୁ ପ୍ରାଚୀନ ଓ ସମୃଦ୍ଧ ଭାଷା। ଏଥିରେ ମତଦ୍ୱୈଧ ନାହିଁ। ଅନୁରୂପ ସଂସ୍କୃତ ମଧ୍ୟ। କିନ୍ତୁ ଜର୍ଜ ହାର୍ଟଙ୍କ ପ୍ରସ୍ତୁତ ମାନ ସୂଚାଇ ଦିଏ ଯେ ଯେମିତିକି ତାମିଲ ଭାଷାକୁ ଆଖିରେ ରଖି ନିୟମାବଳୀ ପ୍ରସ୍ତୁତ ହୋଇଛି। ତେବେ ଏହି ସାହାପକ୍ଷ ନିୟମାବଳୀ ସହ ତେଲୁଗୁ ଭାଷାଭାଷୀ ଓ ରାଜନୀତିକ ଲୋକମାନଙ୍କର ଆନ୍ଦୋଳନ ଅଚିରେ ସଫଳତା ଆଣି ଦେଲା। ତାମିଲ ପାଇଁ ପ୍ରଣୀତ ନିୟମ ଅନୁସରଣ କରି କନ୍ନଡ଼ ଓ ତେଲୁଗୁ ଭାଷାଭାଷୀ ମଧ୍ୟ ଦାବି କରି ଜୟଯୁକ୍ତ ହେଲେ। ଏହି ତିନୋଟି ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ ପ୍ରସଙ୍ଗକୁ ବିଚାର କରିଲେ ଦେଖାଯିବ ଯେ ଭାଷାର ପ୍ରାଚୀନତା ଓ ସମୃଦ୍ଧି ନିର୍ବିବାଦ ସତ୍ୟ। ମାତ୍ର ତାହା ଏକ ବିଚାର ନୁହେଁ। ବିଚାରର ରହସ୍ୟ ରହିଛି ସେହି ରାଜ୍ୟର ବୁଦ୍ଧିଜୀବୀ ଓ ଜନସାଧାରଣଙ୍କର ବୈଚାରିକ ସଂହତି ଉପରେ, ଦଳ ନିର୍ବିଶେଷରେ ରାଜନୀତିକ ଐକ୍ୟ ଉପରେ, ଏକ ବିଚାର ଏକ ସାଧନା ଓ ଲକ୍ଷ୍ୟ ଉପରେ। କେନ୍ଦ୍ର ସରକାର ସେମାନଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହେଁ ନାହିଁ, ଏହା ଏକ ରାଜନୀତିକ ଉଦ୍ଦେଶ୍ୟ ହୋଇପାରେ ମାତ୍ର ରାଜ୍ୟବାସୀଙ୍କର ଏକ ଚିନ୍ତା ଏକ ଲକ୍ଷ୍ୟ ହେଉଛି ଗୁରୁତ୍ୱପୂର୍ଣ୍ଣ।

ଶାସ୍ତ୍ରୀୟତା ଆସିଲେ ଭାଷାର ସମୃଦ୍ଧି ପାଇଁ ଏକକାଳୀନ ସାହାଯ୍ୟ ସ୍ୱରୂପ ରାଜ୍ୟ ପାଇବ ୧୦୦କୋଟି ଟଙ୍କା। ଏତେ ଟଙ୍କା ଖର୍ଚ୍ଚ କରିବା ପରି ଇଚ୍ଛାଶକ୍ତି ଓ ସାଧନ ପ୍ରଣାଳୀ ସେ ରାଜ୍ୟମାନଙ୍କରେ ପର୍ଯ୍ୟାପ୍ତ ଯାହା ଓଡ଼ିଶାରେ କାଣିଚାଏ ନାହିଁ । ଏହି ପରିମାଣ ଅର୍ଥ ଏକକାଳୀନ ସାହାଯ୍ୟ ସ୍ୱରୂପ ମିଳିବା ମଧ୍ୟ ଏକ ରାଜନୀତିକ ପଦକ୍ଷେପ ଓ ରାଜ୍ୟ ପାଇଁ ଲାଳସା ସୃଷ୍ଟିର ମାଧ୍ୟମ । କେନ୍ଦ୍ର ସରକାର ସେ ରାଜ୍ୟବାସୀଙ୍କ ମନ କିଣିବା ପାଇଁ ଏକ ଉତ୍ସାହକର ପଦକ୍ଷେପ । ଏହା କେନ୍ଦ୍ର ସରକାରଙ୍କର ଭାଷାନୀତିର ଏକତରଫା ନୀତି । କେନ୍ଦ୍ର ଜାଣେ ଦକ୍ଷିଣ ଭାରତର ଏହି ତିନୋଟି ଭାଷାର ପ୍ରାଚୀନତା ଓ ସମୃଦ୍ଧି ସହ ତାଳ ଦେଇ ଅନ୍ୟ ପ୍ରାଦେଶିକ ଭାଷାମାନେ ଲଢ଼ିପାରିବେ ନାହିଁ । ସେଥିପାଇଁ ଜର୍ଜ ହାର୍ଟଙ୍କ ପ୍ରଣୀତ ନିୟମର ସଂସ୍କାର କରାଯାଇ କୁହାଗଲା ଯେ ଗୋଟିଏ ଭାଷା-

୧) ୧୫୦୦-୨୦୦୦ ବର୍ଷର ପ୍ରାଚୀନ ଲିଖିତ ସାହିତ୍ୟ ଓ ଇତିହାସ ଥିବ ।

୨) ଭାଷାର ଐତିହ୍ୟ ଓ ପରମ୍ପରା ପିଢ଼ି ପରେ ପିଢି ଅବ୍ୟାହତ ରହି ଭାଷାର ସମୃଦ୍ଧି ପ୍ରମାଣ କରୁଥିବ ।

୩) ଭାଷାର ଥିବ ଏକ ମୌଳିକ ସାହିତ୍ୟିକ ପରମ୍ପରା ଅର୍ଥାତ୍ ଏଥିରେ ଆହରଣ ପ୍ରକ୍ରିୟା ନଥିବ ।

୪) ଭାଷାର ଶାସ୍ତ୍ରୀୟତା ତା'ର ସାହିତ୍ୟିକ ବିଭବ ଦୃଷ୍ଟିରୁ ଆଧୁନିକତାଠାରୁ ପୃଥକ ହୋଇଥିବ ।

ଏହି ନିୟମଗୁଡ଼ିକୁ ଲକ୍ଷ୍ୟ କଲେ ସହଜରେ ଜଣାଯିବ ଯେ କୌଣସି ଆଧୁନିକ ପ୍ରାଦେଶିକ ଆର୍ଯ୍ୟ ଭାଷା ଯେପରି ଓଡ଼ିଆ, ବଙ୍ଗଳା, ଗୁଜୁରାଟୀ, ମରାଠୀ, ହିନ୍ଦୀ, ଅସମୀୟା ଆଦି ଏଥିପାଇଁ ଯୋଗ୍ୟ ନୁହଁନ୍ତି । ତା'ର କାରଣ–

(୧) ଏ ସମସ୍ତ ଭାଷା ସଂସ୍କୃତ ଉତ୍ସରୁ ଜନ୍ମିଛି ।

(୨) ଏ ସମସ୍ତ ଭାଷାର ଆଦ୍ୟ ସାହିତ୍ୟିକ ରୂପ ପ୍ରାୟତଃ ସଂସ୍କୃତ ସାହିତ୍ୟର ଛାଞ୍ଚରେ ଗଢ଼ି ଉଠିଛି ।

(୩) ଏ ସମସ୍ତ ଭାଷା ବିକାଶ କାଳରେ ସଂସ୍କୃତ ଭିନ୍ନ ପାଶ୍ଚାତ୍ୟ ସାହିତ୍ୟର ସଂସ୍ରବରେ ଆସି ବହୁ ଅନୁକରଣ, ଆହରଣ ଓ ସମୀକରଣରେ ବଳବନ୍ତ ହୋଇଛି ।

(୪) ଏ ସମସ୍ତ ଭାଷାର ଲିଖିତ ପରମ୍ପରା ପ୍ରାଚୀନତା ସହ ଆଧୁନିକତାର ସମନ୍ୱୟ କରିଛି, କୌଣସି କାଳରେ ଏହା ଏକ ବିଚ୍ଛିନ୍ନ ଧାରା ପ୍ରସ୍ତୁତ କରିନାହିଁ ।

(୫) ଏ ସମସ୍ତ ଭାଷାର ଆଞ୍ଚଳିକ କଥନ ପ୍ରଣାଳୀ ସୁସ୍ପଷ୍ଟ ଓ ସେଗୁଡ଼ିକ ମୂଳ ଭାଷା ସହ ନିରନ୍ତରଯୁକ୍ତ, ବିଚ୍ଛିନ୍ନ ନୁହଁନ୍ତି । (ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଭାଷାର ପ୍ରାଚୀନତାର ଦୃଷ୍ଟାନ୍ତ ସ୍ୱରୂପ ବିବିଧ ଆଞ୍ଚଳିକ ରୂପ ଶାସ୍ତ୍ରୀୟତାର ପ୍ରମାଣ ପାଇଁ ଯୋଗ୍ୟ ବିବେଚିତ ହୋଇନାହିଁ ।)

ଶାସ୍ତ୍ରୀୟ ମାନ୍ୟତା ପ୍ରାୟ ସଂସ୍କୃତ ଅତୀତର ଲାଟିନ୍, ଗ୍ରୀକ୍ ଭାଷା ପରି ମୃତ ଅର୍ଥାତ୍ ଏ ଭାଷା ଏବେ କଥିତ ପର୍ଯ୍ୟାୟରେ ନାହିଁ । ଅପର ପକ୍ଷରେ ଏହି ଭାଷାର ପ୍ରାଚୀନତା ସଦୃଶ ଚୀନ୍, ଆରବୀ, ପାର୍ଶୀ ଭାଷା ଏବେ କଥିତ ଭାଷା । ଲାଟିନ୍, ଗ୍ରୀକ୍, ସଂସ୍କୃତରୁ ସମ୍ଭୂତ ବହୁ ଭାଷା ଭିତରେ ଭାଷା ପ୍ରଭାବର ଏକ ବିରାଟ ଓ ନିରବଚ୍ଛିନ୍ନ ପରମ୍ପରା ଗଢ଼ି ଉଠିଛି । ଏଥିପାଇଁ ଏବର ପ୍ରଚଳିତ ଭାଷାରେ ଉତ୍ସ ଭାଷାର ଶବ୍ଦାବଳୀ ବହୁ ପରିମାଣରେ ଉପଲବ୍ଧ ହୁଏ । ଯେପରି ଓଡ଼ିଆରେ ତତ୍ସମ ଶବ୍ଦର ପରିମାଣ ଶତ ପ୍ରତି ୬୦ ବା ଊର୍ଦ୍ଧ୍ୱ । ତଦ୍‌ଭବ ସଂଖ୍ୟା ଅନୁରୂପ ଭାବେ ସୁପ୍ରଚୁଳ । ତାମିଲ ସମେତ ଦକ୍ଷିଣ ଭାରତର ଭାଷାଗୁଡ଼ିକରେ ସଂସ୍କୃତ ଶବ୍ଦର ପରିମାଣ ଶତକଡ଼ା ୭୦ରୁ ଅଧିକ ହେବାରେ ବିସ୍ମୟ କିଛି ନାହିଁ । ଏହାର ଅର୍ଥ ଯଦି ଦ୍ରାବିଡ଼ ସମେତ ପ୍ରାଦେଶିକ ଆର୍ଯ୍ୟ ଭାଷାଗୁଡ଼ିକରେ ସଂସ୍କୃତ ଶବ୍ଦାବଳୀର ପ୍ରାଧାନ୍ୟ ଉପଲବ୍ଧି ହୁଏ ତେବେ କେଉଁ କାରଣରୁ ପ୍ରାଦେଶିକ ଆର୍ଯ୍ୟ ଭାଷାକୁ ଶାସ୍ତ୍ରୀୟତାରୁ ବାଛନ୍ଦ କରାଯିବ ? ଏଠାରେ ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଓଡ଼ିଆ ଭାଷାର ପ୍ରାଚୀନତା ଅଶୋକ ଏବଂ ଖାରବେଳଙ୍କ ଖୋଦିତ ଶିଳାଲିପିରେ ମିଳିପାରେ । ଏହାର କିଛି କାଳ ପୂର୍ବରେ ଭରତ ମୁନିଙ୍କ ନାଟ୍ୟଶାସ୍ତ୍ରରେ ଉଡ୍ରଜା ବୋଲି ଯାହା ଉଲ୍ଲିଖିତ, ତାହା ଉଡ୍ରଜା ପ୍ରାକୃତ ବୋଲି ପରିଚିତ । ଉଡ୍ରଜା ପ୍ରାକୃତ (ସେ କାଳର କଥିତ ଭାଷା) ସହ ଅଶୋକ ଓ ଖାରବେଳ ଏବଂ ପରବର୍ତ୍ତୀ ଅନୁଶାସନର ଭାଷାଗୁଡ଼ିକ ମଧ୍ୟରେ ସାଦୃଶ୍ୟ ନିମ୍ନରେ ଦିଆଯାଉଛି ।

| ୧ | ୨ | ୩ | ୪ |
|---|---|---|---|
| **ଅଶୋକ ପ୍ରଦତ୍ତ ଧଉଳି, ଜଉଗଡ଼ ଖ୍ରୀପୂ ୩ୟ ଶତକ** | **ଖାରଳବେଳ ପ୍ରଦତ୍ତ ହାତୀଗୁମ୍ଫା ଖ୍ରୀ. ୧ମ ଶତକ** | **ମାଧବ ବର୍ମା ପ୍ରଦତ୍ତ ନିବିନା ତାମ୍ର ଶାସନ ଖ୍ରୀ. ୬୧୯ ଭାଷା–ସଂସ୍କୃତ** | **ଦେବଳଦେବ ପ୍ରଦତ୍ତ ବୋଡ଼ା ସୟର ନୃସିଂହନାଥ ମନ୍ଦିର ଖ୍ରୀ.୭ମ** |
| ଅଠସ (ଅର୍ଥସ୍ୟ) | ଅରହଂତାନ (ଅହତ) | ଅଳତାଂଗପୁର | ଓଁ |
| ଅତତ (ଅଜତ–ଯତ୍ର ଯତ୍ର) | ଅଭିସିତ (ଅଭିଷିକ୍ତ) | ଆସ୍ମତ | ଉନସି |
| ଅଥା (ଯଥା) | ଅହତ (ଅର୍ହତ) | ଉତ୍ତରଦିସ | ଗାଙ୍ଗ |

| | | | |
|---|---|---|---|
| ଅଦା (ଯଦା) | ଉବାସ (ଗ) ଉପାସ (?) | କୁଶଳି | ଗୋଣ୍ଡ |
| ଅଂନତ (ଅନ୍ୟତ୍ର) | ଏତିଂ | କୋଣହି | ଚୈତ୍ର |
| ଅଥା (ଅଥ) | ଓଘାଟିତଂ (ଉଦ୍‌ଘାଟିତ) | କୋଟାତ | ଜ୍ୟେଷ୍ଠ |
| ଆସ (ଯସ୍ୟ) | କିଡ଼ିକା (ତା କ୍ରୀଡ଼ିତା) | ଶିଡ଼ିଙ୍ଗହାର | ତୀର୍ଥେ |
| ଆନି (ଯାନି) | କିଡ଼ାପୟତି (କ୍ରୀଡ଼ାୟତି) | ଚନ୍ଦ୍ରାର୍କ | ନଗର |
| ଇମାୟେ (ଏତସ୍ମେ) | କଳିଙ୍ଗ | ଜନପଦାଂ | ନମ |
| କଂ ମନେ (କର୍ମଣେ) | ଖାରବେଳନ | ଦିଘସିଳ (ଦୀର୍ଘଶୀଳ) | ନିସଂଘ |
| ଖଣସି (କ୍ଷଣସି) | ଗଜ | ଦିକ୍ଷିଦ (ଦୀକ୍ଷିତ) | ପର୍ବତେ |
| ଗଛେମ | ଚତୁରଂତ (ଚତୁରଙ୍ଗ) | ଧର୍ମରାଜ | ପାଟଣା |
| ଜାତା (ଜାତ) | ଛତ(ଛତ୍ର) | ତ୍ରକୁଟ (ତ୍ରିକୂଟ) | ପୂର୍ଣ୍ଣିମା |
| ତିମ୍ (ତିଷ୍ୟ) | ଜିନ | ପରମଭଟାରଜ | ଶୁକ୍ଳ |
| ଦ୍ରଖତି (ପଶ୍ୟତି) | ଦଂଡ଼ | ବନରାଜି | ହସ୍ତା |
| ଦୁବାଳ (ଦ୍ୱାର) | ନମୋ | ବିନିଯୁକ୍ତକ | |
| ଧ୍ରୁବଂ (ଧ୍ରୁବ) | ନବମେ | ପୁରସରେଣ (ପୁରଃସରେଣ) | |
| ପନ (ପୁନ) | ନଗରଂ | ପ୍ରବର | |
| ପନତି (ପଣନାତି) | ପଂଚମେ | ବୋଧୟତି | |
| ପଂଚସୁ | ପାଣି | ମାହାରାଜ | |
| ପଟିଞ୍ଜା (ପ୍ରତିଜ୍ଞା) | ପଟିନାଂ | ମାତା | |
| ପଜା (ପ୍ରଜା) | ବିଧି | ମଣ୍ଡଳେ | |
| ପୁତା (ପୁତ୍ରା) | ବସେ | | |
| ମଝଂ (ମଧ୍ୟ) | ବଂଧାପୟତି | | |
| ମେ (ମୁଁ) | ଭାର | | |
| ସୁ | ମହାରାଜେନ | | |
| ହିତସୁଖାୟେ | ସିଧାନଂ (ସିଦ୍ଧାନାଂ) | | |
| | ହଥି (ହାତୀ) | | |

ଏହି ଅଭିଲେଖଗୁଡ଼ିକର ପ୍ରଦତ୍ତ ଶବ୍ଦଗୁଡ଼ିକର ବିଚାର (କ) ଧ୍ୱନି: ଅଠସ- ଅର୍ଥସ୍ୟ, ଥ > ଠ, ର ଲୋପ - 'ଥ' ଓ 'ଠ'- ଅଘୋଷ ମହାପ୍ରାଣ ଧ୍ୱନି । ରୂପାନ୍ତର ଦନ୍ତ୍ୟ (ଥ) ମୂର୍ଦ୍ଧଣ୍ୟ 'ଠ' ରେ । ଅତତ ବା ପାଠାନ୍ତର ଅଜତ । ଯତ୍ର ଯତ୍ର > ଅଜତ / ଅତତ ଯ- ଅ । ସଂସ୍କୃତ ୟ- ଯ > ଅ (ଅନ୍ୟତ୍ର ଯତ୍ - ଅଂ, ତ ଲୋପ, ଆଦି ୟ ସ୍ଥଳେ ଯ) । ଅଥା - ଯଥା, ଯ > ଅ । ଏହିପରି ଅଦା < ଯଦା । ଅଥା < ଅଥ, ଆ ଲୋପ । ଅସ < ଯସ୍ୟ । ଯ- ଅ, ଯ (ସ୍ୟ > ସ) ଲୋପ । ଏହିପରି ବିଚାର କରିଲେ ଧ୍ୱନି ଲୋପ ବା ଧ୍ୱନି ଆଗମ, ଧ୍ୱନି ପରିବର୍ତ୍ତନ ବହୁଳ ଭାବେ ମିଳେ । ତେବେ ପ୍ରସଙ୍ଗରେ ଦେଖାଯିବ ଯେ ସଂସ୍କୃତର ସବୁ ଧ୍ୱନି ବା ବର୍ଣ୍ଣ ଧଉଳି ଜଉଗଡ଼, ହାତୀଗୁମ୍ଫା ଓ ଅନ୍ୟ ଶିଳାଲେଖରେ ଉପଲବ୍ଧ । ଉଚ୍ଚାରଣ ଦୃଷ୍ଟିରୁ ଗୋଟିଏ ଭାଷାର ଧ୍ୱନି ସମୂହ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ, କାରଣ ଶବ୍ଦ ଉଚ୍ଚାରଣ ମାତ୍ରେ ଧ୍ୱନି ଓ ତା'ର ଅର୍ଥଟିଏ ଉତ୍ପନ୍ନ ହୁଏ । ଅନେକ ସମୟରେ ଆମେ ଧ୍ୱନିକୁ ଭୁଲି ଅର୍ଥଟିଏ ଖୋଜୁ ଓ ତାହା ପାଇଗଲେ ସନ୍ତୁଷ୍ଟ ହେଉ । ମାତ୍ର ଭାଷାତାତ୍ତ୍ୱିକ ଅନୁଶୀଳନ ବେଳେ ଧ୍ୱନି ପ୍ରଥମତଃ ବିଚାରକୁ ଆସେ । ଭାଷାର ଧ୍ୱନ୍ୟାତ୍ମକ ବିଭବ କଥନ ଶୈଳୀର ବାହକ ହେତୁ ଭାଷାର ସ୍ୱାତନ୍ତ୍ର୍ୟ ବହନ କରେ । ଏହି ହେତୁ ଦେଖିଲେ-

୧) ଧଉଳି ଓ ଜଉଗଡ଼ ଶିଳାଲେଖରେ 'ର' ଧ୍ୱନିର 'ଳ' ପରିଣତି ଘଟିଥିବା ସ୍ଥଳେ ହାତୀଗୁମ୍ଫା ଓ ଅନ୍ୟ ଶିଳାଲେଖରେ 'ର' ଓ 'ଳ' ଉଭୟର ପ୍ରଚଳନ ଅଛି ।

୨) ଧଉଳି ଓ ଜଉଗଡ଼ ଲେଖରେ 'ଣ' ର 'ନ' ପରିଣତି କିନ୍ତୁ ଅନ୍ୟ ଲେଖରେ 'ଣ' ଓ 'ନ' ଉଭୟର ବ୍ୟବହାର ଅଛି । ଏହା ସୂଚାଇ ଦିଏ ଯେ ଓଡ଼ିଆରେ ଏବେ ଏ ଦୁଇ ଧ୍ୱନି ସ୍ୱତନ୍ତ୍ର ଉଚ୍ଚାରିତ ଓ ବ୍ୟବହୃତ ହେବାର ଉତ୍ସ ହାତୀଗୁମ୍ଫା ଓ ଅନ୍ୟ ଶିଳାଲେଖ ।

୩) 'ଯ' କାର ବହୁ ଶିଳାଲେଖରେ ଅପରିବର୍ତ୍ତିତ ଏବଂ କେତେକରେ 'ଯ' ଓ 'ଅ' ସ୍ୱତନ୍ତ୍ର ଧ୍ୱନିର ସ୍ଥାନ ନେଇଛି କିନ୍ତୁ ଧଉଳି ଓ ଜଉଗଡ଼ ଲେଖରେ 'ଯ' ପରିବର୍ତ୍ତେ 'ଅ' ସ୍ଥାନ ପାଇଛି ।

୪) ଈ ଊ ଋ ଐ ଔ ଙ'ର ଶ ଷ ଏବଂ ଚନ୍ଦ୍ରବିନ୍ଦୁ ଧ୍ୱନିର ବ୍ୟବହାର କଥିତ ଲେଖରେ ମିଳେ ନାହିଁ ।

୫) ଅନୁସ୍ୱାର (ବର୍ଗର ପଞ୍ଚମ ବର୍ଣ୍ଣ ସ୍ଥଳେ) ବ୍ୟବହାର ସର୍ବତ୍ର ବହୁଳ ।

୬) 'ଳ' ଓ 'ଲ' ଉଭୟର ବ୍ୟବହାର ସର୍ବତ୍ର ରହିଛି ।

୭) ଧ୍ୱନି ପରିବର୍ତ୍ତନ- ବ୍ୟାପକ ଯଥା (୧) ଧଉଳି ଜଉଗଡ଼ ଲେଖ ।

ଉ ର ୟ ସ୍ଥଳେ > ଅ- ଯଥା ପୁନଃ > ପନ, କୃତ > କଟ, ମଧମ > ମଝଂ, ୟାରଆ- ଈର୍ଷ୍ୟା> ଇସା

ଐ, ଉ, ଊ, ଈ > ଇ ପରିଣତି- ଯଥା - ତସ୍ମୈ > ତସି, ଗୃହସ୍ଥ > ଗିହିତ୍ଥ, ପୁରୁଷ > ପୁଳିସ (ଇ > ଳ ) , ମୃଗ > ମିଗ / ମିଗେ (ଏ ଆଗମ), ସ୍ତ୍ରୀ > ଇତ୍ଥି (ସଂଲୋପ)

ଓ୍ୱ, ର, ଅ > ର, ଯଥା- ଅତ୍ୱରଣ > ଅତୁଲନା, ପୃଥିବୀ > ପୁଠିବି, ବୃକ୍ଷ > ଲୁଖ (ବ > ଲୁ, ବିଚିତ୍ର ରୂପାନ୍ତର) । ମନୁଷ୍ୟ > ମୁନିସ ।

ଐ, ଇ, ଅଃ > ଏ- ଯଥା-ନିଚୈଃ > ନିଚେ, ଈଦୃଶ > ଏଦିସ, ମୃଗ > ମିଗ ।

କ, କ୍ଷ > ଖ, ଯଥା- ଅକର୍କଶ > ଅଖଖସେ, କ୍ଷୁଦ୍ର > ଖୁଦ୍, କ > ଗ, ଲୋକ > ଲୋଗ, କ୍ଷ > ଘ, ଶକ୍ଷତ > ଶଘତ ।

ୟ, ଜ୍ଞ, ଦ, ଚ > ଜ, ଯଥା - ମୟୂର > ମଯୁଲା, ରାଜ୍ଞ > ଲାଜା, ପ୍ରତିପଦୟେ > ପଟିପଜ୍‌ଟି, ଅଓଳା > ଅଜଳା ।

ଜ୍ଞ > ଞ ଯଥା - ଜ୍ଞାନୀନଂ > ଞଂନିନଂ, ପ୍ରତିଜ୍ଞା > ପଟିଞ୍ଜା ।

ର୍ଥ, ଷ୍ଟ, ଥ > ଠ, ଯଥା - ଅର୍ଥଂ > ଅଠଂ, ତିଷ୍ଠତୁ > ଚିଠିବୁ, ନିରର୍ଥକ > ନିଲଠିୟଂ, ପୃଥିବୀ > ପୁଠବି ।

ଭ, ଏ ଈ > ହ, ଯଥା - ଲଭେୟୁ > ଲହେବୁ, ଏଦୃଶ୍ > ଈଦୃଶ > ହେଦିସ

ଜ୍ଞ, ଣ > ନ, ଯଥା– ଅନୁଣଂ > ଅନନ, ଆଜ୍ଞା > ଆନ ।

**୨) ହାତୀଗୁମ୍ଫା ଶିଳାଲେଖ**

ଆ, ଇ, ଉ, ଋ, ଏ ଓ > ଅ ଯଥା– ମୁକ୍ତ, ମୁତ, ଯମୁନା > ଯମନା, ନୃପ > ନପ, ପଞ୍ଚୋତ୍ତର > ପନତରିଅ।

ଅ, ଉ, ଏ ଋ > ଇ, ଯଥା– ପୁରୁଷ > ପୁରିସ, ହୃଦ > ହିଦ, ରାଜର୍ଷି > ରାଜିସି ।

ଐ, > ଏ, ଯଥା – ଐରେଣ > ଏରେନ, ଐର > ଏର ।

ହ, ଥ > ଧ, ଯଥା – ଇହ > ଇଧ, ପ୍ରଥମ > ପଧମ, ରଥ > ରଧ, ପଥ > ପଧ ।

ଳ, ଦ > ଡ, ଯଥା – ପ୍ରଣାଳୀ > ପଣାଡ଼ି, ବୈଦୁର୍ଯ୍ୟ > ବେଡୁରିୟା ।

କ > ଗ, ଯଥା– ଉପାସକ > ଉବାସଗ
କ୍ଷ > ଖ, ଯଥା– କଳ୍ପବୃକ୍ଷ > କପରୁକ୍ଷ
ଦ > ଜ, ଯଥା – ବିଦ୍ୟା > ବିଜା
ତ > ଟ, ଯଥା – ପ୍ରତି > ପଟି
ନ > ଣ, ଯଥା– ଲୁଣ୍ଠନ > ଲୁଂଠଣ
ଚ > ଦ, ଯଥା – ପଞ୍ଚଦଶ > ପନ୍ଦରସ
ପ > ବ, ଯଥା– ଉପାସକ > ଉବାସକ

୩. ନିବିନା ତାମ୍ର ଶାସନ – ପ୍ରାଚୀନ ଆର୍ଯ୍ୟ ଭାରତୀୟ ଭାଷା– ସଂସ୍କୃତ ଏହି ଅଭିଲେଖର ଭାଷା ହେଲେ ମଧ ତାମ୍ରଶାସନର ଭାଷାରେ ସ୍ଥାନୀୟ ପ୍ରଭାବ ପରିଲକ୍ଷିତ ହୁଏ । ଧ୍ୱନି ରୂପାନ୍ତର ପ୍ରକ୍ରିୟା :

ଇ > ଉ, ତ୍ରିକୁଟ > ତୃକୁଟ
ଋ > ରି, ଋଷି > ରିଷ / ଷି
ନ > ଣ, ବନରାଜି > ବଣରାଇ
ତ > ଜ, ପର୍ବତ > ପବଜି
ର > ଳ, ଅଳତାଳଂପୁର > ଅଳତା ରଂଗପୁର
କ୍ଷ > ଖ, ଦକ୍ଷିଣ > ଦଖିଣ

ଧ୍ୱନିଲୋପ– ଜ ଲୋପ– ରାଜି > ରାଇ,
ଅ ଲୋପ – ଅନ୍ତରଙ୍ଗ > ନ୍ତରଙ୍ଗ

ନିବିନା ଅନୁଶାସନଟି ସଂସ୍କୃତ ହେଲେ ହେଁ ଏଥିରେ ଘଟିତ ଧ୍ୱନିର ରୂପାନ୍ତର ସ୍ଥାନୀୟ ଭାଷାର ଧ୍ୱନୀୟ (ଧ୍ୱନମିକ୍) ପ୍ରଭାବକୁ ଏଡ଼ାଇ ପାରିନାହିଁ । ଅର୍ଥାତ୍ ଖ୍ରୀଷ୍ଟୀୟ ୭ମ ଶତକ ବେଳକୁ 'ଉଡ୍ରଜା ପ୍ରାକୃତ'ର ବୈଶିଷ୍ଟ୍ୟ ବା ଭାଷିତ ଲକ୍ଷଣକୁ ଗ୍ରହଣ କରି ନେଇଛି । ଏଥିରୁ ସୂଚନା ମିଳି ପାରିବ ଯେ ଭାଷା ବିବର୍ତ୍ତନ କ୍ରମେ ତତ୍‌କାଳୀନ ମାଗଧୀ ଅପଭ୍ରଂଶରୁ ଭିନ୍ନ ଏକ ଭାଷା ଜନ୍ମ ନେବା ମୂଳରେ ଥିଲା କଳିଙ୍ଗ ଯୁଦ୍ଧ ଯାହାକି ମଗଧର ଆଧିପତ୍ୟର ସ୍ମାରକୀ । ବିଜିତ ହୋଇ ମଧ କଳିଙ୍ଗବାସୀ ପଦାନତ ହୋଇନାହାନ୍ତି ବରଂ ଖୁବ୍‌ଶୀଘ୍ର କଳିଙ୍ଗର ଔଜ୍ଜ୍ୱଲ୍ୟ ପ୍ରତିଷ୍ଠା ପାଇଁ ଆଗୁସାର ହୋଇଛନ୍ତି ।

୪. ବୋଡ଼ାସମ୍ବର ନୃସିଂହନାଥ ଶିଳାଲେଖ– ଏଥିରେ ସଂଯୁକ୍ତ ସ୍ୱର ଐ (ଚୈତ୍ର) ଏବଂ ସଂଯୁକ୍ତ ବ୍ୟଞ୍ଜନ (ଶୁକ୍ଳ, ପୂର୍ଣ୍ଣିମା) ବ୍ୟବହାର ମିଳେ ।

ଧ୍ୱନି ପରିବର୍ତ୍ତନ –

ଋ > ଇ, ଯଥା– ନୃସିଂହ > ନିସିଂଘ
ଅ > ଓ, ଯଥା– ଗନ୍ଧମାଦ (ର୍ଦ୍ଦ)ନ > ଗୋଣ୍ଡମର୍ଦ୍ଦନ
ନ୍ଧ > ଣ୍ଡ, ଯଥା – ଗନ୍ଧ > ଗୋଣ୍ଡ

କଥିତ ଚାରିଗୋଟି ଶିଳାଲେଖ ଓଡ଼ିଆ ଭାଷାର ପ୍ରତ୍ନରୂପର ସ୍ମାରକୀ ଏବଂ ମାଗଧୀ ଅପ୍ରଭଂଶରୁ ସ୍ୱତନ୍ତ୍ର ଏକ ଅପଭ୍ରଂଶ ବା ପ୍ରାକୃତର ସଂକେତର ବାହକ । ଏହାକୁ ଉଡ୍ରଜା ପ୍ରାକୃତ କୁହାଯାଉଛି । ଉଡ୍ରଜା ପ୍ରାକୃତର ଅନେକ ବୈଶିଷ୍ଟ୍ୟ ଶିଳାଲେଖରେ ପ୍ରତୀକିତ ହେବାର ଦେଖାଯାଏ । ଏଣୁ ଶିଳାଲେଖ ଓ ଉ. ପ୍ରାକୃତ ଭିତ୍ତିରେ ତତ୍‌କାଳୀନ ଭାଷାର କେତେକ ସ୍ୱରୂପ ବା ଲକ୍ଷଣ ନିରୂପଣ କରାଯାଇଛି । ମୁଖ୍ୟତଃ ଧ୍ୱନି ରୂପକୁ ଭିତ୍ତିକରି ଉପର ଅଂଶରେ ତାର ସୂଚନା ପ୍ରଦତ୍ତ ହୋଇଛି ।

ଏବେ ଶବ୍ଦର କଥା । ଶବ୍ଦ ହେଉଛି ସାର୍ଥକ ଧ୍ୱନିଗୁଚ୍ଛ । ଯାହା ଶବ୍ଦର ଅବୟବ ଭିତରେ ପ୍ରକାଶିତ ହୋଇ ଅର୍ଥ ଉତ୍ପନ୍ନ କରେ । ଅର୍ଥାତ୍ ଶବ୍ଦ – ଅର୍ଥ ଯୁକ୍ତ ଧ୍ୱନି । ଶବ୍ଦ ସହ ଅର୍ଥର ନିରନ୍ତରତା । ଶବ୍ଦକୁ ବାକ୍ୟରେ ସ୍ଥାନ ଦେଇ ଆମେ ଭାଷାର

ବୃହତ୍ତର ଏକ ରୂପଗତ ବିଶେଷଣ ଅଙ୍କନ କରିଥାଉ । ଅର୍ଥାତ୍ ଶବ୍ଦର ପଦ ଯୋଗ୍ୟତା, ପଦର ବିଭିନ୍ନ ବ୍ୟବହାରିକ ସ୍ଥାନ ଯଥା ବିଶେଷ୍ୟ, ବିଶେଷଣ, କ୍ରିୟା, କର୍ମ, ଅବ୍ୟୟ, କ୍ରିୟାବିଶେଷଣାଦି । ବ୍ୟାକରଣରେ କର୍ତ୍ତା, କର୍ମ, କ୍ରିୟା, ଲିଙ୍ଗ, ବଚନାଦି । ଏହା ଭାଷାର ରୂପତାତ୍ତ୍ୱିକ ବିଷୟ । ବାକ୍ୟ ଗଠନର ରୀତି, ପଦର ସ୍ଥାନ ଓ ଅନ୍ୱୟ, ବାକ୍ୟର ଭିନ୍ନ ଭିନ୍ନ ରୂପ, କ୍ରିୟାର ଗାଠନିକ ରୂପ ଓ କାଳ ଭେଦରେ ଧାତୁର ରୂପାନ୍ତର ଇତ୍ୟାଦି ପ୍ରତ୍ୟେକ ଭାଷାର ବିଶେଷଣ ବହନ କରେ । ଏହିସବୁ ଦୃଷ୍ଟିରୁ ଶବ୍ଦର ବ୍ୟବହାରିକ ମୂଲ୍ୟ ନିର୍ଦ୍ଧାରଣ କରିବାକୁ ହୁଏ । ସଂପ୍ରତି କଥିତ ଶିଳାଲେଖଗୁଡ଼ିକର ଶବ୍ଦର ଅର୍ଥ ବିଚାରକୁ ନିଆଯାଉ । ଉପର ଅଂଶରେ ଅଶୋକଙ୍କ ଶିଳାଲେଖ ସମେତ ଅନ୍ୟ ତିନୋଟିର କେତେକ ଶବ୍ଦର ତାଲିକା ପ୍ରସ୍ତୁତ ହୋଇଛି । ମୁଖ୍ୟ କେତେକ ଶବ୍ଦର ଅର୍ଥ ବନ୍ଧନୀୟ ଦର୍ଶାଇ ଦିଆଯାଇଛି । ତାହା ମୁଖ୍ୟତଃ ସଂସ୍କୃତ ଶବ୍ଦ । ମୂଳ ଶବ୍ଦ ଓ ସଂସ୍କୃତ ଶବ୍ଦ ମିଶାଇ ଦେଖିଲେ ସ୍ୱତଃ ସ୍ପଷ୍ଟ ହେବ ଓଡ଼ିଆ ଶବ୍ଦଟି କଣ ହେବ । ଓଡ଼ିଆ ଶବ୍ଦ ଭଣ୍ଡାର ତତ୍ସମ ଶବ୍ଦ ବହୁଳ ହେତୁ କଥିତ ଅନୁଶାସନର ଶବ୍ଦଗୁଡ଼ିକ ପରବର୍ତ୍ତୀ କାଳରେ ସଂସ୍କୃତ ରୂପାନ୍ତରିତ ଶବ୍ଦ ସହ ତା'ର ରୂପାନ୍ତର ତଦ୍‌ଭବ ଶବ୍ଦ ଗ୍ରହଣ କରିଛି । ଉଦାହରଣ ସ୍ୱରୂପ –

ଅଠସ  ଅର୍ଥସ୍ୟ > ଅର୍ଥର, ଅତତ / ଅଜତ= ଯତ୍ରଯତ୍ର > ଯେଉଁଠି ଯେଉଁଠି, ଅଥା = ଯଥା > ଯଥା (ସଂସ୍କୃତ ଯ ପ୍ରାକୃତରେ ଅ ହୋଇଛି) । ଅସ = ଯସ୍ୟ > ଯାହାର । ଏହିପରି କମନେ = କର୍ମଣେ > କର୍ମରେ (ସଂସ୍କୃତ କର୍ମ, ପ୍ରାକୃତରେ କମ୍ମ, ଧର୍ମ – ଧମ୍ମ ଓ ପରେ ଦ୍ୱିତ ଲୋପ ହୋଇ କମ, ଧମ – ଅର୍ଦ୍ଧତସମ ଶବ୍ଦ) ପୁତା (କେଉଁଠି କେଉଁଠି ପୁତ୍ତାର ପ୍ରଚଳନ ଅଛି, ଅର୍ଥାତ୍ ଦ୍ୱିତ ହୋଇଛି) ଓଡ଼ିଆରେ ପୁତାର ପ୍ରଚଳନ ପ୍ରାଚୀନ ଏବଂ ଏହା ପ୍ରାକୃତର ସବିଶେଷ ଏକ ଲକ୍ଷଣ । ଏହିପରି କେତେକ ଲକ୍ଷଣ ଅଶୋକଙ୍କ ଧଉଳି ଜଉଗଡ଼ର ଶିଳାଲେଖରୁ ମିଳେ । ପରବର୍ତ୍ତୀ କାଳର ଶିଳାଲେଖରେ ଅହତ = ଅର୍ହତ ସଂସ୍କୃତ ଶବ୍ଦ ଅବିକଳ ଓଡ଼ିଆରେ ପ୍ରଚଳିତ । ଏହିପରି ଓଘାଟିତଂ = ଉଦ୍‌ଘାଟିତ, ଛତ = ଛତ୍ର, କିଡାପୟତି = କ୍ରୀଡ଼ୟତି = କ୍ରୀଡ଼ା କରେ ବା ଖେଳେ, ଦଂଡ଼ = ଦଂଡ଼, ନଗର, ନବମ, ବିଧି, ଜିନ = ଜୀ (ବି) ନ, ମହାରାଜ, ଗଜ, ପାଣି ଆଦି ଶବ୍ଦର ପ୍ରଚଳନ ଅଛି । ଏହା ଉଦାହରଣ ମାତ୍ର । ପରବର୍ତ୍ତୀ ଲେଖର ଶବ୍ଦଗୁଡ଼ିକ ଓଡ଼ିଆର ବା ଓଡ଼ିଆ ନିକଟବର୍ତ୍ତୀ ।

ଓଡ଼ିଆ ଭାଷାର ପ୍ରାଚୀନତାର ଏଇ ଭିତ୍ତିଭୂମି ଉପରେ ପରବର୍ତ୍ତୀ ଶିଳାଲେଖ ଉରୁଜାମ ଶିଳାଲେଖ (୧୦୫୧)ର ଭାଷା ଅନୁଧ୍ୟାନ କରାଯାଉ । ଲେଖ ପାଠ ଏହିପରି –

ସ୍ୱସ୍ତି ସମର ମୁଖାନେକରିପୁ ଦର୍ପପ ମର୍ଦନ ଭୁଜବଳ
ପରାକ୍ରମ
ଗଙ୍ଗାନ୍ୱୟାବଲମ୍ବନ ସ୍ତମ୍ଭ ଶ୍ରୀମଦ୍ ଅନନ୍ତବର୍ମଦେବ ବିଜୟ
ରାଜ୍ୟ ସମ୍ୱସର ୧୬ ତୁଳା ମାସ ଶୁକ୍ଳପକ୍ଷ ଦିନ ପଞ୍ଚମୀ
ସଶିବାରେଂ ୟୁରୁଜା ମୈଲାଣ ଦୟ କରିଲା ପଟସ୍ଥିତି ।
ପୋଲାଖିସ ୟୁରୁଜମସ ଜଣି ଗଉ ପୋଲାଖିସ ତିନ୍ନି
ଭାଗ ୟୁରୁଜମସ ଓକ୍‌କୁ ଭାଗ ହୋନ୍ତ ମାଣିଚଙ୍କୁ ବୋଝ୍ୟ
ଥିଲା ୟୁରୁଜ ମୈତଳଂ ଗଉଁ ପୋଲାଖିଂଲାଣ ଜ୍ୟଭବନ୍ତେ
ନ ଲଭେ ଉଦୁଛିଲେ ଜାଳେ ରାଇଜେ ଜ୍ୟାଂଣ ସହସ୍ର ସୁବର୍ଣ
ଦଣ୍ଡ ପଦୋଜ୍ୟ ଧିଲା ଆନତି ସାବୁରାୟି ଚଉଂ ସମ୍ମୁଖେଂ
ସରସ୍ୱତୀ ବଲ୍ଲଭ ସିଳା ଲେଖିତଂ ଶକାବ୍ଦ ୯୭୩ ।

(ଶିଳାଲେଖଗୁଡ଼ିକ ପଥରରେ ଖୋଦେଇ ହୋଇଥାଏ । ଧାଡ଼ି, ଅକ୍ଷର, ବନାନ ପ୍ରଭୃତିରେ ସ୍ପଷ୍ଟତା ପ୍ରାୟ ନଥାଏ, ମଧ୍ୟ ଅନେକ ଅକ୍ଷର ଅସ୍ପଷ୍ଟ । ପାଠ ଉଦ୍ଧାରକାରୀ ଅନେକତ୍ର ପୂର୍ବପର ବର୍ଣକୁ ମିଳାଇ ପାଠ ପୂର୍ଣ କରିଥାନ୍ତି । କିନ୍ତୁ ତାହା ଛପା ହେବା ବେଳକୁ ମୁଦ୍ରାକାରମାନଙ୍କ ହାତରେ ବିକୃତ ହୋଇଥାଏ । ଏଣୁ ମୂଳପାଠ ଭିନ୍ନ ଆଉ ଏକ ପାଠ ପାଠକ ପାଖରେ ପହଞ୍ଚେ । କଥିତ ଶିଳାଲେଖଟିର ପାଠ ଉଦ୍ଧାର କରିଥିଲେ ପ୍ରଫେସର କୁଞ୍ଜ ବିହାରୀ ତ୍ରିପାଠୀ । ଛପା ହେବାରେ ତାହା ଅନେକ ସ୍ଥାନରେ ବିକୃତ ହୋଇଛି । ପ୍ରଫେସରଙ୍କ ପାଠକୁ ଯେଉଁମାନେ ଉଦ୍ଧାର କରିଛନ୍ତି, ସେମାନଙ୍କ ଲେଖା ମୂଳପାଠ ସହ ମଧ୍ୟ ମିଳୁନାହିଁ । ଓଡ଼ିଶାରେ ଏପରି ମୁଦ୍ରାଯନ୍ତ୍ରୀୟ ବଦମାସୀକୁ ସହି ହୁଏ, ବିନା କାରଣରେ) । ଶିଳାଲେଖର ଓଡ଼ିଆ ରୂପାନ୍ତର ଏହିପରି–

ସମ୍ମୁଖ ସଂଗ୍ରାମରେ ଶତ୍ରୁମାନଙ୍କ ଦର୍ପ ମର୍ଦନକାରୀ ପରାକ୍ରାନ୍ତ ଭୁଜବଳ ଗଙ୍ଗବଂଶାବତଂସ ଶ୍ରୀମଦ ଅନନ୍ତବର୍ମଦେବଙ୍କ ଷୋଡ଼ଶ ବିଜୟ ରାଜ୍ୟ ସଂବତ୍ସରେ

ତୁଳାମାସ ଶୁକ୍ଳପକ୍ଷ ପଞ୍ଚମୀ ଶନିବାର ଦିନ ଭରଜ ମେଲାଣ ଦୟା (ଦାନ) କରିବାର ସ୍ଥାୟୀ ବନ୍ଦୋବସ୍ତ । ପଲାଖିର ଉରୁଜମର (ପ୍ରଜାମାନେ) ଜାଣିବେ । ଗଉ (?) ପଲାଖିର ତିନିଭାଗ ଉରୁଜମର ଏକଭାଗରୁ ମଣିଷଙ୍କୁ ଜଣାଇ ଦିଆଗଲା। ଉରଜମରେ ଗଉ (?) ପଲାଖିର ମେଲଣ ଯେପରି ଭାବେ ହେବ ସେହିପରି କରି ରଖିବାକୁ ସହସ୍ର ସୁବର୍ଣ୍ଣ ଦଣ୍ଡ ପ୍ରଦାନ କରାଗଲା। ଆନତି ସୁବାରାଉ (?) ଚ୍ୟାଉଙ୍କ ସମ୍ମୁଖରେ ସରସ୍ୱତୀ ବଲ୍ଲଭ ସିଳାରେ ଲେଖିଲେ ଶକାବ୍ଦ ୯୭୩ ।

(ମୂଳପାଠ ଓ ଛପା ବହିରେ ଥିବା ପାଠ ଭିତରେ ଫରକ ବହୁତ । ମୂଳ ପାଠରେ ସିଳା, ସକାବ୍ଦ, ସଣୀବାର ଆଦି ଥିଲା। ପରବର୍ତ୍ତୀ ଛପାରେ ବର୍ତ୍ତମାନର ବନାନ ଯଥା ଶିଳା, ଶକାବ୍ଦ, ଶଶି(ନ) ବାର ବୋଲି ଲେଖାଯାଇଛି । ଧନ୍ୟ ଆମର ବିଶ୍ୱସ୍ତତା) ।

ଏହି ଲେଖରେ ପୂର୍ବ ଲେଖର ସବୁ ଧ୍ୱନି ପ୍ରାୟ ମିଳେ। ମଧ୍ୟ ପ୍ରାକୃତର କେତେକ ଅବଶେଷ ମିଳେ। ଯେପରି– ବୋଝ୍ୟ < ବୋଧ୍ୟ, ପଦୋଜ୍ୟ < ପ୍ରଯୁଜ୍ୟ। ମନୁଷ୍ୟ < ମାଣିଂଚ, ରକ୍ଷ < ରାଖ, ଏକଂ < ଓକ୍କୁ ଇତ୍ୟାଦି ।

ସଂସ୍କୃତ ଦୃଷ୍ଟିରେ ଦେଖିଲେ ଏହାର ଧ୍ୱନିଂ ପରିବର୍ତ୍ତନ ବ୍ୟାପକ । ଯେପରି–

ଆ > ଅ, ଯଥା ଦୟା – ଦୟ
ଅ > ଆ, ଯଥା ମେଳନ – ମେଲାଣ
ରକ୍ଷ – ରାଖ
ଇ > ଏ, ଯଥା ଲିଖିତଂ – ଲେଖିତଂ
ଏ > ଐ, ଓ, ଯଥା ଏକଂ – ଓକ୍କୁ
ଶନିବାରେ– ସଣିବାରେଂ
କ୍ଷ > ଖ, ଯଥା ରକ୍ଷ – ରାଖ
ଷ୍ୟ > ଚ, ଯଥା ମନୁଷ୍ୟ – ମାଣିଂଚ
ଧ > ଝ, ଯଥା ବୋଧ – ବୋଝ୍ୟ
ଯ > ଦ, ଯଥା ପ୍ରଯୁଜ୍ୟ – ପଦୋଜ୍ୟ
ନ > ଣ, ଯଥା ମିଳନ – ମେଲାଣ
ମ, ଣ > ନ, ଯଥା ତ୍ରିଣି – ତିଂନି
ମ > ନ, ଯଥା ସମ୍ମୁଖେ – ସନ୍‌ମୁଖେଂ
ଶ > ସ, ଯଥା ଶନିବାର – ସନି (ଣି) ବାରେଂ
ଶିଳା – ସିଳା

ଏହି ଶିଳାଲେଖରେ ମଧ୍ୟଯୁଗୀୟ ଭାରତୀୟ ଭାଷା– ସଂସ୍କୃତର ପ୍ରଭାବ ସହିତ ପ୍ରାକୃତର ପ୍ରଭାବ ଦେଖିବାକୁ ମିଳେ ତଥା ସ୍ୱର, ବ୍ୟଞ୍ଜନ ଏବଂ ସଂଯୁକ୍ତ ବ୍ୟଞ୍ଜନ ଧ୍ୱନିର ବ୍ୟବହାର ଅଧିକ ଦେଖାଯାଏ ।

କଥିତ ଲେଖଗୁଡ଼ିକରୁ ଆମେ ଏଇ ସିଦ୍ଧାନ୍ତରେ ପହଞ୍ଚିବା ଯେ ଅଶୋକଙ୍କ ପ୍ରଦତ୍ତ ଶିଳାଲେଖ ଖ୍ରୀ.ପୂ. ୩ୟ ଶତାବ୍ଦୀଠାରୁ ଓଡ଼ିଆ ଭାଷାର ପ୍ରାକୃତ ଉତ୍ସ ସ୍ପଷ୍ଟ ହୋଇଆସିଛି । ଓଡ଼ିଆ ଭାଷା ସିଧା ସଂସ୍କୃତ ଉତ୍ସରୁ ଉଦ୍‌ଭବ ହେବା ପରିବର୍ତ୍ତେ ପ୍ରାକୃତ ରୂପର ଅତି ନିକଟବର୍ତ୍ତୀ ହୋଇଛି ଏବଂ ସଂସ୍କୃତର ସବୁ ଧ୍ୱନି ଗ୍ରହଣ କରିଛି। ସ୍ମରଣୀୟ ଯେ ସଂସ୍କୃତର ଧ୍ୱନି ପ୍ରାକୃତରେ ପ୍ରାକୃତ ପ୍ରଭାବରେ ଣ, ଳ, ସ, ଞ, ଙ ଧ୍ୱନିଗୁଡ଼ିକ ଓଡ଼ିଆରେ ଅଧିକ ସ୍ପଷ୍ଟ ଓ ପରବର୍ତ୍ତୀ କାଳକୁ ସଂରକ୍ଷଣ କ୍ଷମ ହୋଇଛି। ପ୍ରାକୃତରେ ଦିତ୍ୱ ବର୍ଣ୍ଣ ଯଥା ଦପ୍ପ (ଦର୍ପ), ଦିଗ୍‌ଘ (ଦୀର୍ଘ), ଧମ୍ମ (ଧର୍ମ), ଚକ୍କ (ଚକ୍ର) ପରି ଶବ୍ଦ ପୁଞ୍ଜରେ 'ର' ଧ୍ୱନି ଲୋପ ପାଇଛି । କିନ୍ତୁ ଓଡ଼ିଆରେ ସଂସ୍କୃତ ଉଚ୍ଚାରଣ ପରବର୍ତ୍ତୀ କାଳରେ ରକ୍ଷିତ ହୋଇଛି । ଖ୍ରୀ.ପୂ ୩ୟ ଶତକରୁ ଖ୍ରୀ ୧୦ମ ଶତକ (ଉରଜାମ ଶିଳାଲେଖ) ପର୍ଯ୍ୟନ୍ତ ଦୀର୍ଘ ୧୨ଶହ ବର୍ଷ ଭିତରେ ପ୍ରାକୃତ ଭାଷାର କ୍ରମ ବିବର୍ତ୍ତନ ଘଟି ଓଡ଼ିଆ ଭାଷାର ଜନ୍ମ ନେଇଛି । ଏହି ସମୟ ଭିତରେ ଚର୍ଯ୍ୟା କବିତାର ସ୍ୱରୂପ ଆଉ ଏକ ସ୍ୱାତନ୍ତ୍ର୍ୟର ନିଦର୍ଶନ। ତାହା ଭାଷାର ପ୍ରାଚୀନତା ଓ ସମୃଦ୍ଧିର ଆଉ ଏକ କ୍ରମିକ ପରଣତିମୁଖୀ ବିଭବ। ସେଥିରୁ ଓଡ଼ିଆର ରୂପତାତ୍ତ୍ୱିକ ସଂପଦ ସହଜଲଭ୍ୟ ହୋଇଥାଏ ।

ତେବେ ଓଡ଼ିଆ ଭାଷାର ଆୟୁକାଳ ୨୦୦୦ ବର୍ଷ ବା ତଦୂର୍ଦ୍ଧ୍ୱ ବୋଲି କହିବା ଆଦୌ ଅତ୍ୟୁକ୍ତି ହୋଇନାହିଁ । ଏପରି ପ୍ରାଚୀନତାର ଲକ୍ଷଣ ନେଇ ଓଡ଼ିଆ ବୁଦ୍ଧିଜୀବୀମାନେ ଶାସ୍ତ୍ରୀୟତା ଦାବି କରି ତାହା ପାଇଛନ୍ତି । ଓଡ଼ିଆଏ ଆତ୍ମସ୍ୱାର୍ଥ ପାଇଁ ରାଜନୀତି କରି ଆସିଛନ୍ତି । ଜାତି ଓ ଜାତୀୟତା ପାଇଁ ନୁହେଁ । ଅଶୋକଙ୍କ କାଳରେ ଯେଉଁ ବୀରତ୍ୱ ଓ ସ୍ୱଜାତି ବା ଦେଶପ୍ରାଣତାର ପରିଚୟରୁ ଅଶୋକ ସ୍ତମ୍ଭୀଭୂତ ହେଲେ ସେକାଳର ସ୍ଥାନୀୟ ଭାଷାରେ ଧର୍ମଚକ୍ରର ନିର୍ଦ୍ଦେଶମାନ ଖୋଦିତ କଲେ ତାହା ଓଡ଼ିଆମାନଙ୍କୁ ଉତ୍ସାହିତ କରିବା ପରିବର୍ତ୍ତେ ଅପମାନଜନକ

ହୋଇଥିବ ଓ ସେ ଜାତି ଅପମାନର ପ୍ରତିଶୋଧ ନେବାପାଇଁ ଖାରବେଳ ପରି ଜଣେ ଅତି ଦୁର୍ଦ୍ଧର୍ଷ ନାୟକଙ୍କୁ ଜନ୍ମ ଦେଇଥିବ। ଆଜି ଆଉ ଜଣେ ଖାରବେଳ ଆମର ଆବଶ୍ୟକ, ଯିଏ ବର୍ତ୍ତମାନ ଆସିଥିବା ଆହ୍ୱାନର ସମ୍ମୁଖୀନ ହେବେ ଓ ଓଡ଼ିଆର ପ୍ରାଣରେ ଭାଷା ଦେବତାଙ୍କୁ ପ୍ରତିଷ୍ଠା କରିବେ। ଅତୀତର ଗ୍ଳାନିରୁ ମୁକ୍ତ କରି ଓଡ଼ିଆଙ୍କୁ ଭାଷା ବିକାଶରେ ଶକ୍ତି ଯୋଗାଇବେ।

ସେହି କର୍ତ୍ତବ୍ୟ ହେଉଛି ତାମିଲ ଅନୁସରଣରେ Institute of Classical Odia Studies 'ଶାସ୍ତ୍ରୀୟ ଓଡ଼ିଆ ଗବେଷଣା ସଂସ୍ଥା' ସ୍ଥାପନ। ଏହି ସଂସ୍ଥା ହେବ ସ୍ୱାୟଂଶାସିତ। କେନ୍ଦ୍ରର ଅନୁଦାନରେ ଏହି ସଂସ୍ଥା ଗବେଷଣା କରିବ। ଗବେଷଣାର ପ୍ରମୁଖ କାର୍ଯ୍ୟ ହେବ–

୧) ପ୍ରାଚୀନତାର ସଂରକ୍ଷଣ । ଓଡ଼ିଶାରେ ବ୍ରାହ୍ମୀଲିପି କାଳର (ଜୟସ୍ୱାଲଙ୍କ ମତରେ ଖ୍ରୀ.ପୂ ୧୫୦୦ ସମୟ) ଓଡ଼ିଆ ଲିପି, ଭିତ୍ତିଚିତ୍ର । ଖୋଦିତ ଲିପି ( ଯାହାର ସଂଖ୍ୟା ଯଥାକ୍ରମେ ୫୫ ଓ ୫୭୭୫) ର ସଂରକ୍ଷଣ ।

୨) ଅଦ୍ୟାବଧି ଆବିଷ୍କୃତ ଶିଳାଲେଖର ସଂରକ୍ଷଣ ଓ ଅଧିକ ଅନୁସନ୍ଧାନ ।

୩) ସଂସ୍କୃତଠାରୁ ବିଚ୍ଛିନ୍ନ ପ୍ରାକୃତ ରୂପର ଅନୁସନ୍ଧାନ, ସଂକଳନ ଓ ସଂପାଦନା । କାରଣ ପ୍ରାକୃତ ପରମ୍ପରା ହିଁ ଓଡ଼ିଆ ଭାଷାର ରୂପ ଗଠନରେ ସହାୟକ। ଏହି ଭିତ୍ତିରେ ଓଡ଼ିଆର ବ୍ୟାକରଣ ରୂପ ସଂସ୍କୃତ ବ୍ୟାକରଣଠାରୁ ପୃଥକ।

୪) ପ୍ରାକୃତ ଅଧ୍ୟୟନର ବ୍ୟବସ୍ଥା କରିବା ।

୫) ଓଡ଼ିଆରେ ମୌଳିକ ବ୍ୟାକରଣ ରଚନା ।

୬) ଓଡ଼ିଆ ଭାଷାର ନୂଆ ଇତିହାସର ରଚନା ।

୭) ଜାତି, ସଂସ୍କୃତି, ଭାଷା ପରସ୍ପର ସଂପୃକ୍ତ ବା ପରିପୂରକ ହେତୁ ଏ ସବୁର ନିରନ୍ତର ସମ୍ବନ୍ଧ, ନିରୂପଣ ସହ ସଂସ୍କୃତି ସମାଜ ଆଧାରିତ ନୂଆ ଇତିହାସ ପ୍ରଣୟନ କରିବା ।

୮) ଓଡ଼ିଶାର ବହୁ ଗୋଷ୍ଠୀ / ସଂପ୍ରଦାୟ ଅଞ୍ଚଳର ଭାଷାକୁ ନେଇ ନୂଆ ଶବ୍ଦକୋଷ ପ୍ରଣୟନ ଏବଂ ତଥାକଥିତ ମାନବ ରୂପର ପ୍ରତିରୂପ / ପ୍ରତିଶବ୍ଦ ନିର୍ଦ୍ଧାରଣ କରିବା

୯) ଓଡ଼ିଆ ଭାଷାର ସଂରଚନା ପଦ୍ଧତିରେ ଆଞ୍ଚଳିକ ଭାଷିକ ପ୍ରାରୂପକୁ ସ୍ୱୀକାର କରି ଭାଷାକୁ ସମୃଦ୍ଧ କରିବା ।

୧୦) ଭାଷା ଶିକ୍ଷା କେନ୍ଦ୍ରମାନ ପ୍ରତିଷ୍ଠା କରିବା ।

୧୧) ଶିକ୍ଷାର ଆରମ୍ଭରୁ ଅର୍ଥାତ୍ ୧ମ ଶ୍ରେଣୀରୁ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଦେବା । ଏ ପ୍ରସଙ୍ଗରେ ମନସ୍ତତ୍ତ୍ୱବିଦ୍‌ମାନେ କୁହନ୍ତି ଯେ ଜଣେ ଶିଶୁ ମାତୃଭାଷାରେ ଯେତେ ଦକ୍ଷ ହୁଏ ତା'ପକ୍ଷରେ ବହୁ ଭାଷା ଶିକ୍ଷା ସହଜ ହୁଏ । ଏଣୁ ମାତୃଭାଷା ଶିକ୍ଷା ବହୁ ଭାଷା ଶିକ୍ଷାର ଭିତ୍ତିଭୂମି । ଏହାକୁ ଦୃଢ଼ କରିବାକୁ ହେବ । ବହୁ ଭାଷା ଶିକ୍ଷା ଅତି ଆବଶ୍ୟକ, ମାତ୍ର ତାହା ମାତୃଭାଷାର ସୌଧ ଉପରେ ହିଁ ସଫଳ ହେବ

୧୨) ସରକାରୀ, ବେସରକାରୀ ଅନୁଷ୍ଠାନ, ବାଣିଜ୍ୟ, ନ୍ୟାୟାଳୟ, କୃଷି, ସ୍ୱାସ୍ଥ୍ୟ, ଶାସନ ଓ ସଂଚାର କ୍ଷେତ୍ରରେ ଭାଷା ବ୍ୟବହାର ବାଧ୍ୟତାମୂଳକ କରିବା ଅର୍ଥାତ୍ ଓଡ଼ିଆ ଭାଷାକୁ ରୋଜଗାରକ୍ଷମ କରିବା । ଯେ ଯାଏଁ କ୍ଷମତା କେନ୍ଦ୍ରରେ ଓଡ଼ିଆ ଭାଷା ଅବସ୍ଥାନ କରିପାରି ନାହିଁ, ସେ ଯାଏଁ ଭାଷା ପ୍ରୀତି/ ଆବଶ୍ୟକତା ସମ୍ଭବ ନୁହେଁ, ଶାସ୍ତ୍ରୀୟତା ଲାଭ ହେବ ନିରର୍ଥକ । ଏସବୁ ଉଦ୍ୟମ ନହେଲେ ଓଡ଼ିଆଏ ଉପହସିତ ହେବେ ।



# ଆଧୁନିକ ଓଡ଼ିଶାର ନିର୍ମାତାଗଣ

**ବିକ୍ରମ ମହାରଣା**
**ଦେବାଶିଷ ପଟ୍ଟନାୟକ**
**ସଚ୍ଚିଦାନନ୍ଦ ବାରିକ**

### ଫକୀରମୋହନ ସେନାପତି

ବାଲେଶ୍ୱରର ମଲ୍ଲିକାଶପୁରରେ ୧୮୪୩ ମସିହା ଜାନୁଆରୀ ୧୪ ତାରିଖରେ ଜନ୍ମ । ପିତା ଲକ୍ଷ୍ମଣ ଚରଣ ସେନାପତି ଏବଂ ମାତା ତୁଳସୀ ଦେବୀ । ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱତନ୍ତ୍ର ପରିଚୟ ପ୍ରତିଷ୍ଠା କ୍ଷେତ୍ରରେ ତାଙ୍କର ଅଗ୍ରଗଣ୍ୟ ଭୂମିକା ଥିଲା । ଓଡ଼ିଆ ଜାତୀୟତା ଓ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଭାବେ ଫକୀର ମୋହନ ସେନାପତି ସମ୍ମାନିତ ହୁଅନ୍ତି । ଊନବିଂଶ ଶତାବ୍ଦୀ ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ସେ ଓଡ଼ିଆ ସାହିତ୍ୟର ବିକାଶ ନିମନ୍ତେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଫକୀର ମୋହନଙ୍କ କାହାଣୀ ବାସ୍ତବରେ ଓଡ଼ିଆ ସାହିତ୍ୟର ପୁନଃ ଅଭ୍ୟୁଦୟର କାହାଣୀ । ଏହା ସହ ସେ ଜଣେ ସମାଜ ସଂସ୍କାରକ ଓ ଶିକ୍ଷାବିତ୍, ଯିଏ ସମାଜରେ ପ୍ରଚଳିତ କୁସଂସ୍କାରକୁ ସମାଲୋଚନା ଓ ସୁଧାର କରିବାରେ ତାଙ୍କର ଲେଖନୀ ଚାଳନା କରୁଥିଲେ । ଓଡ଼ିଆ ଉପନ୍ୟାସର ପିତା ହିସାବରେ ତାଙ୍କୁ ଗଣାଯାଏ ।



ସେ ଯଥାର୍ଥରେ ଓଡ଼ିଶାର ଥୋମାସ୍ ହାର୍ଡି ରୂପେ ପରିଗଣିତ ହୁଅନ୍ତି । ୧୮୯୭ ରୁ ୧୯୧୫ ମଧ୍ୟରେ ଲିଖିତ ଫକୀରମୋହନଙ୍କ ଚାରି ଗୋଟି ଉପନ୍ୟାସ ଊନବିଂଶ ଓ ବିଂଶ ଶତାବ୍ଦୀର ସାମାଜିକ ଓ ସାଂସ୍କୃତିକ ଅବସ୍ଥାକୁ ପ୍ରତିବିମ୍ବିତ କରିଥାଏ । ପୁନଶ୍ଚ, ଛ'ମାଣ ଆଠଗୁଣ୍ଠ, ମାମୁଁ ଓ ପ୍ରାୟଶ୍ଚିତ ପରି ୩ ଗୋଟି ଉପନ୍ୟାସ ସାମାଜିକ ଜୀବନର ବାସ୍ତବତାକୁ ସବିଶେଷ ଭାବେ ଦେଖାଇଦିଏ । ଲଛମା ହେଉଛି ଅଷ୍ଟାଦଶ ଶତାବ୍ଦୀ ବେଳର ମରାଠା ଆକ୍ରମଣ ପରିପ୍ରେକ୍ଷୀରେ ଓଡ଼ିଶାର ରାଜନୈତିକ ବିଶୃଙ୍ଖଳା ସଂପର୍କିତ ଐତିହାସିକ ଦସ୍ତାବିଜ୍ । ରେବତୀ, ପେଟେଣ୍ଟ ମେଡିସିନ୍ ଓ ରାଣ୍ଡିପୁଅ ଅନନ୍ତା ପରି ସ୍ମରଣୀୟ କ୍ଷୁଦ୍ର ଗଳ୍ପ ସେ ରଚନା କରିଯାଇଛନ୍ତି । ଫକୀରମୋହନ ମଧ୍ୟ ପ୍ରଥମ ଲେଖକ ଭାବେ ଓଡ଼ିଆ ଭାଷାରେ ଆତ୍ମ ଜୀବନୀ ' ଆତ୍ମ ଜୀବନ ଚରିତ' ଲେଖିଛନ୍ତି ।

ଫକୀରମୋହନଙ୍କ ପ୍ରଥମ ମୌଳିକ କବିତା 'ଉତ୍କଳ ଭ୍ରମଣମ୍' ୧୮୯୨ ମସିହାରେ ଆତ୍ମପ୍ରକାଶ କରିଥିଲା । ଏହା ପ୍ରକୃତରେ କେବଳ ଏକ ଭ୍ରମଣ ପୁସ୍ତକ ନଥିଲା, ବରଂ ଏହା ଓଡ଼ିଶାର ତତ୍କାଳୀନ ଜନଜୀବନରେ ସମସାମୟିକ ପ୍ରମୁଖ ବ୍ୟକ୍ତିତ୍ୱର ଅସାଧାରଣ ଏବଂ ରସାତ୍ମକ ସର୍ବେକ୍ଷଣ ଥିଲା । ତାଙ୍କର ପ୍ରକାଶିତ ଅନ୍ୟାନ୍ୟ ମୌଳିକ କବିତାଗୁଡ଼ିକ ଥିଲା ପୁଷ୍ପମାଳ, ଉପହାର, ପୂଜା ଫୁଲ, ପ୍ରାର୍ଥନା ଏବଂ ଧୂଳି । ଫକୀରମୋହନ ସେନାପତି ଏକାକୀ 'ରାମାୟଣ' ଓ 'ମହାଭାରତ'ର ସମଗ୍ର ଭାଗ ଅନୁବାଦ କରିଥିଲେ । ଏକାକୀ ଉଭୟ 'ରାମାୟଣ' ଓ 'ମହାଭାରତ'ର ଅନୁବାଦ ତଥା ଶବ୍ଦ ବିନ୍ୟାସ କ୍ଷେତ୍ରରେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ନିପୁଣତା ବାସ୍ତବରେ ତାଙ୍କୁ ଓଡ଼ିଶାର 'ବ୍ୟାସକବି' ରୂପେ ଲୋକପ୍ରିୟ କରିପାରିଛି । ତତ୍କାଳୀନ ଦେଶୀୟ ରାଜ୍ୟ ବାମରାରେ ରାଜାଙ୍କ ଦ୍ୱାରା ସେ ମଧ୍ୟ 'ସରସ୍ୱତୀ' ସମ୍ମାନରେ ବିଭୂଷିତ ହୋଇଥିଲେ । ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗର ସ୍ରଷ୍ଟା ଫକୀରମୋହନ 'ଉତ୍କଳ

ଭାଷା ଉନ୍ନତି ବିଧାନି ସଭା' ନାମକ ଏକ ସଂଗଠନର ପ୍ରତିଷ୍ଠାତା ଥିଲେ, ଯାହା ଓଡିଆ ଭାଷାର ପ୍ରଚାରପ୍ରସାର ତଥା ଓଡିଶାର ଲୋକମାନଙ୍କ ମଧ୍ୟରେ ଏକ ନୂତନ ସଚେତନତା ସୃଷ୍ଟି କରିବାକୁ ୧୮୬୭ ମସିହାରେ ଆରମ୍ଭ ହୋଇଥିଲା । ଓଡିଆ ଭାଷା ସାହିତ୍ୟର ଏହି କାଳଜୟୀ ସ୍ରଷ୍ଟା ୧୯୧୮ ମସିହା ଜୁନ୍ ମାସ ୧୪ ତାରିଖରେ ମହାପ୍ରୟାଣ ଲାଭ କରିଥିଲେ ।

### ଉତ୍କଳଗୌରବ ମଧୁସୂଦନ ଦାସ

କଟକ ଜିଲ୍ଲାର ସତ୍ୟଭାମାପୁରରେ ୧୮୪୮ ମସିହା ଅପ୍ରେଲ ମାସ ୨୮ ତାରିଖରେ ଜନ୍ମ । ପିତା ଚୌଧୁରୀ ରଘୁନାଥ ଦାସ, ମାତା ପାର୍ବତୀ ଦେବୀ । କଲିକତା ବିଶ୍ୱବିଦ୍ୟାଳୟରୁ



ଏମ୍.ଏ.ବି.ଏଲ୍. ଡିଗ୍ରୀ ହାସଲ କରିବାରେ ମଧୁସୂଦନ ଦାସ ପ୍ରଥମ ଓଡିଆ ଥିଲେ । ସେ ମଧୁ ବାରିଷ୍ଟର ରୂପେ ଲୋକପ୍ରିୟ ଥିଲେ, ସମ୍ମାନ ପୂର୍ବକ 'ଉତ୍କଳ ଗୌରବ' ରୂପେ ସମ୍ବୋଧିତ ହେଉଥିଲେ । ଓଡିଆମାନେ ପ୍ରଶାସନିକ କର୍ତ୍ତୃପକ୍ଷଙ୍କ ଦ୍ୱାରା ବିଦ୍ୱେଷ ମନୋଭାବର ଶୀକାର ହେଉଥିବା ଦେଖି ସେ ଗଭୀର ଭାବେ ମର୍ମାହତ ହୋଇଥିଲେ । ସେ ବୁଝିଥିଲେ ଯେ, ଓଡିଆମାନଙ୍କ ସ୍ୱାର୍ଥ ରକ୍ଷା ଦିଗରେ ପ୍ରଶାସନିକ ଉଦାସୀନତା ଓଡିଆମାନଙ୍କ ଦୁର୍ଦ୍ଦଶାର କାରଣ । ଓଡିଆମାନେ ତିନିଗୋଟି ବିଭିନ୍ନ ପ୍ରଦେଶରେ ଖେଳାଇ ହୋଇ ରହିଥିବାରୁ ସେମାନେ ଏକତ୍ରିତ ହୋଇପାରୁ ନଥିଲେ । ତେଣୁ ବିଚ୍ଛିନ୍ନ ହୋଇ ରହିଥିବା ଓଡିଆମାନଙ୍କୁ ସଂଗଠିତ ଏବଂ ପ୍ରେରିତ କରି ସେମାନଙ୍କ ଏକତ୍ରୀକରଣ ନିମନ୍ତେ ସେ ଦୃଢ ପଦକ୍ଷେପ ଗ୍ରହଣ କରିଥିଲେ ଏବଂ ଓଡିଆମାନଙ୍କ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଅଭିବୃଦ୍ଧି ନିମନ୍ତେ ବିଚ୍ଛିନ୍ନ ହୋଇ ରହିଥିବା ଓଡିଆ ବସବାସ କରୁଥିବା ଅଂଚଳଗୁଡିକର ଏକତ୍ରୀକରଣ ନିମନ୍ତେ ବ୍ରିଟିଶ୍ ଶାସକଙ୍କ ଉପରେ ଚାପ ପ୍ରୟୋଗ କରିଥିଲେ ।

ଓଡିଆ ଆନ୍ଦୋଳନର ଲକ୍ଷ୍ୟକୁ ପୂରଣ କରିବା ଦିଗରେ ଏହାର ଯୋଜନା ଓ କାର୍ଯ୍ୟକ୍ରମ ପରିଚାଳନା କରିବା ସହ ଓଡିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣରେ ସେ ପ୍ରମୁଖ ଭୂମିକା ଗ୍ରହଣ କରି ବିଭିନ୍ନ ସମସ୍ୟା ସମାଧାନ ପାଇଁ ତଥା ଏଥିନିମନ୍ତେ କର୍ତ୍ତୃପକ୍ଷଙ୍କ ସହ ଆଲୋଚନା ଓ ବୁଝାମଣା ସକାଶେ ଉତ୍କଳ ୟୁନିଅନ୍ ଗଠନ କରିଥିଲେ । 'ଉତ୍କଳ ସଭା'ର ବିଲୋପ ସହ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଗଠିତ ହୋଇଥିଲା । ଏହା ସମସ୍ତ ଓଡିଆ ଭାଷାଭାଷୀ ଅଂଚଳଗୁଡିକୁ ଏକତ୍ରିତ କରି ଉପଯୁକ୍ତ ବ୍ୟବସ୍ଥା ମଧ୍ୟରେ ଗୋଟିଏ ପ୍ରଶାସନ ଅଧୀନକୁ ଆଣିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା ।

ମଧୁସୂଦନ ଦାସଙ୍କ ନିଷ୍ଠା ଓ ପ୍ରେରଣା ବଳରେ ବିଭିନ୍ନ ବର୍ଗର ଲୋକେ ଗୋଟିଏ ରାଜନୈତିକ ମଂଚରେ ଏକତ୍ରିତ ହୋଇଥିଲେ । ଏହା ସଂସ୍କୃତି, ପରମ୍ପରା ଏବଂ ଭାଷା ସହ ଜାତୀୟତାର ଏକ ବିରଳ ଚେତନାର ସଂଗଠିତ ଭାବନାକୁ ଲୋକଙ୍କ ମଧ୍ୟରେ ଉନ୍ମେଷ କରିଥିଲା। ଏହାର ପ୍ରଭାବରେ ଓଡିଶାର ସମସ୍ତେ ପ୍ରଭାବିତ ହୋଇପାରିଥିଲେ । ମଧୁସୂଦନ ଦାସ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ବଳିଷ୍ଠ ନେତୃତ୍ୱକ୍ରମେ ଏହା ଏପରି ଏକ ସ୍ତରକୁ ଛୁଇଁଥିଲା ଯେ, 'ସ୍ୱାଧୀନତା ଆନ୍ଦୋଳନ' ଏବଂ ଓଡିଆ ଆନ୍ଦୋଳନ ଘନିଷ୍ଠ ଭାବେ ସମ୍ବନ୍ଧିତ ହୋଇଯାଇଥିଲା । ବେଳେବେଳେ ଏହି ଦୁଇ ଆନ୍ଦୋଳନର ଗୁରୁତ୍ୱ ପ୍ରସଙ୍ଗରେ ଐକ୍ୟତାନରେ ଅସୁବିଧା ଉପୁଜୁ ଥିଲା। ଏପରି ପରିସ୍ଥିତି ଲୋକମାନଙ୍କୁ ଓଡିଆ ଆନ୍ଦୋଳନ ମଂଚରେ ମଧୁସୂଦନ ଦାସ ଓ ପରେ କଂଗ୍ରେସ ସହ ହାତ ମିଳାଇବାରେ ପ୍ରେରିତ କରିଥିଲା । ଉତ୍କଳ ସମ୍ମିଳନୀ ବା ଉତ୍କଳ ୟୁନିଅନ୍ କନ୍‌ଫେରେନ୍ସ୍, କଂଗ୍ରେସଠାରୁ ନିଜର ସ୍ୱତନ୍ତ୍ର ପରିଚିତି ରକ୍ଷା କରିଥିଲା ।

ଜଣେ ଲେଜିସ୍‌ଲେଟର୍ ଭାବେ ମଧୁସୂଦନ ଦାସ ବେଶ୍ ପ୍ରଶଂସନୀୟ ହେବା ସହ ପଦମର୍ଯ୍ୟାଦାର ଉତ୍ତୁଙ୍ଗ ଶିଖରରେ ପହଂଚି ଥିଲେ । ଏହା ବହୁଳ ଭାବରେ ତାଙ୍କର ତୀକ୍ଷ୍ଣ ଚାତୁରୀ ଓ ପ୍ରେରଣାଦାୟକ ବକ୍ତବ୍ୟ ଯୋଗୁଁ ହିଁ ଥିଲା । ସେ ବିହାର-ଓଡିଶାର ଲୋକାଲ୍ ସେଲ୍ଫ୍ ଗଭର୍ଣ୍ଣମେଣ୍ଟ୍ (ସ୍ୱାୟତ୍ତ ଶାସନ ବିଭାଗ)ର ମନ୍ତ୍ରୀ ରୂପେ ମନୋନୀତ ହୋଇଥିଲେ ।

ମଧୁସୂଦନ ଦାସ ଉପଯୁକ୍ତ ନେତୃତ୍ୱ ନେଇ ତାଙ୍କର ମନ୍ତ୍ରୀତ୍ୱ କାଳରେ ଜନସାଧାରଣ ଓ ସରକାରରେ ପ୍ରଶଂସା ଓ ଭଲ ପାଇବା ହାସଲ କରିପାରିଥିଲେ । ତାଙ୍କର ଲୋକପ୍ରିୟତା ସତ୍ତ୍ୱେ ନୀତିଗତ ଦୃଷ୍ଟିରୁ ସେ ୧୯୨୩ ମସିହାରେ ଇସ୍ତଫା ଦେଇଥିଲେ । ଏହା ତାଙ୍କର ସାଧୁତା ଦିଗକୁ ସୂଚାଇ ଥାଏ । ୧୯୧୭ରେ ଆରମ୍ଭ ହୋଇଥିବା ସାପ୍ତାହିକୀ ଖବର କାଗଜ

'ଦି ଓଡ଼ିଆ'ରେ ତାଙ୍କର ସାମ୍ବାଦିକତାର ଶୈଳୀ ପ୍ରତିବିମ୍ବିତ ହୋଇଥିଲା । ଏହି ସାପ୍ତାହିକୀ ଖବର କାଗଜ ଜରିଆରେ ଓଡ଼ିଆଙ୍କ ସ୍ୱାର୍ଥ ଉପରେ ଆଲୋକପାତ କରିବା ସହ ସରକାରୀ ନୀତିର ସମାଲୋଚନା କରୁଥିଲେ । ସେ ଉଚ୍ଚାରଣ ଓ ଆଚରଣରେ ଗୁରୁତ୍ୱ ଦେଉଥିଲେ ।

ଓଡ଼ିଶାର ବିକାଶ କ୍ଷେତ୍ରରେ ଅଗ୍ରଗଣ୍ୟ ହେବା ସହ ସେ ଏହାର ଦୃଢ଼ ପୃଷ୍ଟପୋଷକ ଥିଲେ। ଉତ୍କଳଗୌରବ ମଧୁସୂଦନ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପ୍ରଥମ ଓଡ଼ିଆ ଭାବେ ସେ ପ୍ରଥମ ମାଷ୍ଟର ଡିଗ୍ରୀ ଓ ପ୍ରଥମ ବି.ଏଲ୍. ଡିଗ୍ରୀ ଲାଭ କରିବା ସହ ଜଣେ ପ୍ରକୃତ ଜନସେବକ ତଥା ଜାତୀୟତାବାଦୀ ରୂପେ ପରିଗଣିତ ହୋଇଥିଲେ । ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଭାବେ ଇଂଲଣ୍ଡକୁ ଦୁଇ ଥର ସମୁଦ୍ର ଯାତ୍ରା କରିବାରେ ଏବଂ ସେଣ୍ଟ୍ରାଲ୍ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ସଦସ୍ୟତା ଆହରଣ କ୍ଷେତ୍ରରେ ସେ ପ୍ରଥମ ଓଡ଼ିଆ ଓ ପ୍ରଥମ ଭାରତୀୟ ମନ୍ତ୍ରୀ ଥିଲେ ।

**ଗଙ୍ଗାଧର ମେହେର**



ସମ୍ବଲପୁରର ବରପାଲିରେ ଏକ ବୁଣାକାର ପରିବାରରେ ୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖର ଶ୍ରାବଣ ପୂର୍ଣ୍ଣିମାରେ ଗଙ୍ଗାଧରଙ୍କ ଜନ୍ମ । ପଂଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଗତ ଯୋଗ୍ୟତା । ଗଙ୍ଗାଧର ମେହେରଙ୍କ ପ୍ରତି ଡ.ମାୟାଧର ମାନସିଂହଙ୍କର ଅଗାଧ ସମ୍ମାନ ରହିଥିଲା ଏବଂ ସେ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ ନିଜ ମତ ରଖି କହିଛନ୍ତି ଯେ, 'ସମସ୍ତେ କହନ୍ତି, ଗଙ୍ଗାଧର ମେହେର୍ ହେଉଛନ୍ତି ଜଣେ ବିରଳ ବ୍ୟକ୍ତିତ୍ୱ ଓ ସମଗ୍ର ଓଡ଼ିଆ ସାହିତ୍ୟ ଶୃଙ୍ଖଳାର କବିମାନଙ୍କ ମଧ୍ୟରେ ଅନନ୍ୟ।' ତାଙ୍କର କାବ୍ୟିକ ସୃଷ୍ଟି ମଧ୍ୟରେ 'ପ୍ରଣୟ-ବଲ୍ଲରି', 'କିଚକ ବଧ', 'ଇନ୍ଦୁମତୀ', 'ଉତ୍କଳ ଲକ୍ଷ୍ମୀ', 'ଅଯୋଧ୍ୟା ଦୃଶ୍ୟ', 'କବିତା କଲ୍ଲୋଳ', 'ଅର୍ଘ୍ୟଥାଳି', 'ଅହଲ୍ୟା ସ୍ତବ', 'ମହିମା ଭାରତୀ ଭାବନା', 'କୁମାର ଜନ୍ମୋତ୍ସବ', 'ଭକ୍ତି ଉପହାର', 'ପଦ୍ମିନୀ', 'କବିତା ମାଳା' ଏବଂ 'କୃଷକ ସଂଗୀତ' ଅନ୍ୟତମ । 'ଆତ୍ମ ଜୀବନୀ', 'ଶ୍ରୀ ନୃପରାଜ ସିଂହ', 'ପୁରାଣ କବି ଫକୀରମୋହନ', 'ସ୍ୱର୍ଗୀୟ କାଶୀନାଥ ପଣ୍ଡା', 'ଏହାକି ପୃଥିବୀର ଶବ୍ଦ?', 'ଶିକ୍ଷିତ' ଏବଂ 'ଶିକ୍ଷାଭିମାନିନୀ' ହେଉଛି ତାଙ୍କର ଗଦ୍ୟ ସୃଷ୍ଟି ।

କବିବର ରାଧାନାଥ ରାୟଙ୍କ ପରି ତାଙ୍କର ସାହିତ୍ୟିକ ସୃଷ୍ଟି ସମ୍ଭାର ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଯୋଗୁଁ ଲୋକପ୍ରିୟତା ହାସଲ କରିପାରିଛି । ଏହା ଅନନ୍ୟ । ଗଙ୍ଗାଧର ଜଣେ 'ପ୍ରକୃତି କବି' ରୂପେ ବେଶ୍ ଜଣାଶୁଣା, ଯିଏ କି, କବି ଶେଲୀ, ବାଇରୋନ୍ ଏବଂ କେଟ୍ସଙ୍କ ସହ ତୁଳନୀୟ ଅଟନ୍ତି । ସେ ଉପେନ୍ଦ୍ର ଭଂଜଙ୍କ ଶୈଳୀ ଓ ଆଦର୍ଶର ଜଣେ ବାର୍ତ୍ତାବାହକ ଥିଲେ । ତାଙ୍କର ଲୋକପ୍ରିୟତା ଆକସ୍ମିକ ନୁହେଁ । ଏହା ପଛରେ ଅନେକ କାରଣ ନିହିତ । କବି ସମ୍ରାଟ ଉପେନ୍ଦ୍ର ଭଂଜଙ୍କ ପରି ତାଙ୍କର କବିତାଗୁଡ଼ିକ ଉଚ୍ଚ ଆଳଙ୍କାରିକ ଶବ୍ଦ, ଅନନ୍ୟ ସଂଯୋଜନା ଶୈଳୀ, ଉପମା, ରୂପକ ଓ ଯଥାର୍ଥ ଶବ୍ଦାବଳୀର ଉପଯୁକ୍ତ ପ୍ରୟୋଗ ସହ ସମୃଦ୍ଧ ଥିଲା । ତାଙ୍କର କବିତାଗୁଡ଼ିକ ଶବ୍ଦ ଓ ଭାଷାର ଛନ୍ଦରେ ନିନାଦୀ ଥିଲା । ଭାରତୀୟ ସାହିତ୍ୟରେ ତାଙ୍କୁ ଜଣେ ମହାନ୍ କବି ଭାବେ ଗଣାଯାଏ । ତାଙ୍କର ମହାପ୍ରୟାଣ ହୁଏ ୧୯୨୪ ମସିହା ଅପ୍ରେଲ୍ ମାସ ୪ ତାରିଖରେ । ତାଙ୍କର କବିତାଗୁଡ଼ିକ ଗୀତ କବିତା, ଭକ୍ତିମୂଳକ, ଦେଶାତ୍ମବୋଧକ, ସଂସ୍କାରକ, ନୈତିକ, କୃଷିଭିତ୍ତିକ, ଶୋକଗୀତ ଏବଂ ପ୍ରକୃତି ବର୍ଣ୍ଣନାରେ ବିଭକ୍ତ କରାଯାଇପାରେ ।

**ଶ୍ରୀରାମଚନ୍ଦ୍ର ଭଂଜଦେଓ**



ମୟୂରଭଂଜ ଗଡଜାତ ରାଜ୍ୟର ଏକ ରାଜକୀୟ ପରିବାରରେ ୧୮୭୦ ମସିହା ଡିସେମ୍ବର ମାସ ୧୭ ତାରିଖରେ ଜନ୍ମ । ଶ୍ରୀରାମଚନ୍ଦ୍ର ୧୮୯୨ ମସିହା ଅଗଷ୍ଟ ମାସ ୧୫ ତାରିଖରେ ସିଂହାସନ ଆରୋହଣ କରିଥିଲେ ।

ମୟୂରଭଂଜ ରାଜ୍ୟର ସାମଗ୍ରିକ ଉନ୍ନତି ନିମନ୍ତେ ସେ କାର୍ଯ୍ୟ କରିଥିଲେ ଏବଂ ଜନସାଧାରଣଙ୍କ ମଙ୍ଗଳ ସକାଶେ ବିଭିନ୍ନ ଜନହିତକର ପଦକ୍ଷେପ ଗ୍ରହଣ କରିଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଏହି ଶାସକଙ୍କ ବନ୍ଧୁ, ଦାର୍ଶନିକ ଏବଂ ତତ୍ତ୍ୱାବଧାରକ ଥିଲେ । ଶ୍ରୀରାମଚନ୍ଦ୍ର ଭାଷା, ସ୍ୱାସ୍ଥ୍ୟ ଏବଂ ପ୍ରଶାସନିକ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଆଣିଥିଲେ । ତାଙ୍କ ଶାସନ ସମୟରେ ରୂପସା-ବାରିପଦା ମଧ୍ୟରେ ନାରୋଗଜ୍ ରେଲ୍‌ୱେ ଆରମ୍ଭ ହୋଇଥିଲା । ସେ ହାଲ୍‌ଡିହା ଓ ହଳଦିଆଠାରେ ୬ ଲକ୍ଷ ଟଙ୍କା ବ୍ୟୟରେ ଦୁଇଟି ବୃହତ ଜଳାଶୟ ନିର୍ମାଣ କରିଥିଲେ । ସେହିପରି ଶିକ୍ଷା କ୍ଷେତ୍ରରେ ତାଙ୍କ ରାଜ୍ୟ ସୀମା ମଧ୍ୟରେ ଥିବା ପ୍ରାଥମିକ ବିଦ୍ୟାଳୟର ସଂଖ୍ୟା ୪୪ ରୁ ୪୦୦ ପର୍ଯ୍ୟନ୍ତ ବଢ଼ାଇ ଦେଇଥିଲେ ।

ଯଦିଓ ସେ ମୟୂରଭଂଜର ରାଜା ଥିଲେ ତଥାପି ସମଗ୍ର ଓଡିଶା ପ୍ରତି ତାଙ୍କର ଅଗାଧ ଭଲ ପାଇବା ଥିଲା । ମଧୁସୂଦନଙ୍କ ନେତୃତ୍ୱରେ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବା ପାଇଁ ସେ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ । ୧୯୦୩ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଶ୍ରୀରାମଚନ୍ଦ୍ର ଅଧ୍ୟକ୍ଷତା କରିଥିଲେ । ତତ୍‌ପରେ ସଂଗଠିତ ଉଦ୍ୟମ ବଳରେ ଓଡିଶା ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେବାର ସ୍ୱପ୍ନ ୧୯୩୬ ମସିହା ଅପ୍ରେଲ ମାସ ୧ ତାରିଖରେ ବାସ୍ତବ ରୂପ ନେଇଥିଲା । ୧୯୧୨ ମସିହା ଫେବୃଆରୀ ମାସ ୧୨ ତାରିଖରେ ଓଡିଶାର ଏହି ବରପୁତ୍ରଙ୍କର ମହାପ୍ରୟାଣ ଘଟିଥିଲା ।

### ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ



୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ ଜନ୍ମ । ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯଥାର୍ଥରେ କହିଥିଲେ ଯେ, 'ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗ ଦେଶର ବିଭିନ୍ନ ଅଞ୍ଚଳରେ ମହାମାନବ ଓ ମହିୟସୀ ମହିଳାଙ୍କ ଜନ୍ମ ଦେଇଥିଲା । ଉତ୍କର୍ଷ, ସାମାଜିକ ସଂସ୍କାର, ଶିକ୍ଷା, ଆଇନ୍ ଏବଂ ସାହିତ୍ୟ କ୍ଷେତ୍ର ଚମତ୍କାର ଥିଲା । ଗୋପବନ୍ଧୁ ଦାସ ଥିଲେ ଏପରି ଜାତି ନିର୍ମାତାଙ୍କ ମଧ୍ୟରୁ ଅନ୍ୟତମ ।'

ଓଡିଶାର ଜନସାଧାରଣଙ୍କ ବର୍ଷ ବ୍ୟାପୀ ଆଶା ଆକାଂକ୍ଷା, ଅଭୀପ୍‌ସା ଓ ପ୍ରାର୍ଥନା ଗୋପବନ୍ଧୁଙ୍କ ଆଗମନ ସହ ପରିପୂରଣ ହୋଇଥିଲା । ସେ ଆଧୁନିକ ଓଡିଶାର ନିର୍ମାତା ଥିଲେ ଏବଂ ଓଡିଶାବାସୀଙ୍କ ପ୍ରେରଣା ଓ ଆଦର୍ଶର ଉତ୍ସ ଥିଲେ । ସେ ନିଜକୁ ଦେଶ ସେବାରେ ସଂପୂର୍ଣ୍ଣ ଉତ୍ସର୍ଗ କରିଥିଲେ, ଏପରିକି ପୀଡିତମାନଙ୍କ ଦୁଃଖ ଦୂର କରିବା ବେଳେ ନିଜର ଏକମାତ୍ର ପୁତ୍ରକୁ ହରାଇଥିଲେ । ସେ ଦାରିଦ୍ର୍ୟ ଓ ଅଶିକ୍ଷାରୁ ମୁକ୍ତ ଏକ ସମାଜ ଚାହୁଁଥିଲେ, ଯେଉଁଠି ମଣିଷ ସମ୍ମାନର ସହ ବଞ୍ଚିପାରିବ ଓ ନିଜର ସଚେତନତା ସ୍ତର ବୃଦ୍ଧିରେ ସମର୍ଥ ହେବ । ଏହି ଲକ୍ଷ୍ୟ ହାସଲରେ ବ୍ରତୀ ହୋଇ ସେ ସାରା ଜୀବନ କାର୍ଯ୍ୟ କରିଚାଲିଥିଲେ ।

ଗୋପବନ୍ଧୁଙ୍କର ଏହି ମହତ ଉଦ୍ଦେଶ୍ୟକୁ ଚିହ୍ନି ତା.୨୮.୦୬.୧୯୨୪ ରିଖରେ ବିଶିଷ୍ଟ ବୈଜ୍ଞାନିକ ତଥା ବଙ୍ଗଳାର ଦେଶପ୍ରେମୀ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ତାଙ୍କୁ 'ଉତ୍କଳମଣି' ଉପାଧିରେ ଭୂଷିତ କରିଥିଲେ । ୧୯୦୯ ମସିହାରେ ସେ ସତ୍ୟବାଦୀ (ଏମ୍.ଇ.ଜାତୀୟ) ବିଦ୍ୟାଳୟ ଆରମ୍ଭ କରିଥିଲେ, ଯେଉଁଥିରେ ପରେ ପଣ୍ଡିତ ନୀଳକଂଠ ଦାସ ଏବଂ ଅନ୍ୟମାନେ ଯୋଗ ଦେଇଥିଲେ । ଏହି ବିଦ୍ୟାଳୟ ଏହାର ଗୁଣାତ୍ମକ ତଥା ଚରିତ୍ର ଗଠନ ମୂଲ୍ୟବୋଧ ଦୃଷ୍ଟିରୁ ଖୁବ୍‌ଶୀଘ୍ର ଲୋକପ୍ରିୟ ହୋଇପାରିଥିଲା । ସେ ମଧୁସୂଦନ ଦାସଙ୍କ ସହ ମିଶି ଉତ୍କଳ ସମ୍ମିଳନୀ ଜରିଆରେ ଏକ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଦାବୀ ହାସଲ କରିବାକୁ ଓଡିଶାର ଜନସାଧାରଣଙ୍କୁ ଜାଗ୍ରତ କରିପାରିଥିଲେ । ସେତେବେଳେ ବିହାର, ବଙ୍ଗଳା ଏବଂ ଅନ୍ୟାନ୍ୟ ପ୍ରଦେଶରେ ବସବାସ କରୁଥିବା ଓଡିଆଙ୍କ ସାଂସ୍କୃତିକ, ସାହିତ୍ୟିକ ତଥା ଭାଷାଭିତ୍ତିକ ସମାନତା ସହ ଓଡିଆଙ୍କ ସ୍ୱତନ୍ତ୍ର ପରିଚିତି ରକ୍ଷା କରିବା ନିମନ୍ତେ ତାଙ୍କର ବାସ୍ତବବାଦୀ ଚିନ୍ତାଧାରା ଦ୍ୱାରା ସେ ଏହାକୁ ଏକ ନୂତନ ରୂପ ଦେଇପାରିଥିଲେ । ସେ ମଧ ଧାଳଭୂମର ବାହାଡାଗୁଡାଠାରେ ଏକ ଓଡିଆ ଏମ୍.ଇ.ବିଦ୍ୟାଳୟ ଆରମ୍ଭ କରିଥିଲେ । ତତ୍‌ପରେ ଓଡିଆ ଭାଷା ଓ ସାହିତ୍ୟର ପ୍ରସାର ନିମନ୍ତେ ସେ ୧୯୧୯ ମସିହା ଅକ୍ଟୋବର ମାସ ୪ ତାରିଖରେ ସାପ୍ତାହିକ 'ସମାଜ' ଆରମ୍ଭ କରିଥିଲେ । ତାଙ୍କର ମରଣଜୟୀ ଶବ୍ଦାବଳୀ ଏବେ ମଧ୍ୟ ଯୁବପିଢିଙ୍କୁ ଉତ୍ସାହିତ କରିଥାଏ ।

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ ପଥେ ଯେତେ ଗାଡ
ପୂରୁ ତହିଁ ପଡି ମୋର ମାଂସ ହାଡ ।'

ସେ ଜଣେ ଅନନ୍ୟ କବି ଥିଲେ । ଜାତୀୟତାବାଦୀ ଚିନ୍ତାଧାରା ସହ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର ପୁରୀ ପ୍ରତି ତାଙ୍କର ପ୍ରେମଭାବ ତାଙ୍କ ରଚିତ କବିତାରେ ଭାବବିହ୍ୱଳତାର ସହ ବର୍ଣ୍ଣିତ ହୋଇଛି ।

'ବନ୍ଦୀର ଆତ୍ମକଥା' ଓ 'ଅବକାଶ ଚିନ୍ତା' ତାଙ୍କର ଅନନ୍ୟ କୃତି । ସେ ଥିଲେ ଜଣେ ବହୁମୁଖୀ ପ୍ରତିଭା, ବିଦ୍ୱାନ, ଜଣେ ସ୍ୱାଧୀନତା ସଂଗ୍ରାମୀ, ଆଧୁନିକ ଓଡିଶାର ନିର୍ମାତା, ଓଡିଆ ଭାଷାର ତ୍ରାଣକର୍ତ୍ତା, ଜଣେ ସମାଜସେବୀ, ଆଦର୍ଶ ଶିକ୍ଷକ, ମାନବପ୍ରେମୀ, ସାମ୍ବାଦିକ, କବି, ଦାର୍ଶନିକ ଏବଂ ଜଗନ୍ନାଥ ସଂସ୍କୃତିର ପ୍ରଚାରକ । ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖରେ ତାଙ୍କର ଦେହାନ୍ତ ଘଟିଥିଲା ।

## ପଣ୍ଡିତ ନୀଳକଂଠ ଦାସ

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ କେତେକ ଉଚ୍ଚ ଶିକ୍ଷିତ ଯୁବକ ଓଡିଶା ମାଟିରେ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ନବଜାଗରଣ ଆଣିବାକୁ ଇଚ୍ଛା ପୋଷଣ କରିଥିଲେ, ସେମାନଙ୍କ ମଧ୍ୟରୁ ପଣ୍ଡିତ ନୀଳକଂଠ ଦାସ ଥିଲେ ଅନ୍ୟତମ । ଅନ୍ୟମାନେ ଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ର । ଏହି ପାଞ୍ଚଜଣ ବନ୍ଧୁ 'ସତ୍ୟବାଦୀ ଯୁଗର ପଞ୍ଚସଖା' ଭାବେ ଜଣାଶୁଣା । ସେମାନଙ୍କ ଯୌବନର ଆଦ୍ୟ ଭାଗରେ ଏହି ପାଞ୍ଚଜଣ ବନ୍ଧୁ ସରକାରୀ ସେବାରେ ଭର୍ତ୍ତି ନହେବାକୁ ତଥା ଦେଶ ସେବା ଏବଂ ସମୃଦ୍ଧିକୁ ସୁନିଶ୍ଚିତ କରିବାକୁ ଶପଥ ଗ୍ରହଣ କରିଥିଲେ ।



ପୁରୀ ଜିଲ୍ଲା ଶ୍ରୀରାମଚନ୍ଦ୍ରପୁର ଗ୍ରାମର ଆନନ୍ଦ ଦାସଙ୍କ ପରିବାରରେ ୧୮୮୪ ମସିହା ଅଗଷ୍ଟ ମାସ ୫ ତାରିଖରେ ଏହି ବରପୁତ୍ର ଜନ୍ମ ଲାଭ କରିଥିଲେ । ଗ୍ରାମ ବିଦ୍ୟାଳୟରେ ତାଙ୍କର ଆଦ୍ୟ ଶିକ୍ଷାଲାଭ ହୋଇଥିଲା । ୧୮୯୯ରେ ସେ ପୁରୀ ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇଥିଲେ । ୧୯୦୯ରେ ସେ ବି.ଏ ପାଶ୍ କଲେ ଏବଂ ତାଙ୍କର ଏମ୍.ଏ. ଓ ବି.ଏଲ୍ ଡିଗ୍ରୀ ନିମନ୍ତେ କଲିକତା ଯାଇଥିଲେ । ୧୯୧୧ରେ କଲିକତାରୁ ପ୍ରତ୍ୟାବର୍ତ୍ତନ ପରେ ପଣ୍ଡିତ ନୀଳକଂଠ ସତ୍ୟବାଦୀ ବିଦ୍ୟାଳୟରେ ଜଣେ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ପରେ ସେ ଲମ୍ବା ଅବଧି ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ । ଏହାପରେ, ସେ ଓଡିଆ ଓ ଦର୍ଶନତତ୍ତ୍ୱରେ ପ୍ରଫେସର ରୂପେ ଯୋଗ ଦେଇଥିଲେ କିନ୍ତୁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ସେ ଏହି ବୃତ୍ତି ତ୍ୟାଗ କରିଥିଲେ । ସେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଜଣେ କାର୍ଯ୍ୟକାରୀ ସଦସ୍ୟ ଏବଂ ସର୍ବଭାରତୀୟ କଂଗ୍ରେସ କମିଟିର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ସମ୍ବଲପୁରରୁ ପ୍ରକାଶ ପାଉଥିବା 'ସେବା' ଶୀର୍ଷକ ଖବରକାଗଜରେ ସେ ସମ୍ପାଦନା କରୁଥିଲେ । ସମ୍ବଲପୁରରେ ନଅ ମାସ ରହିବା ପରେ ସେ ଶ୍ରୀରାମଚନ୍ଦ୍ରପୁର ପ୍ରତ୍ୟାବର୍ତ୍ତନ କରିଥିଲେ । ବ୍ରିଟିଶ୍ ବିରୋଧୀ କାର୍ଯ୍ୟକଳାପ ଅଭିଯୋଗରେ ସେ ୧୯୨୨ ମସିହାରେ ଗିରଫ ହୋଇଥିଲେ ଏବଂ ହଜାରିବାଗ୍ ଜେଲ୍‌ରେ ୬ ମାସ ବନ୍ଦୀ ଜୀବନ ବିତେଇ ଥିଲେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହ ବିଚାରବିମର୍ଷ ପରେ ସେ ସାଧାରଣ ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ । ୧୯୨୩ରେ ସେ ସେଣ୍ଟ୍ରାଲ୍ ଆସେମ୍ବ୍ଲିର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ୧୯୨୬ରେ ସେ ସିମ୍‌ଲା କନ୍‌ଫେରେନ୍ସରେ ଅଂଶଗ୍ରହଣ କରିଥିଲେ । ୧୯୨୮ ମସିହାରେ ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ସେ ଓଡିଶାରେ କଂଗ୍ରେସର ନେତୃତ୍ୱ ଭାର ହାତକୁ ନେଇଥିଲେ । ଲାହୋର କଂଗ୍ରେସ ଅଧିବେଶନର ନିଷ୍ପତ୍ତି ଅନୁଯାୟୀ ସେ ସେଣ୍ଟ୍ରାଲ୍ ଆସେମ୍ବ୍ଲିରୁ ଇସ୍ତଫା ଦେଇଥିଲେ ଓ 'ଲବଣ ସତ୍ୟାଗ୍ରହ'ରେ ଯୋଗ ଦେଲେ ଏବଂ ୬ ମାସ ପର୍ଯ୍ୟନ୍ତ ଜେଲ୍ ଭୋଗିଥିଲେ । ସେ ଅସ୍ପୃଶ୍ୟ ନିବାରଣ ଆନ୍ଦୋଳନ ଆରମ୍ଭ କରି ଦଳିତ ଶ୍ରେଣୀର ସେବାରେ ନିଜକୁ ନିୟୋଜିତ କରିଥିଲେ । ଦ୍ୱିତୀୟ ଥର ପାଇଁ ସେ ସେଣ୍ଟ୍ରାଲ୍ ଆସେମ୍ବ୍ଲିର ସଦସ୍ୟ ରୂପେ ମଧ୍ୟ ନିର୍ବାଚିତ ହୋଇଥିଲେ । ୧୯୩୩ରେ 'ନବ ଭାରତ' ନାମକ ଏକ ମାସିକ ଓଡିଆ ପତ୍ରିକାର ସମ୍ପାଦନା କରିଥିଲେ । ୧୯୩୪ରେ

ମଧୁସୂଦନଙ୍କ ବିୟୋଗ ପରେ ସଂପୂର୍ଣ୍ଣ ଭାର ତାଙ୍କ କାନ୍ଧ ଉପରେ ପଡିଥିଲା ଏବଂ ମହାତ୍ମା ଗାନ୍ଧୀଙ୍କ ପ୍ରଥମ ପର୍ଯ୍ୟାୟ ଓଡିଶା ଗସ୍ତର କାର୍ଯ୍ୟକ୍ରମ ସେ ଆୟୋଜନ କରିଥିଲେ ।

୧୯୩୬ ମସିହାରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କଲା । ପଣ୍ଡିତ ନୀଳକଂଠ ପିସିସି ସଭାପତି ରୂପେ କାର୍ଯ୍ୟ କଲେ । ତାଙ୍କର ସାମର୍ଥ୍ୟପୂର୍ଣ୍ଣ ନେତୃତ୍ୱ ବଳରେ ୬୦ ଆସନ ମଧ୍ୟରୁ କଂଗ୍ରେସ ୩୬ ଗୋଟି ଆସନ ହାସଲ କରିଥିଲା ।

ତାଙ୍କ ଅଧ୍ୟକ୍ଷତାରେ ଓଡିଶାରେ ଉଚ୍ଚ ଶିକ୍ଷାର ପ୍ରସାର ନିମନ୍ତେ ସେ ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ନିଷ୍ପତ୍ତି ନେଇଥିଲେ । ଏଥିନିମନ୍ତେ ଏକ କମିଟି ଗଠନ କରାଯାଇଥିଲା । ପରେ କମିଟିର ସୁପାରିଶ୍ ଅନୁଯାୟୀ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ୧୯୫୧ରେ ସେ ଏକ ନୂତନ ଦଳ 'ସ୍ୱାଧୀନ ଜନ ସଂଘ'ରୁ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୫ରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅନୁରୋଧକ୍ରମେ ସେ କଂଗ୍ରେସରେ ଯୋଗ ଦେଇଥିଲେ । ସେହିବର୍ଷ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋ.ଚାନ୍ସେଲର୍ ରୂପେ ନିଯୁକ୍ତି ପାଇଥିଲେ । ୧୯୫୭ରେ ସେ ପୁନଃ ନିର୍ବାଚିତ ହେଲେ । ୧୯୫୭ ମସିହା ମେ ମାସରୁ ୧୯୬୧ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ସେ ଓଡିଶା ବିଧାନସଭାର ବାଚସ୍ପତି ରହିଥିଲେ । ୧୯୬୭ ମସିହା ନଭେମ୍ବର ୬ ତାରିଖରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କର ଦେହାନ୍ତ ସହ ଓଡିଶା ଜଣେ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ ବିଧାୟକ, ସଂସ୍କାରକ, କବି ଓ ଆଧୁନିକ ଓଡିଶାର ଅନ୍ୟତମ ସ୍ଥପତିଙ୍କୁ ହରାଇଥିଲା ।

### ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ



ପାରଳାଖେମୁଣ୍ଡିର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ ୧୮୯୨ମସିହା ଅପ୍ରେଲ ମାସ ୨୬ ତାରିଖରେ ଗୌରଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କ ପୁତ୍ର ରୂପେ ଜନ୍ମ ଲାଭ କରିଥିଲେ । ମାଡ୍ରାସରେ ଶିକ୍ଷାଲାଭ କରିଥିଲେ । ୧୯୧୩ ମସିହାରେ ଶାସନ ଭାର ଗ୍ରହଣ କରିଥିଲେ । ଜଣେ ପ୍ରଜାହିତୈଷୀ ଶାସକ, ଶିକ୍ଷା ଏବଂ ସଂସ୍କୃତିର ଜଣେ ପୃଷ୍ଠପୋଷକ ଥିଲେ । ୧୯୧୪ ମସିହାରେ ପାରଳାଖେମୁଣ୍ଡି ଠାରେ ଉତ୍କଳ ୟୁନିଅନ୍ କନ୍‌ଫେରେନ୍ସର ବାର୍ଷିକ ଅଧିବେଶନ ଆୟୋଜନ କରିଥିଲେ । ସରକାରଙ୍କ ଦ୍ୱାରା ୧୯୧୬ରେ ଭାରତର ପ୍ରତିରକ୍ଷାର ଲ୍ୟାଣ୍ଡ୍ ଫୋର୍ସର ସମ୍ମାନଜନକ କମିଶନର ପଦବୀ ନିମନ୍ତେ ମନୋନୀତ ହୋଇଥିଲେ । ପାରଳାଖେମୁଣ୍ଡି ସହ ନୂଆପଡାକୁ ସଂଯୋଗ କରୁଥିବା ରେଳଲାଇନ୍ ନିର୍ମାଣ କରିଥିଲେ । ଗବେଷଣାରତ ଶିକ୍ଷାର୍ଥୀଙ୍କ ନିମନ୍ତେ ତାଙ୍କ ରାଜପ୍ରାସାଦରେ ଏକ ବଡ ପାଠାଗାର ପ୍ରତିଷ୍ଠା କରିଥିଲେ । ମାଡ୍ରାସ ଜଷ୍ଟିସ୍ ପାର୍ଟିର ଜଣେ ଗୁରୁତ୍ୱପୂର୍ଣ୍ଣ ସଦସ୍ୟ ଥିଲେ । ୧୯୨୭ରେ ରୟାଲ୍ ଏଗ୍ରିକଲ୍‌ଚୁରାଲ୍ କମିଶନର ସଦସ୍ୟ ହୋଇଥିଲେ । ମାଡ୍ରାସ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଦସ୍ୟ ଥିଲେ । ୧୯୩୦-୩୧ରେ ଲଣ୍ଡନରେ ଆୟୋଜିତ ରାଉଣ୍ଡ ଟେବୁଲ୍ ବୈଠକରେ ଓଡିଶାର ଦାବୀ ଉପସ୍ଥାପନ କରିଥିଲେ । ୧୯୩୪ରେ ଓଡିଶା ସହ ପାରଳାଖେମୁଣ୍ଡିର ମିଶ୍ରଣ ନିମନ୍ତେ ଯୁଗ୍ମ ସଂସଦୀୟ କମିଟି ନିକଟରେ ଦାବୀ ଉପସ୍ଥାପନ କରିଥିଲେ । ଓଡିଶା ସହ ପାରଳାଖେମୁଣ୍ଡିର ଓଡିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ନିମନ୍ତେ କର୍ତ୍ତୃପକ୍ଷଙ୍କ ନିକଟରେ ଛପା ସ୍ମାରକପତ୍ର ଦାଖଲ କରିଥିଲେ ଏବଂ ଏଥିପାଇଁ ଦୃଢ ଭାବେ ଯୁକ୍ତି ଉପସ୍ଥାପନ କରିପାରିଥିଲେ । ୧୯୩୭ରେ ଓଡିଶାରେ ଅଣ-କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ତାଙ୍କର ପ୍ରଶଂସନୀୟ କାର୍ଯ୍ୟକୁ ସ୍ୱୀକୃତି ଦେଇ ୧୯୩୬ ମସିହାରେ ସରକାର ତାଙ୍କୁ 'ମହାରାଜା' ଉପାଧି ପ୍ରଦାନ କରିଥିଲେ । ୧୯୪୧ ମସିହା ନଭେମ୍ବରରେ ମନ୍ତ୍ରିମଣ୍ଡଳ ଗଠନ ନିମନ୍ତେ ମହାରାଜା ଆମନ୍ତ୍ରଣ ପାଇଥିଲେ ଓ ମୁଖ୍ୟମନ୍ତ୍ରୀତ୍ୱ ଭାର ଗ୍ରହଣ କରିଥିଲେ । ୧୯୪୭-୫୦ ପର୍ଯ୍ୟନ୍ତ ଭାରତର କନ୍‌ଷ୍ଟିଚୁଏଣ୍ଟ୍ ଆସେମ୍ବ୍ଲିର ସଦସ୍ୟ ହୋଇଥିଲେ । ରୟାଲ୍ ସୋସାଇଟ୍ ଅଫ୍ ଆର୍ଟସ୍ ଏବଂ ରୟାଲ୍ ଏସିଆଟିକ୍ ସୋସାଇଟ୍, ଲଣ୍ଡନର ଆଜୀବନ ସଦସ୍ୟ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ଆଜୀବନ ସଦସ୍ୟ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଏଲ୍.ଏଲ୍.ଡି. ଡିଗ୍ରୀରେ ସମ୍ମାନିତ ହୋଇଥିଲେ । ଓଡିଶାର ଏହି ବରପୁତ୍ର ୧୯୭୪ ମସିହା ମଇ ମାସ ୨୫ ତାରିଖରେ ପରଲୋକ ଗମନ କରିଥିଲେ ।

### ଡକ୍ଟର ହରେକୃଷ୍ଣ ମହତାବ

ଡକ୍ଟର ହରେକୃଷ୍ଣ ମହତାବ ଥିଲେ କୃଷ୍ଣ ଚରଣ ଦାସ ଓ ତୋହଫା ବିବିଙ୍କ ସୁପୁତ୍ର । ଅବିଭକ୍ତ ବାଲେଶ୍ୱର ଜିଲ୍ଲାର

ଆଗରପଡାଠାରେ ୧୮୯୯ ମସିହା ନଭେମ୍ବର ମାସ ୨୧ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ଭଦ୍ରକ ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକୁଲେସନ୍ ପରେ ସେ ଉଚ୍ଚ ଶିକ୍ଷା ନିମନ୍ତେ କଟକ ରେଭେନ୍ସା କଲେଜରେ ଯୋଗ ଦେଇଥିଲେ । ମାତ୍ର ୧୯୨୧ ମସିହାରେ ଜାତୀୟ ମୁକ୍ତି ଆନ୍ଦୋଳନ ଆଡକୁ ସ୍ୱତଃ ଆକର୍ଷିତ ହୋଇଯିବାରୁ ଏହା ଅସଂପୂର୍ଣ୍ଣ ରହିଥିଲା । ପରେ ଦେଶର ସ୍ୱାଧୀନତା ପାଇଁ ତାଙ୍କ ଜୀବନ ସଂଗ୍ରାମ ଓ ଉତ୍ସର୍ଗର ଗାଥା ହିଁ ଥିଲା । ୧୯୨୩ ମସିହାରେ ସେ ବାଲେଶ୍ୱରଠାରେ



ସାପ୍ତାହିକୀ ପ୍ରଜାତନ୍ତ୍ର ଆରମ୍ଭ କରିଥିଲେ । ୧୯୨୨ ମସିହାରେ ରାଜଦ୍ରୋହ ଅଭିଯୋଗରେ ପ୍ରଥମ କାରାବରଣ କରିଥିଲେ । ୧୯୨୪ ମସିହାରେ ବିହାର ଓ ଓଡିଶା କାଉନ୍‌ସିଲ୍‌ର ସଦସ୍ୟ ଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗଦେଲେ ଓ କାରାବରଣ କଲେ । ୧୯୩୪ ମସିହାରେ ହରିଜନ ଆନ୍ଦୋଳନରେ ଅଂଶଗ୍ରହଣ କଲେ ଏବଂ ଓଡିଶାରେ ପ୍ରଥମ ଥର ପାଇଁ ତାଙ୍କ ପୂର୍ବପୁରୁଷଙ୍କ ଦ୍ୱାରା ନିର୍ମିତ ମନ୍ଦିର ହରିଜନଙ୍କ ନିମନ୍ତେ ଖୋଲି ଦେଇଥିଲେ । ୧୯୩୮ ମସିହାରେ ଷ୍ଟେଟ୍ ପିପୁଲ୍ସ୍ ଇନ୍‌କ୍ୱାରୀ କମିଟିର ସଭାପତି ହୋଇଥିଲେ ଓ ଶାସକ ସନନ୍ଦ ରଦ୍ଦ କରିବା ଏବଂ ଓଡିଶା ପ୍ରଦେଶ ସହ ଦେଶୀୟ ରାଜ୍ୟଗୁଡିକର ମିଶ୍ରଣ ନିମନ୍ତେ ସୁପାରିଶ କରିଥିଲେ । ସେ ୧୯୪୧ ମସିହାରେ ଅସହଯୋଗ ଆନ୍ଦୋଳନ ଓ ୧୯୪୨ ମସିହାରେ 'ଭାରତ ଛାଡ' ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ ଓ କାରାବରଣ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବ ୧୯୪୬ରୁ ୧୯୫୦ ମସିହା ପର୍ଯ୍ୟନ୍ତ ଓଡିଶାର ମୁଖ୍ୟମନ୍ତ୍ରୀ, ୧୯୫୦ରୁ ୧୯୫୨ ପର୍ଯ୍ୟନ୍ତ କେନ୍ଦ୍ର ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରୀ, ୧୯୫୨ ମସିହାରେ ସଂସଦରେ କଂଗ୍ରେସ ଦଳର ସାଧାରଣ ସଂପାଦକ, ୧୯୫୫ ମସିହାରୁ ୧୯୫୬ ମସିହା ପର୍ଯ୍ୟନ୍ତ ବମ୍ବେର ରାଜ୍ୟପାଳ, ୧୯୫୬ରେ ରାଜ୍ୟପାଳ ପଦବୀରୁ ଇସ୍ତଫା ଦେଇ ୧୯୫୬ରୁ ୧୯୬୦ ପର୍ଯ୍ୟନ୍ତ ପୁନର୍ବାର ଓଡିଶାର ମୁଖ୍ୟମନ୍ତ୍ରୀ ଥିଲେ । ପୂର୍ବତନ ଦେଶୀୟ ରାଜ୍ୟଗୁଡିକର ଏକତ୍ରୀକରଣ ଓ ମିଶ୍ରଣ, ଭୁବନେଶ୍ୱରଠାରେ ରାଜ୍ୟର ରାଜଧାନୀ ପ୍ରତିଷ୍ଠା, ବହୁମୁଖୀ ହୀରାକୁଦ ବନ୍ଧ ପ୍ରକଳ୍ପର ମଂଜୁରୀ ଓ ନିର୍ମାଣ ଦିଗରେ ତାଙ୍କ ପ୍ରମୁଖ ଭୂମିକା ଯୋଗୁଁ ଡକ୍ଟର ମହତାବ ବାସ୍ତବରେ ଆଧୁନିକ ଓଡିଶାର ସ୍ଥପତି ରୂପେ ପରିଗଣିତ ହୁଅନ୍ତି ।

୧୯୬୨ ମସିହାରେ ସେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ସେ ମଧ୍ୟ ୧୯୬୭, ୧୯୭୧ ଏବଂ ୧୯୭୪ ମସିହାରେ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ଡକ୍ଟର ମହତାବ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ପ୍ରତିଷ୍ଠା କରିଥିଲେ, ଯାହା ଆଜି ପର୍ଯ୍ୟନ୍ତ ମଧ୍ୟ ଦୈନିକ 'ପ୍ରଜାତନ୍ତ୍ର' ଏବଂ ମାସିକ 'ଝଙ୍କାର' ପ୍ରକାଶ କରିଆସୁଛି । ପ୍ରତିଷ୍ଠାଠାରୁ ସେ ପ୍ରକାଶନର ମୁଖ୍ୟ ସଂପାଦକ ରହିଆସିଥିଲେ । କେତେକ ଅବଧି ନିମନ୍ତେ ସେ ଓଡିଶା ସାହିତ୍ୟ ଅକାଦେମୀ ଓ ସଂଗୀତ ନାଟକ ଅକାଦେମୀର ଅଧ୍ୟକ୍ଷ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌ର ସ୍ଥାୟୀ ସଦସ୍ୟ ମଧ୍ୟ ଥିଲେ । ସେ ଜଣେ ଅନନ୍ୟ ଐତିହାସିକ ଓ ଉଭୟ ଇଂରାଜୀ ଓ ଓଡିଆ ଭାଷାରେ ଜଣେ ଲେଖକ ଥିଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଦ୍ୱାରା ସମ୍ମାନଜନକ ଡକ୍ଟର ଡିଗ୍ରୀ, ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସାହିତ୍ୟରେ ଡକ୍ଟର ଡିଗ୍ରୀ ଓ ସାଗର ବିଶ୍ୱବିଦ୍ୟାଳୟ ଦ୍ୱାରା ଆଇନ୍‌ରେ 'ଡକ୍ଟରେଟ୍' ଉପାଧି ଲାଭ କରିଥିଲେ ।

ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ସତ୍ୟତା ପ୍ରତିପାଦିତ କରି ସେ 'ଓଡିଶା ଇତିହାସ' ଏବଂ 'ଶେଷର ଆରମ୍ଭ' (ବିଗ୍‌ନିଙ୍ଗ୍ ଅଫ୍ ଦି ଏଣ୍ଡ୍) ରଚନା ସହ ଜଣେ ସୁଲେଖକର ମାନ୍ୟତା ହାସଲ କରିଥିଲେ । ଏତଦ୍‌ବ୍ୟତୀତ, ସେ ମଧ୍ୟ ଅନେକ ପ୍ରବନ୍ଧ, ନାଟକ ଓ କବିତା ରଚନା କରିଥିଲେ, ଯେଉଁଗୁଡିକ ସାହିତ୍ୟିକ ମୂଲ୍ୟ ଦୃଷ୍ଟିରୁ ବେଶ୍ ପ୍ରଶଂସିତ । ଦୈନିକ ପ୍ରଜାତନ୍ତ୍ରରେ ପ୍ରକାଶିତ ତାଙ୍କର ଲୋକପ୍ରିୟ ସ୍ତମ୍ଭ 'ଗାଁ ମଜଲିସ୍' ୧୯୮୩ ମସିହାରେ କେନ୍ଦ୍ର ସାହିତ୍ୟ ଅକାଦେମୀ ପୁରସ୍କାର ଲାଭ କରିଥିଲା ।

ଡକ୍ଟର ହରେକୃଷ୍ଣ ମହତାବ ଥିଲେ ଜଣେ ସଫଳ ରାଜନୈତିକ ନେତା । ସ୍ୱାଧୀନତା ଓ ପରବର୍ତ୍ତୀ କାଳରେ ବର୍ଷ ବର୍ଷର ସାଧନା ଦ୍ୱାରା ରାଜ୍ୟର ଜନସାଧାରଣଙ୍କୁ ନେତୃତ୍ୱ ଦେଇ ସେସମୟରେ ଜଣେ ତୁଙ୍ଗ ବ୍ୟକ୍ତିତ୍ୱ ରୂପେ ଉଭା ହୋଇଥିଲେ । ୧୯୮୭ ମସିହା ଜାନୁଆରୀ ମାସ ୨ ତାରିଖରେ ଏହି ବରପୁତ୍ର ପରଲୋକ ଗମନ କରିଥିଲେ ।

## ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ

୧୯୨୦ ଓ ୧୯୩୦ ମସିହା ମଧ୍ୟରେ ଅନେକ ବିଶିଷ୍ଟ ନେତୃମଣ୍ଡଳୀଙ୍କ ଉଲ୍ଲେଖନୀୟ ଅବଦାନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଫଳପ୍ରଦ ହୋଇପାରିଥିଲା । ଖଲ୍ଲିକୋଟ୍‌ର ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ତନ୍ମଧ୍ୟରୁ ଅନ୍ୟତମ । ୧୯୦୦ ମସିହା ଜାନୁଆରୀ ୧୩ ତାରିଖରେ ସେ ରାଜା ହରିହର ମର୍ଦ୍ଦରାଜଙ୍କ ଔରସରୁ ରାଣୀ କନକ ମଂଜରୀ ଦେବୀଙ୍କ କୋଳମଣ୍ଡନ କରିଥିଲେ । ଆଗାମୀ ଦିନରେ ଓଡ଼ିଶାର ଭବିଷ୍ୟତ ନିର୍ମାଣ ସକାଶେ ତାଙ୍କ ଜନ୍ମ ବିଧିନିର୍ଦ୍ଦିଷ୍ଟ ଥିଲା ।



ଶୈଶବ କାଳରେ ସେ ଏରିକ୍ ଡାକ ନାମରେ ପରିଚିତ ଥିଲେ । ମହିଳା ରାଜ୍ୟପାଳ ଏଫ୍.ହାର୍ଭେ ଡୁନ୍‌ଙ୍କ ତତ୍ତ୍ୱାବଧାନରେ ସେ ଲାଳିତପାଳିତ ହୋଇଥିଲେ । ୧୯୦୯ ମସିହା ଜୁଲାଇ ୨୦ ତାରିଖରେ ସେ ତାଙ୍କର ପିତା ରାଜା ହରିହର ମର୍ଦ୍ଦରାଜ ଦେଓଙ୍କୁ ହରାଇଥିଲେ । ପରେ ତାଙ୍କୁ ନେୟୁଇଙ୍ଗଟନ୍‌ଠାରେ ସ୍କୁଲ୍ ଶିକ୍ଷା ନିମନ୍ତେ ମାନ୍ଦ୍ରାସ ପଠାଯାଇଥିଲା । ନିଜ ରାଜ୍ୟର ଦାୟିତ୍ୱ ନେବାର ଯୋଗ୍ୟତା ବୟସ ପର୍ଯ୍ୟନ୍ତ ସେ ଖ୍ରୀଷ୍ଟିୟାନ୍ କଲେଜ୍‌ରେ ଅଧ୍ୟୟନ କରିଥିଲେ । ସେ ୧୯୨୧ ମସିହା ଜାନୁୟାରୀ ୧୪ ତାରିଖରେ ଖଲ୍ଲିକୋଟ୍ ସିଂହାସନ ଆରୋହଣ କରିଥିଲେ । ତାଙ୍କର ଅଭିନବ ଉଦ୍ୟମର ପ୍ରଥମ ପଦକ୍ଷେପ ସ୍ୱରୂପ ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ନିମନ୍ତେ ୧୯୨୪ରେ ଗଠିତ ଫିଲିପ୍-ଡଫ୍ କମିଟିକୁ ପ୍ରୋକ୍ତ ଉଦ୍ଦେଶ୍ୟରେ ପ୍ରଭାବିତ କରିଥିଲେ । ମିଷ୍ଟର ସି.ଏଲ୍.ଫିଲିପ୍ ଏବଂ ମିଷ୍ଟର ଏ.ସି.ଡଫ୍ ୧୯୨୪ ମସିହା ଡିସେମ୍ବର ମାସ ୧୭ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ ରାଜା ସାହେବଙ୍କ ଅତିଥି ହୋଇ ରମ୍ଭା ପ୍ୟାଲେସ୍‌ରେ ଅବସ୍ଥାନ କରିଥିଲେ । ଖଲ୍ଲିକୋଟ୍‌ଗଡରେ ଏକ ବିଶାଳ ଜନ ସମାବେଶ ଅନୁଷ୍ଠିତ ହୋଇଥିଲା ଏବଂ ଏହି ପ୍ରଭାବିତ କମିଟି ମିଶ୍ରଣ ସପକ୍ଷରେ ନିଜର ରିପୋର୍ଟ ପ୍ରଦାନ କରିଥିଲେ ।

ତେବେ ପରେ ଗଠିତ ଓଡୋନେଲ୍ କମିଶନ୍ ଏକ ଅତ୍ୟନ୍ତ ନିରାଶାଜନକ ରିପୋର୍ଟ ପ୍ରଦାନ କରିଥିଲା । କିନ୍ତୁ ଏହା ବିରୁଦ୍ଧରେ ରାମଚନ୍ଦ୍ର ମର୍ଦ୍ଦରାଜ ମାନ୍ଦ୍ରାସ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ବକ୍ତବ୍ୟ ରଖିଥିଲେ । ୧୯୩୨ ମସିହା ଅଗଷ୍ଟ ମାସ ୨୧ ତାରିଖରେ ଉତ୍କଳ ୟୁନିଅନ୍ କନ୍‌ଫରେନ୍ସର ଏକ ସ୍ୱତନ୍ତ୍ର ଆଲୋଚନାକୁ ଉଦ୍‌ଘାଟନ କରି ସେ ଫିଲିପ୍-ଡଫ୍ କମିଟି ସୁପାରିଶ୍ ଆଧାରରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଉପରେ ଗୁରୁତ୍ୱ ଦେଇଥିଲେ ।

ରାଜା ସାହେବ ଲଣ୍ଡନରେ ଆୟୋଜିତ ତୃତୀୟ ରାଉଣ୍ଡ୍ ଟେବୁଲ୍ ସମ୍ମିଳନୀରେ ଯୋଗ ଦେଇ ଏହା ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ । ନିଜର ପ୍ରତିବେଦନକୁ ପରିବର୍ଦ୍ଧିତ କରିବାକୁ ଯାଇ ସେ ୧୯୩୩ ମସିହା ଜାନୁଆରୀ ୧୨ ତାରିଖରେ ପ୍ରସିଦ୍ଧ 'ଓଡ଼ିଶା ବାଙ୍କ୍ୟୁଟ୍' ଆୟୋଜନ କରିଥିଲେ ଏବଂ ସେଠାରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ସାର୍ ସାମୁଏଲ୍ ହୋର୍‌ଙ୍କୁ ପ୍ରଭାବିତ କରିପାରିଥିଲେ । ଫଳତଃ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସପକ୍ଷରେ ସେ ସାର୍ ସାମୁଏଲ୍‌ଙ୍କ ଅନୁମୋଦନ ଲାଭରେ ସଫଳ ହୋଇଥିଲେ । ତୃତୀୟ ରାଉଣ୍ଡ୍ ଟେବୁଲ୍ ବୈଠକରେ ହୋଇଥିବା ଆଲୋଚନାର ନିର୍ଯ୍ୟାସ ଅନୁଯାୟୀ ଏହି ବିଷୟ ଉପରେ ଦୃଷ୍ଟିପାତ କରିବା ନିମନ୍ତେ ଏକ ଯୁଗ୍ମ ସଂସଦୀୟ କମିଟି ଗଠନ କରାଯାଇଥିଲା । ଶେଷରେ, ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ ଗୃହୀତ ହେଲା ଓ ଏହି ଅଧିନିୟମର ଧାରା ୨୮୯ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ପଥ ପ୍ରଶସ୍ତ ହେଲା ।

ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଥିଲେ ଜଣେ ସୃଜନଶୀଳ ସକ୍ରିୟ ନେତା । ତାଙ୍କର ବ୍ୟାପକ ପ୍ରାଶାସନିକ ଓ ରାଜନୈତିକ ଅଭିଜ୍ଞତା ଏବଂ ଦକ୍ଷତା, ତାଙ୍କ ସହିତ କାର୍ଯ୍ୟ କରିଥିବା ଲୋକଙ୍କ ପାଇଁ ଆତ୍ମଶକ୍ତି ଓ ପ୍ରେରଣାର ଉତ୍ସ ଥିଲା । ସେ ଓଡ଼ିଶାର ଜନସାଧାରଣଙ୍କ ନିମନ୍ତେ ନିଜର ଜୀବନକୁ ସଂପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିଲେ ଏବଂ ଜନତାଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ । ୧୯୬୩ ମସିହା ଜାନୁଆରୀ ମାସ ୨୩ ତାରିଖରେ ରାଜା ସାହେବ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

### ବିଜୟାନନ୍ଦ ପଟ୍ଟନାୟକ

ବିଜୟାନନ୍ଦ ପଟ୍ଟନାୟକ ହେଉଛନ୍ତି ବିଜୁ ପଟ୍ଟନାୟକ ନାମରେ ଜନପ୍ରିୟ ଓ ଅତି ଜଣାଶୁଣା । ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ ତାଙ୍କର ଜନ୍ମ । ପିତା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ଶିକ୍ଷା ହେଲା ବି.ଏସ୍‌ସି ଷ୍ଟାଣ୍ଡାର୍ଡ ।

ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ ସହ ଶୁଭ ପରିଣୟ । ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା । ପ୍ରାରମ୍ଭିକ ବୃତ୍ତି ଥିଲା ବ୍ୟବସାୟ । ବିମାନ ବିଦ୍ୟା ଓ ଶିଳ୍ପରେ ଅଭିରୁଚି । ଜୀବନ କାଳରେ ୟୁ.କେ., ୟୁ.ଏସ୍.ଏ., ୟୁ.ଏସ୍.ଏସ୍.ଆର୍., ପ୍ୟାରିସ୍, ଇଣ୍ଡୋନେସିଆ ସମେତ ଅନ୍ୟାନ୍ୟ ଦେଶକୁ ଯାତ୍ରା । ରାଜନୈତିକ କାର୍ଯ୍ୟକ୍ରମ । ବାଲ୍ୟକାଳରୁ ସାହସିକ ଜୀବନରେ ଆଗ୍ରହୀ । ଛାତ୍ର ଜୀବନରେ କଟକଠାରୁ ପେଶୱାର୍ ପର୍ଯ୍ୟନ୍ତ ସାଇକେଲ୍‌ରେ ଦୁଃସାହସିକ ଯାତ୍ରା । ଇଣ୍ଡିଆନ୍ ନାସ୍‌ନାଲ୍ ଏଆର୍‌ୱେଜ୍‌ରେ ଯୋଗଦାନ ଓ ଏହାର ମୁଖ୍ୟ ପାଇଲଟ୍ ନିଯୁକ୍ତ । 'ଭାରତ ଛାଡ' ଆନ୍ଦୋଳନ ସମୟରେ ଆତ୍ମଗୋପନରେ ଥିବା ନେତାଙ୍କୁ ସହାୟତା, ୩୦ ମାସ ପର୍ଯ୍ୟନ୍ତ ଜେଲ୍‌ରେ ରହଣି । ଇଣ୍ଡୋନେସିଆ ମୁକ୍ତି ଆନ୍ଦୋଳନ ସମୟରେ ନିଜ ଜୀବନକୁ ବାଜି ଲଗେଇ ଇଣ୍ଡୋନେସିଆ ଶାସକ ମୁଖ୍ୟଙ୍କୁ ଉଡାଜାହାଜରେ ନୂଆଦିଲ୍ଲୀ ଆଣିପାରିଥିଲେ । ୧୯୪୭ ମସିହାରେ ପାକିସ୍ଥାନର ଭାରତ ଆକ୍ରମଣ ସମୟରେ ସେ କାଶ୍ମୀରରେ ପ୍ରଥମ ଭାରତୀୟ ଉଡାଜାହାଜ ଅବତରଣ କରିଥିଲେ । ଓଡ଼ିଶା ପ୍ରତ୍ୟାବର୍ତ୍ତନ ପରେ ଶିଳ୍ପ ପ୍ରତିଷ୍ଠା ଦିଗରେ ଆଗ୍ରହ ପ୍ରକାଶ କରି ଅନେକ ଶିଳ୍ପ ପ୍ରତିଷ୍ଠା କରିଥିଲେ । ଗୋଟିଏ ଅବଧି ନିମନ୍ତେ ଓ.ପି.ସି.ସି.ର ସଭାପତି । ଏ.ଆଇ.ସି.ସିର ସଦସ୍ୟ । ୧୯୬୧ ମସିହାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ସମୟରେ ତାଙ୍କ ନେତୃତ୍ୱରେ କଂଗ୍ରେସ ଦଳର ଅଭୁତପୂର୍ବ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ହାସଲ । ୧୯୬୧ରୁ ୧୯୬୩ ମସିହା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ ଓ 'କାମରାଜ' ଯୋଜନାରେ ଇସ୍ତଫା ଦେଇଥିଲେ । କଳିଙ୍ଗ ଏୟାର୍‌ୱେଜ୍ ପ୍ରତିଷ୍ଠା ତାଙ୍କର କୃତିତ୍ୱ ମଧ୍ୟରୁ ଅନ୍ୟତମ । ବିଜ୍ଞାନ ପୁରସ୍କାର ପ୍ରଦାନ ଲକ୍ଷ୍ୟରେ ୟୁନେସ୍କୋକୁ ୧,୦୦୦ ପାଉଣ୍ଡ ପୁରସ୍କାର ରାଶି ପ୍ରଦାନ । ୧୯୫୨, ୧୯୫୭, ୧୯୬୧ ମସିହାରେ ଯଥାକ୍ରମେ ଜଗନ୍ନାଥ ପ୍ରସାଦ, ସୋରଡା (ଗଂଜାମ) ଏବଂ ଚୌଦ୍ୱାର (କଟକ)ରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ । ପୁନଶ୍ଚ, ୧୯୭୧ ଏବଂ ୧୯୭୪ ମସିହାରେ ରାଜନଗର (କଟକ)ରୁ ନିର୍ବାଚିତ । ୧୯୭୧ରୁ ୧୯୭୨ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ଯୋଜନା ବୋର୍ଡର ଅଧ୍ୟକ୍ଷ । ୧୯୭୧ ମସିହା ଅକ୍ଟୋବରରେ ସଂଘଟିତ ମହାବାତ୍ୟାଜନିତ ପ୍ରଭୂତ କ୍ଷୟକ୍ଷତି ସମୟରେ ପୀଡ଼ିତ ଜନତା ବିଶେଷତଃ ରାଜନଗରବାସୀଙ୍କୁ ବହୁମୂଲ୍ୟ ସେବା ଓ ସହାୟତା ଯୋଗାଇବାରେ ସକ୍ରିୟ ଅଂଶ ଗ୍ରହଣ । ୧୯୭୭ ମସିହାରେ ସଂସଦକୁ ନିର୍ବାଚିତ ଏବଂ ୧୯୭୭ରୁ ୧୯୭୯ ମସିହା ପର୍ଯ୍ୟନ୍ତ କେନ୍ଦ୍ର କ୍ୟାବିନେଟ୍ ମନ୍ତ୍ରୀ । ୧୯୮୦ ମସିହାରେ କେନ୍ଦ୍ରାପଡା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ । ୧୯୮୪ ଲୋକସଭା ନିର୍ବାଚନରେ କେନ୍ଦ୍ରାପଡା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ପୁଣି ଥରେ ନିର୍ବାଚିତ । ୧୯୮୫ ସାଧାରଣ ନିର୍ବାଚନରେ ଭୁବନେଶ୍ୱର ବିଧାନସଭା ଆସନରୁ ଓଡ଼ିଶା ବିଧାନସଭାକୁ ପୁନଶ୍ଚ ନିର୍ବାଚିତ । କେନ୍ଦ୍ରାପଡା ସଂସଦୀୟ ଆସନରୁ ଇସ୍ତଫା ଦେଇ ଓଡ଼ିଶା ବିଧାନସଭାରେ ବିରୋଧୀ ଦଳ ନେତା । ପୁନଶ୍ଚ, ୧୦ମ ଓଡ଼ିଶା ବିଧାନସଭା ନିର୍ବାଚନରେ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ । ୧୯୯୦ ମସିହାରେ ତାଙ୍କର ସକ୍ରିୟ ନେତୃତ୍ୱ ବଳରେ ଜନତା ଦଳ ଓଡ଼ିଶା ବିଧାନସଭାର ତିନି ଚତୁର୍ଥାଂଶ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା, ଯାହା ଥିଲା ଅଭୁତପୂର୍ବ । ସେ ସର୍ବସମ୍ମତିକ୍ରମେ ଓଡ଼ିଶା ବିଧାନସଭାରେ ଜନତା ଦଳର ନେତା ନିର୍ବାଚିତ ହୋଇଥିଲେ ଏବଂ ତାଙ୍କ ଜନ୍ମଦିନ ମାର୍ଚ୍ଚ ମାସ ୫ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଅଭିଷିକ୍ତ ହୋଇଥିଲେ । ୧୯୯୫ ମସିହା ମାର୍ଚ୍ଚ ମାସରେ ପୁନଶ୍ଚ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ଏବଂ ବିରୋଧୀ ଦଳ ନେତା ହୋଇଥିଲେ । ପରେ ସେ ୧୯୯୬ ମସିହା ଜୁନ୍‌ରେ ଅନୁଷ୍ଠିତ ଲୋକସଭା ନିର୍ବାଚନରେ ଆସିକା ଏବଂ କଟକ ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସେ ଉଭୟ ଆସନରୁ ନିର୍ବାଚିତ ହୋଇଥିଲେ । ଓଡ଼ିଶା ବିଧାନସଭାରୁ ଇସ୍ତଫା ଦେଇ ଆସିକା ଲୋକସଭା ନିର୍ବାଚନ ମଣ୍ଡଳୀରୁ ସେ ପ୍ରତିନିଧିତ୍ୱ କରିଥିଲେ । ଏହି ପ୍ରଖ୍ୟାତ ନେତା ୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖରେ ନୂଆଦିଲ୍ଲୀର ଏସ୍କର୍ଟ ହସ୍‌ପିଟାଲ୍‌ରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।



ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଉତ୍ତର ଦାୟାଦ

**ଉମାଶଙ୍କର ପ୍ରସାଦ**

ସ୍ୱଦେଶାନୁରାଗ ପ୍ରଣୋଦିତ ସର୍ବୋତ୍ତମ ଅଭିଳାଷ ସଚେଷ୍ଟ ଭାଷା ଓ ସଂସ୍କୃତିର ସମାବେଶରେ ଏକ ସାଂସ୍କୃତିକ ସଂହତି ପ୍ରତିଷ୍ଠା କରିବାର ଆକାଂକ୍ଷା ହିଁ ଜାତୀୟତାବାଦ। ଜାତିପ୍ରୀତି, ସ୍ୱଦେଶପ୍ରେମ ଏବଂ ବ୍ୟକ୍ତିଗତ ସ୍ୱାର୍ଥ ରହିତ ଗୋଟିଏ ଜାତିର ସର୍ବବିଧ ବିକାଶ ପାଇଁ ଅନୁବଂଧିତ ପ୍ରେରଣା ହିଁ ଜାତୀୟତାବାଦ। ଜାତିର ଉନ୍ନତି କରିବା, ଜାତୀୟ ସଂସ୍କୃତି, ସାହିତ୍ୟ, କଳା, ଐତିହ୍ୟ ଇତ୍ୟାଦିକୁ ରକ୍ଷା କରିବା ସହିତ ଜାତିର ସାମାଜିକ, ଅର୍ଥନୈତିକ ଉନ୍ନତି ଅବା ତାହାର ସାର୍ବଭୌମ ଭୌଗଳିକ ଅଖଣ୍ଡତା ଓ ଐକ୍ୟ ଏବଂ ସଂହତି ବଜାୟ ରଖିବା ସ୍ୱଦେଶାନୁରାଗ ବା ଜାତୀୟତାବାଦର ମୂଳମନ୍ତ୍ର।

ଓଡିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ପରେ ଓଡିଶା ଆଫଗାନ୍ ଶାସନାୟତ୍ତ ହେଲା ଏବଂ ପର୍ଯ୍ୟାୟକ୍ରମେ ଏହା ମୋଗଲ, ମରହଟ୍ଟା ଓ ଇଂରେଜ ଶାସନାଧୀନ ହୋଇ ପରାଧୀନ ଥିବାବେଳେ ବଙ୍ଗ, ବିହାର ଓ ମଧ୍ୟ ପ୍ରଦେଶରେ ଖଣ୍ଡ ବିଖଣ୍ଡିତ ହୋଇ ନିଜସ୍ୱ ସତ୍ତା ଓ ଅଖଣ୍ଡତା ହରାଇ ବସିଥିଲା । ୧୫୬୮ରୁ ୧୯୩୬ ଅର୍ଥାତ୍ ଦୀର୍ଘ ବର୍ଷ ପରେ ସୁଦୀର୍ଘ ସୂର୍ଯ୍ୟତୃଷ୍ଣା ଏବଂ ସଂଘର୍ଷମୟ କ୍ରାନ୍ତିର ଉତ୍ତୀର୍ଣ୍ଣ ଉଚ୍ଛ୍ୱାସରୁ ୧୯୩୬ ଏପ୍ରିଲ ପହିଲାରେ ୬ଟି ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଆଦେଶନାମା ପ୍ରକାଶ ପାଇଲା। ୧୯୪୭ରେ ଗଡଜାତ ଅଞ୍ଚଳର ମିଶ୍ରଣ ଉତ୍ତାରୁ ଓଡିଶାର କାୟା ବିସ୍ତାର ଘଟିଥିଲା, ଯଦିଓ ୩୦ ଲକ୍ଷରୁ ଊର୍ଦ୍ଧ୍ୱ ସୀମାନ୍ତବର୍ତ୍ତୀ ଓଡିଆ ବିଚ୍ଛିନ୍ନାଞ୍ଚଳରେ ନିର୍ବାସିତ ହୋଇ ରହିଗଲେ। ଏହି ଦୀର୍ଘ ବର୍ଷ ମଧ୍ୟରେ ଉତ୍କଳୀୟ ସ୍ୱଦେଶାନୁରାଗ ଚେତନାକୁ ଉତ୍କଳ ଭାରତୀଙ୍କର ଯେଉଁ ସାରସ୍ୱତ ସାଧକ ଓ ବାଗ୍ମୀ ବରପୁତ୍ର ଆପଣାର କବିତ୍ୱମୟ ପ୍ରାଣର ସ୍ୱତଃସ୍ଫୁର୍ତ୍ତ ଭାଷାରେ ଅଭିମଂତ୍ରିତ କରିବା ସଙ୍ଗେ ସଙ୍ଗେ ଓଡିଶାର ଜନଚେତନାକୁ 'ଉର୍ଜ୍ଜାଘର' ରୂପେ ପ୍ରେରଣା ଓ ଉଦ୍ଦୀପନାରେ ଅନୁପ୍ରାଣିତ କରିବାରେ ଅନୁବଂଧିତ ଥିଲେ ସେମାନେ ସ୍ୱତନ୍ତ୍ର ଉତ୍କଳପ୍ରଦେଶର ଉତ୍ତର ଦାୟାଦ ରୂପେ ଆମ ସମସ୍ତଙ୍କର ଚିର ନମସ୍ୟ ଓ ବରେଣ୍ୟ। ଉତ୍କଳ ଦିବସର ଏହି ମହାର୍ଘ୍ୟ ଅବସରରେ ସେମାନଙ୍କ ଉଦ୍ଦେଶ୍ୟରେ ଏହି ସଶ୍ରଦ୍ଧ ସ୍ମୃତିତର୍ପଣ ଓ ଶ୍ରଦ୍ଧା ସୁମନର କୁସୁମାଞ୍ଜଳି ।

**ଉତ୍କଳଗୌରବ ମଧୁସୂଦନ ଦାସ**

ପ୍ରଚଣ୍ଡ ପ୍ରତିଭାଧାରୀ, ଜାତିପ୍ରାଣ ଯେ କି ଓଡିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବାର ମୁଖ୍ୟ ଭୂମିକା ନେଇ ଊନବିଂଶ ଶତାବ୍ଦୀର ଘନ ଅନ୍ଧକାରରୁ (ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ) 'ଶତାବ୍ଦୀର ସୂର୍ଯ୍ୟ' ପରି ଆଲୋକର ପଥ ଦେଖାଇ ଥିଲେ। ସେ ଥିଲେ ଆଧୁନିକ ଉତ୍କଳର ସ୍ୱପ୍ନଦ୍ରଷ୍ଟା ଓ ସ୍ଥପତି। 'ସେ ବି ଥିଲେ ଭାରତର ଗର୍ବ'। ଗାନ୍ଧିଜୀଙ୍କ ପରିଭାଷାରେ ମଧୁସୂଦନ ମୋ ଗୁରୁ । ମହର୍ଷି ଅରବିନ୍ଦଙ୍କ ଭାଷାରେ ସେ ଥିଲେ ନେତୃତ୍ୱର ଶିଖର ପୁରୁଷ, ନେହେରୁଙ୍କ ଦୃଷ୍ଟିରେ ସେ ଥିଲେ ଜନବାଦୀ ମହାନ୍ ନେତା, ସାର୍ ରାମ୍‌ସେଙ୍କ ଭାଷାରେ ସେ ଓଡିଶାର ଅଦ୍ୱିତୀୟ ମୁକୁଟ ବିହୀନ ସମ୍ରାଟ। ତାଙ୍କ ରଚିତ କବିତା ମଧ୍ୟରେ ସେ ଏ ଜାତିକୁ ପୁନର୍ବାର ଅଭିମନ୍ତ୍ରିତ ହେବା ପାଇଁ ପ୍ରଚେଷ୍ଟା କରି ଉଦାତ୍ତ ଆହ୍ୱାନ ଦେଇଥିଲେ ।

ତୁ ପରା ବୋଲାଉ ଉତ୍କଳ ସନ୍ତାନ
ତେବେ କିମ୍ପା ତୁହି ଭୀରୁ

ତୋହର ଜନନୀ ରୋଦନ କରିଲେ
କହିବାକୁ କିମ୍ପା ଡରୁ ?

ଯେଉଁମାନେ କେବଳ ବାକ୍‌ପଟୁତାରେ ହିଁ ଆକାଶ ପର୍ଯ୍ୟନ୍ତ ସ୍ୱହସ୍ତ ଲମ୍ବାଇ ଦେଇପାରନ୍ତି । ମାତ୍ର କବି ଓ ବାଗ୍ମୀ ମଧୁବାବୁ ଅନୁଭବ କରିଛନ୍ତି ଉତ୍କଳ ଜନନୀ ପରାଧୀନତା ରୂପକ ଅନ୍ଧକାର ମଧରେ ଦୀର୍ଘ ଦିନ ଧରି ରୋଦନ କରୁଛି । ଅସଂଖ୍ୟ କର୍ମବୀରମାନଙ୍କୁ ସେ ନିଜର ଗର୍ଭରେ ଧାରଣ କରିଥିଲେ ହେଁ ସେମାନେ ଜନନୀର ଏପରି ଅସହାୟ ଅବସ୍ଥାରେ ତାକୁ ବାଚନିକ ଆଶ୍ୱାସନା ଓ ସାନ୍ତ୍ୱନା ଦେବା ପରିବର୍ତ୍ତେ ନିଜ ନିଜ ସ୍ୱାର୍ଥରେ ମସଗୁଲ ହୋଇଛନ୍ତି । ତେଣୁ ସେ ତାଙ୍କ ସନ୍ତାନର ଉକ୍ତି କବିତାରେ ଓଡ଼ିଆମାନଙ୍କ ହୃଦୟରେ ଜାତୀୟତା ଭାବ ଉଦ୍ରେକ କରିବା ପାଇଁ କହିଛନ୍ତି –

ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୂତି
ସ୍ୱାର୍ଥମେଧ ଯଜ୍ଞେ ଚାରିଆଡେ ନାଚ
ଛାତିକୁ ମିଶାଇ ଛାତି ।

### ପଣ୍ଡିତ ଗୋପବନ୍ଧୁ ଦାସ

ସେହିପରି ଅନନ୍ୟ ସାଧକ ପଣ୍ଡିତ ଗୋପବନ୍ଧୁ ଦାସ ଦୁଃଖ, ଦୈନ୍ୟ, ବନ୍ୟା ମରୁଡି, ବାତ୍ୟାରେ ସଢୁଥିବା ଗରିବ ମଣିଷର ସେବା କିପରି କରାଯାଇପାରେ, ତା'ର ସେ ଥିଲେ ଜ୍ୱଳନ୍ତ ଉଦାହରଣ । ନିଜର ବ୍ୟକ୍ତିଗତ ସୁଖ, ସ୍ୱାସ୍ଥ୍ୟ ପ୍ରତି ନଜର ନ ଦେଇ ଜାତିର ସେବାରେ ଅମ୍ଳାନ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ସେବାର ସେ ଥିଲେ ଅନନ୍ୟ ପ୍ରତୀକ । ସେ ଥିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଅଭିଯାନର ବିନ୍ଧାଣି ଏବଂ ତ୍ୟାଗଦୀପ୍ତ ଐତିହ୍ୟର ଅତୁଲ୍ୟ ବିନ୍ଧାଣି ।

ପ୍ରକୃତପକ୍ଷେ ଉତ୍କଳ ସଂପ୍ରୀତିରେ ପ୍ରବୁଦ୍ଧ ତାଙ୍କର ସ୍ୱଦେଶ ଅନୁରାଗ ମହାଭାରତୀୟ ଚେତନାରୁ ପୃଥକ ନଥିଲା । ପୁଣ୍ୟାତ୍ମା ଗୋପବନ୍ଧୁ ଥିଲେ ଜଣେ ସଚ୍ଚା ଦେଶପ୍ରେମୀ । ଭାରତର ପ୍ରତି ସ୍ଥାନ ଥିଲା ତାଙ୍କର ଅତି ପ୍ରିୟ । ଏ ଦେଶର ପାହାଡ ପର୍ବତ, ପଥର, ଶିଳା, ମାଟି ବାଲି ଥିଲା ତାଙ୍କ ଦୃଷ୍ଟିରେ ପରମ ପୂଜ୍ୟ ଶାଳଗ୍ରାମ ସଦୃଶ । ପ୍ରବାହିତ ନଦୀର ଜଳ ଥିଲା ତାଙ୍କ ପାଇଁ ପବିତ୍ର ପଞ୍ଚତୀର୍ଥର ଜଳ । ଭାରତର ପ୍ରତ୍ୟେକ ବୃକ୍ଷ ମହାବୃକ୍ଷ କଳ୍ପବଟ ସଦୃଶ । ସବୁଠି ଜଗତର ନାଥ ଜଗନ୍ନାଥ ତାଙ୍କ ଜ୍ଞାନ ଚକ୍ଷୁରେ ହୋଇ ଉଠିଛନ୍ତି ପ୍ରକଟିତ ।

ସେ ସର୍ବଦା କହୁଥିଲେ– ଆମ ପରିଚୟ : ଆମେ ଉତ୍କଳୀୟ : ଉତ୍କଳ ଆମର ପ୍ରାଣାଧିକ ପ୍ରିୟ ।

ଜାତୀୟତାର ମହାମନ୍ତ୍ରରେ ପ୍ରତି ଓଡିଆକୁ ସେ ଏପରି ଭାବେ ଅଭିମନ୍ତ୍ରିତ କରିଥିଲେ ।

### ଜାତିପ୍ରାଣ ମହାରାଜା କୃଷ୍ଣଚନ୍ଦ୍ର ଗଜପତି

ଉତ୍କଳ ପ୍ରୀତିର ଆଉ ଜଣେ ଅନନ୍ୟ ସାଧକ ଥିଲେ ଜାତିପ୍ରାଣ ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ଜଣେ ଶାସକ କିପରି ଦକ୍ଷ ହୋଇପାରେ, ନିଜର ପ୍ରଜାମାନଙ୍କର ଉନ୍ନତି ଶାସକର କିପରି ଧେୟ ହୋଇପାରେ, ଆଉ ଶାସକ ମଧ ନିଜ ଜାତିର, ମାତୃଭାଷାର କିପରି ରକ୍ଷା କରିପାରେ, ତା'ର ପ୍ରତୀକ ହେଉଛନ୍ତି କୃଷ୍ଣଚନ୍ଦ୍ର ଗଜପତି । ଓଡିଶା ପ୍ରଦେଶ ଗଠନରେ ମଧୁବାବୁଙ୍କ ସହ ସଂଯୋଗ ମଣିକାଞ୍ଚନ ସଦୃଶ ଥିଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଅବଦାନ ଚିରସ୍ମରଣୀୟ ।

### ଉତ୍କଳହିତୈଷୀ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ

ସେହିପରି ଉତ୍କଳ ହିତୈଷୀ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ ଅନନ୍ୟ ଉଦାହରଣ । ସେତେବେଳେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ସାମନ୍ତବାଦୀର ଶାସନ ଚାଲିଥିବା ବେଳେ ଜଣେ ମହାରାଜା କିପରି ଗଣତାନ୍ତ୍ରିକ ରୀତିରେ ଶାସନ କରି ପ୍ରଜାପାଳନ କରୁଥିଲେ, ତା'ର ମହାର୍ଘ୍ୟ ଉଦାହରଣ ହେଲେ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ । ତାଙ୍କର ଦମ୍ଭୋକ୍ତି ଥିଲା– ଯେଉଁମାନେ ଉତ୍କଳର ସ୍ଥାୟୀ ଅଧିବାସୀ ହୋଇଛନ୍ତି, ଅର୍ଥାତ୍ ଯେଉଁମାନେ ଉତ୍କଳକୁ ସେମାନଙ୍କର ଗୃହ ମନେକରି ଅଛନ୍ତି, ସେମାନେ ଭିନ୍ନ ଜାତୀୟ ହେଲେ ସୁଦ୍ଧା ଆମର ସହୋଦର ଓ ସେମାନଙ୍କୁ ଉତ୍କଳୀୟ ବୋଲି ଗଣନା କରାଯିବ । ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ଭାଷା ଓ ସାହିତ୍ୟ ପ୍ରେମ ଥିଲା ଅତୁଳନୀୟ । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ତାଙ୍କରି ସଭାପତିତ୍ୱରେ ୧୯୦୩ ମସିହାରେ କଟକର ଇଦ୍‌ଗା ପଡିଆରେ ଅନୁଷ୍ଠିତ ହୋଇଥିଲା । ମୟୂରଭଞ୍ଜ ମହାରାଜାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ପ୍ରଥମ ଉତ୍କଳ ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହୋଇ ଏହି ସମ୍ମିଳନୀର ନାମ ଉତ୍କଳ ସମ୍ମିଳନୀ ରଖାଯାଇଥିଲା ଏବଂ

ଯେଉଁମାନେ ଉତ୍କଳକୁ ଆସି ଓଡ଼ିଶାକୁ ଆପଣାର ମାତୃଭୂମି ସ୍ୱରୂପ ଗ୍ରହଣ ଏବଂ ସ୍ୱୀକାର କରୁଅଛନ୍ତି ଓ ଓଡ଼ିଆମାନଙ୍କର ହିତ ସାଧନାକୁ ସ୍ୱଜାତିର କର୍ତ୍ତବ୍ୟ ଓ କର୍ମ ବୋଲି ମନେ କରୁଛନ୍ତି, ସେମାନଙ୍କୁ ଅନୁରୂପ ଭାବେ ଆମ୍ଭେମାନେ ଉତ୍କଳୀୟ ଭାବିବା ଦରକାର ।

**ବ୍ୟାସକବି ଫକୀର ମୋହନ ସେନାପତି**

ଜାତି, ପ୍ରେମ, ବହ୍ନିକୁ ଅଧିକ ଶାଣିତ କରିବାରେ ବ୍ୟାସକବି ଫକୀର ମୋହନ ସେନାପତି ଥିଲେ ଚିର ନମସ୍ୟ । ଯେତେବେଳେ ପଡ଼ୋଶୀ ବଙ୍ଗାଳୀମାନେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନଏ କହି ଓଡ଼ିଆ ଭାଷା ସାହିତ୍ୟକୁ ଲୋପ କରିଦେବାକୁ ବସିଥିଲେ ସେତେବେଳେ ଆଧୁନିକ ଓଡ଼ିଆ ସାହିତ୍ୟର ମହାମାନ୍ତ୍ରିକ ସେନାପତି ନିଜର ବଳିଷ୍ଠ ଲେଖନୀ ଚାଳନା କରି ଓଡ଼ିଆ ଭାଷାକୁ ବଂଚାଇ ଥିଲେ । ତାଙ୍କର କାବ୍ୟୋକ୍ତି ଥିଲା ଏକ ଜାଗୃତିର ମହାମନ୍ତ୍ର ।

**ଡକ୍ଟର ହରେକୃଷ୍ଣ ମହତାବ**

ସେହିପରି ନିଜ ମାତୃଭୂମି ଉତ୍କଳକୁ ଭଲ ପାଇଥିବା ଆଉ ଜଣେ ଅନନ୍ୟ କାଣ୍ଡାରି ଥିଲେ ଡଃ. ହରେକୃଷ୍ଣ ମହତାବ । ସ୍ୱାଧୀନୋତ୍ତର ଓଡିଶାର ନବନିର୍ମାଣର ମହାଯୁଦ୍ଧରେ ହରେକୃଷ୍ଣ ମହତାବ ହେଉଛନ୍ତି ମହାଭାରତ ଯୁଗର ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ପରି । ସେ କେବଳ ରାଜନୈତିକ ନେତା ନଥିଲେ, ସେ ଥିଲେ ସ୍ୱାଧୀନୋତ୍ତର ଓଡିଶାର ରାଜନୀତି, ଶିକ୍ଷା, ସାହିତ୍ୟ, ସଂସ୍କୃତି, ସାମ୍ବାଦିକତା, କ୍ରୀଡା, ନୃତ୍ୟ, କଳା ଆଦିର ପ୍ରମୁଖ ବ୍ୟକ୍ତି । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ରୂପାୟନ ଥିଲା ତାଙ୍କର ସ୍ୱପ୍ନ । ୧୯୩୬ ଏପ୍ରିଲ ପହିଲା ଦିନ ଓଡିଶା ସ୍ୱତନ୍ତ୍ର ପ୍ରଦେଶର ପରିଚୟ ପାଇଲା, ବୃହତ୍ତର ନୂତନ ଓଡିଶା ଦୀର୍ଘଦିନ ଧରି ବିଚ୍ଛିନ୍ନ ହୋଇ ରହିଥିବା ଗଡଜାତ ରାଜ୍ୟ ସମୂହ ଡକ୍ଟର ମହତାବଙ୍କ କ୍ରାନ୍ତିକାରୀ ପଦକ୍ଷେପ ହେତୁ ମିଳିତ ହୋଇଥିଲା ଓଡିଶା ସହିତ ।

ଏହିପରି ଭାବେ ଓଡ଼ିଆ ଜାତିକୁ ବିଶ୍ୱାଭିମୁଖୀ କରିବାର ଚେତନା ଆଜିଠାରୁ ଶହେ ବର୍ଷ ପୂର୍ବେ ଭକ୍ତିକବି ମଧୁସୂଦନ ରାଓ କରିଥିଲେ । ଏହି କବି ହିନ୍ଦୁ ଧର୍ମର ଦେବାଦେବୀ କୀର୍ତ୍ତିସବୁର ପ୍ରଶଂସା ମୁଖର ହୋଇ ଉତ୍କଳ ସନ୍ତାନଗଣକୁ ଅତୀତର ଗୌରବ କାହାଣୀ ଶୁଣାଇଛନ୍ତି ।

ସେହିପରି କାନ୍ତକବିଙ୍କ କାଳଜୟୀ ଗୀତି ଆବାହନୀ 'ବନ୍ଦେ ଉତ୍କଳ ଜନନୀ' ଆଜି କାନ୍ତକବିଙ୍କୁ ଚିର ଅମର କରି ରଖିଛି । ଓଡ଼ିଆ ଜାତି ଆଜି ତାଙ୍କ ନିକଟରେ ଋଣୀ । ତାଙ୍କର ଏହି ଉଦ୍‌ବୋଧନ ଆମ ପାଇଁ ଧ୍ୟେୟ ହେଉ । ଓଡ଼ିଶାବାସୀ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୁଅନ୍ତୁ । ଉତ୍କଳ ଦିବସରେ ଏତିକି କାମନା ।

ସମ୍ପାଦକ, ମାର୍ଗଦର୍ଶୀ, ଖୋରଧା



# ଓଡ଼ିଆ ଭାଷା : ଐତିହ୍ୟ ଓ ଇତିହାସ

ଡକ୍ଟର ବସନ୍ତ କୁମାର ପଣ୍ଡା

**୧. ଓଡ଼ିଆ ଭାଷା**

ଭାଷା ହେଉଛି ମଣିଷ ମନର ଭାବ ପ୍ରକାଶର ସର୍ବୋତ୍କୃଷ୍ଟ ମାଧ୍ୟମ । ଓଡ଼ିଶାର ଭାଷା ଓଡ଼ିଆ ନାମରେ ବହୁ ପ୍ରାଚୀନ କାଳରୁ ପରିଚିତ । ଓଡ଼ିଶାରେ ଜନବସତି ଓ ତା'ର ସଭ୍ୟତାର ପ୍ରାଚୀନତା ପରି ଓଡ଼ିଆ ଭାଷା ମଧ୍ୟ ପ୍ରାଚୀନ । ମହାଭାରତ, ହରିବଂଶ, ବ୍ରହ୍ମପୁରାଣ, ସ୍କନ୍ଦପୁରାଣ ପ୍ରଭୃତିରେ କଳିଙ୍ଗ ଓ ଉତ୍କଳ ଦେଶର ବର୍ଣ୍ଣନା ରହିଅଛି । ଉତ୍କଳ ଓ କଳିଙ୍ଗ ଦେଶ ବିଷୟରେ ପୁରାତନ ବହୁ ଗ୍ରନ୍ଥରେ ଉଲ୍ଲେଖ ଥିଲେ ମଧ୍ୟ ଓଡ଼ିଶାର ଉଲ୍ଲେଖ ମିଳି ନଥାଏ । କିନ୍ତୁ ଖ୍ରୀଷ୍ଟପୂର୍ବ ଯୁଗରେ କେତେକ ଗ୍ରନ୍ଥରେ 'ଓଡ୍ର' ଶବ୍ଦର ପ୍ରଚଳନରୁ ଉତ୍କଳ ବା କଳିଙ୍ଗ ଦେଶର ଲୋକମାନଙ୍କୁ 'ଓଡ୍ର' କୁହାଯାଉ ଥିବାର ଜଣାଯାଏ । ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ 'ଓଡ୍ର' ଏକ ବିଭାଷା ନାମରେ ଉଲ୍ଲେଖ ରହିଅଛି ।

ଶବରାଭୀର ଚଣ୍ଡାଳ ସବର ଦ୍ରାବିଡ଼ୋଡ୍ରଜାଃ
ହୀନା ବନେଚରାଣାଂ ଚ ବିଭାଷା ନାଟକେସ୍ମୃତାଃ ।
(ଅ.୧୩)

ସ୍ଥାନୀୟ ଲୋକମାନଙ୍କର ଭାଷା ସହିତ ସଂସ୍କୃତ ଭାଷାର ମିଳନରୁ ସୃଷ୍ଟି ହୋଇଥିବା ଭାଷାମାନଙ୍କୁ ବିଭାଷା କୁହାଯାଏ ଏବଂ ନାଟକର ସେହି ଜାତିର ଚରିତ୍ରମାନେ ସେମାନଙ୍କର ନିଜ ନିଜ ଅଞ୍ଚଳର ବିଭାଷା ନାଟକରେ ବ୍ୟବହାର କରିବେ ବୋଲି ଭରତମୁନି ନାଟ୍ୟଶାସ୍ତ୍ରରେ ନିର୍ଦ୍ଦେଶ ଦେଇଛନ୍ତି । ଖ୍ରୀଷ୍ଟପୂର୍ବ ପ୍ରାୟ ୧ମ ଶତାବ୍ଦୀ ପୂର୍ବେ ଭରତମୁନି ନାଟ୍ୟଶାସ୍ତ୍ର ପ୍ରଣୟନ କରିଥିଲେ । ଅତଏବ ସେ ଯୁଗରେ ଉଡ୍ର ବା ଓଡ୍ର ଦେଶରେ ସ୍ଥାନୀୟ ଭାଷା ସହିତ ସଂସ୍କୃତ ଭାଷାର ସଂସ୍ରବ ଘଟି ଓଡ୍ର ବିଭାଷା ସୃଷ୍ଟି ହୋଇଥିଲା ବୋଲି ଜଣାଯାଏ ।

ଭରତଙ୍କ ନାଟ୍ୟ ଶାସ୍ତ୍ରରେ ବିଭିନ୍ନ ପ୍ରବୃତ୍ତିମାନଙ୍କ ମଧ୍ୟରେ ମଧ୍ୟମା ପ୍ରବୃତ୍ତି ଭାବରେ ଓଡ୍ରୀ ଓ ମାଗଧୀ ପ୍ରବୃତ୍ତିକୁ ସ୍ୱୀକାର କରାଯାଇଅଛି । (ନାଟ୍ୟ ୬/୨୬) । ବୌଦ୍ଧଗ୍ରନ୍ଥ 'ଲଳିତ ବିସ୍ତର'ରେ ବର୍ଣ୍ଣିତ ଅଛି ଯେ ବୁଦ୍ଧଦେବ ୬୪ ପ୍ରକାର ଭାଷାର ଲିପି ଜାଣିଥିଲେ । ତନ୍ମଧ୍ୟରୁ 'ଉଗ୍ରି' ଲିପି ଅନ୍ୟତମ । ଏହି 'ଉଗ୍ରି' ପାଠାନ୍ତରରେ 'ଉଡ୍ରୀ' ଲିପି ହୋଇପାରେ ବୋଲି ଅନୁମାନକରି ସ୍ୱର୍ଗତ ଡ଼କ୍ଟର ରାଜେନ୍ଦ୍ର ଲାଲ ମିତ୍ର କହନ୍ତି ଖ୍ରୀଷ୍ଟପୂର୍ବ ଷଷ୍ଠ ଶତକ ବେଳକୁ 'ଉଡ୍ରୀ' ଭାଷାର ଲିପି ମଧ୍ୟ ସୃଷ୍ଟି ହୋଇଥିବା ସମ୍ଭବ । ଖ୍ରୀଷ୍ଟୀୟ ୫ମ-୬ଷ୍ଠ ଶତାବ୍ଦୀରେ ରଚିତ ହୋଇଥିବା ଜୈନ ଗ୍ରନ୍ଥ 'ନନ୍ଦୀସୂତ୍ର'ରେ ଉଡ୍ରୀ ଲିପିର ଉଲ୍ଲେଖ ରହିଅଛି । ଅତଏବ ଉତ୍କଳ ଓ କଳିଙ୍ଗ ନାମରେ ବିଖ୍ୟାତ ଥିବା ଏହି ଅଞ୍ଚଳର ଲୋକମାନଙ୍କର ଭାଷା ଓଡ୍ର ବିଭାଷା ଓ ତା'ର ଲିପି ଉଡ୍ରୀ ଲିପି ନାମରେ ଖ୍ରୀଷ୍ଟପୂର୍ବ ଯୁଗରୁ ପରିଚିତ ଥିବାରୁ ଅନୁମତି ହୁଏ । କିନ୍ତୁ ଅଶୋକ ଓ ଖାରବେଳଙ୍କ ଶିଳାଲେଖର ଲିପି ଏହି ଉଡ୍ରୀ ଲିପି କିମ୍ବା ନୁହେଁ, ସେ ଦିଗରେ ଅଦ୍ୟାବଧି ଗବେଷଣା ହୋଇ ନାହିଁ ।

ପୁରାତନ ପ୍ରାକୃତ ବ୍ୟାକରଣ ଗ୍ରନ୍ଥମାନଙ୍କରେ 'ଉଡ୍ରୀ' ପ୍ରାକୃତର ଉଲ୍ଲେଖ ଦେଖାଯାଏ । ଖ୍ରୀଷ୍ଟାବ୍ଦ ଦ୍ୱାଦଶ ଶତାବ୍ଦୀର ଅନିରୁଦ୍ଧ ଭଟ୍ଟଙ୍କ ରଚିତ 'ପ୍ରାକୃତ କଳ୍ପତରୁ' ପୁରୁଷୋତ୍ତମ ଦେବଙ୍କ ପ୍ରାକୃତାନୁଶାସନ, ୧୬ଶ ଶତାବ୍ଦୀର ଉତ୍କଳୀୟ ପଣ୍ଡିତ କବୀନ୍ଦ୍ର ମାର୍କଣ୍ଡେୟଙ୍କ 'ପ୍ରାକୃତସର୍ବସ୍ୱ' ପ୍ରଭୃତି ଗ୍ରନ୍ଥମାନଙ୍କରେ 'ଓଡ୍ରୀ' କଳିଙ୍ଗୀ ପ୍ରଭୃତି ଅପଭ୍ରଂଶ ଭାଷାମାନଙ୍କର ଉଲ୍ଲେଖ ଦେଖାଯାଏ ।

ମାର୍କଣ୍ଡେୟ ଓଡ୍ରୀ ଅପଭ୍ରଂଶ ଭାଷାର ଏକ ଉଦାହରଣ ଦେଇଛନ୍ତି ।

ଦେବ ଜସୋ ଆଣନ୍ଦଣ କରମଇ କରୁଣା ଲେଶ,
ଏତ୍ତିକେ ଜମଉ ଅଚ୍ଛଉ ପିଚ୍ଚଇ ସବ୍ବକିଲେଶ ।

(ପ୍ରାକୃତ ସର୍ବସ୍ୱ ପୃ.୧୦୦/୧୦୧)

ଔଡ୍ରୀ ଅପଭ୍ରଂଶ ଭାଷାର ଲକ୍ଷଣ ଦର୍ଶାଇ ମାର୍କଣ୍ଡେୟ କହନ୍ତି ଓଡ୍ର ଦେଶର କଥିତ ଦେଶୀୟ ଭାଷା ସହିତ ସାବର ଭାଷା ତଥା ସୌରସେନୀ ପ୍ରାକୃତର ମିଶ୍ରଣ ଘଟି ଓଡ୍ରୀ ଅପଭ୍ରଂଶ ରୂପ ଧାରଣ କରେ ।

ସୌରସେନୀ ପ୍ରାକୃତ ମଥୁରା ଅଞ୍ଚଳରେ ପ୍ରଚଳିତ ଭାଷା ଦକ୍ଷିଣ କୋଶଳ ବା ଆଧୁନିକ ଛତିଶଗଡ଼, ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର ପ୍ରଭୃତି ଅଞ୍ଚଳର ସାବର ଭାଷା ବା ଆଦିବାସୀ ଭାଷା ସହିତ ଉଡ୍ରଦେଶ ବା ଉତ୍କଳ, କଳିଙ୍ଗର ସ୍ଥାନୀୟ ଭାଷାର ମିଶ୍ରଣ ହେତୁ ସୃଷ୍ଟି ହୋଇଥିବା ଭାଷା ଓ ଓଡ୍ରୀ ଅପଭ୍ରଂଶ ଭାବରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ପରିଚିତ ହୋଇ ଆସିଥିବାର ପ୍ରମାଣିତ ହୋଇଥାଏ ।

**୨– ଓଡ୍ର ବିଭାଷାର ସୃଷ୍ଟି**

ସ୍ଥାନୀୟ ଲୋକମାନଙ୍କର ଦେଶୀୟ କଥିତ ଭାଷା ସହିତ ସଂସ୍କୃତ (ଆର୍ଯ୍ୟ) ଭାଷାର ମିଳନ ଘଟିଲେ ତାହା 'ବିଭାଷା' ନାମରେ ଅଭିହିତ ହେଉଥିଲା । ଉତ୍କଳ/କଳିଙ୍ଗର ଆଦିମ ଅଧିବାସୀମାନଙ୍କ ମଧ୍ୟରେ ଓଡ୍ର, ଶବର, ମୁଣ୍ଡା, କନ୍ଧ ପ୍ରଭୃତି କେତେକ ବୃହତ୍ ଗୋଷ୍ଠୀ ଥିଲେ ଏବଂ ସେମାନଙ୍କ ମଧ୍ୟରେ ଓଡ୍ର ଗୋଷ୍ଠୀ ଥିଲେ ଅଧିକ ପ୍ରଭାବଶାଳୀ । ହରିବଂଶ ପୁରାଣ ପ୍ରଭୃତି ପୁରାତନ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଭାରତର ଶାସକ ରାଜବଂଶମାନଙ୍କର ବିବରଣୀରୁ ଜଣାଯାଏ ଯେ, ପ୍ରଥମ ଶକ୍ତିଶାଳୀ ସମ୍ରାଟ ବୈବସ୍ୱତମନୁ ତାଙ୍କର ଦଶପୁତ୍ର ଓ ଏକମାତ୍ର କନ୍ୟା ଇନ୍ଦାଙ୍କ ମଧ୍ୟରେ ଭାରତବର୍ଷକୁ ବାଣ୍ଟି ଦେଇ ଶାସନ ଅଧିକାର ଦେଇଥିଲେ । ଇନ୍ଦାଙ୍କ ଭାଗରେ ପଡ଼ିଥିଲା ଦକ୍ଷିଣ କୋଶଳ ତଥା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟ । ଇନ୍ଦାଙ୍କର ଚାରିପୁତ୍ରମାନଙ୍କ ମଧ୍ୟରୁ ପୁରରବା ପାଇଲେ କାଶୀ କୋଶଳ, ଗୟା ପାଇଲେ ଗୟାପ୍ରଦେଶ (ମଗଧ) ଉତ୍କଳ ପାଇଲେ ଉତ୍କଳ ଏବଂ ବିନିତାଶ୍ୱ ପାଇଲେ ଦକ୍ଷିଣ କୋଶଳ । ଅତଏବ ପୁରାତନ କାଳରୁ ଉତ୍କଳ ମଧ୍ୟ ଭାରତର ଅନ୍ୟାନ୍ୟ ସଭ୍ୟ ରାଜ୍ୟମାନଙ୍କ ପରି ସୁସଭ୍ୟ ଓ ଉତ୍ତମ ଶାସିତ ଏକ ରାଜ୍ୟ ଭାବରେ ବିଦିତଥିଲା । ଏପରିକି ପୁରରବାଙ୍କ ବଂଶରେ ରାଜତ୍ୱ କରିଥିବା ଯଯାତିଙ୍କ ନବରାଣୀଙ୍କ ମଧ୍ୟରେ ଓଡ଼ରାଷ୍ଟ୍ରଙ୍କ କନ୍ୟା ଅନ୍ୟତମା ଥିଲେ ଏବଂ ତାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ଯଯାତି ପୁତ୍ର ପ୍ରବୀର । ସେ ଓଡ୍ର ଦେଶକୁ ଶାସନ କରିଥିଲେ । ଏହି ପରମ୍ପରା ଶାରଳା ଦାସଙ୍କ ପର୍ଯ୍ୟନ୍ତ ଲୋକରେ ବିଦିତ ଥିବା ହେତୁ ଶାରଳା ଦାସ ତାଙ୍କର ଆଦ୍ୟପର୍ବ ମହାଭାରତରେ ଲେଖିଛନ୍ତି । ସୋନପୁର ସମ୍ବଲପୁର ଅଞ୍ଚଳରେ ସୋମବଂଶୀୟ ନରପତିମାନେ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରୁଥିବା କଥା ଇତିହାସରୁ ଜଣାଯାଏ ।

ଅତଏବ ବୈଦିକ ସଭ୍ୟତା ଓ ସଂସ୍କୃତ ଭାଷା ସମ୍ପର୍କରେ ଉଡ୍ରମାନେ ଏହିପରି ଶାସନାଦି ପୁତ୍ରରେ ଅତି ପ୍ରାଚୀନ କାଳରୁ ଭାରତର ଅନ୍ୟାନ୍ୟ ଅଞ୍ଚଳ ସହିତ ଜଡ଼ିତ ରହିଥିଲେ । ତେଣୁ ସଂସ୍କୃଥ ଭାଷା ଓ ଓଡ୍ର ଦେଶର ଭାଷାର ମିଶ୍ରଣରେ ଓଡ୍ର ବିଭାଷା ପ୍ରାଚୀନ କାଳରୁ ସୃଷ୍ଟି ହୋଇଥିଲା । ଓଡ଼ିଶାରେ ବ୍ରାହ୍ମଣ୍ୟ ଧର୍ମର ପ୍ରଚାର ମଧ୍ୟ ବହୁ ପୁରାତନ କାଳରୁ ଘଟିଥିଲା । ସବରମାନଙ୍କ ଦ୍ୱାରା ପୂଜିତ ବିଷ୍ଣୁ ପ୍ରତିମା ନୀଳମାଧବ ମଧ୍ୟ ଇନ୍ଦ୍ରଦ୍ୟୁମ୍ନ, ବିଦ୍ୟାପତି ପ୍ରଭୃତି ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ ଦ୍ୱାରା ପୂଜିତ ହୋଇ ବୈଦିକ ବ୍ରାହ୍ମଣ୍ୟ ଧର୍ମର ଦେବତା ଭାବରେ ଗୃହୀତ ହୋଇଥିଲେ । ପରବର୍ତ୍ତୀ କାଳରେ ବୌଦ୍ଧ ଜୈନାଦି ଧର୍ମମାନଙ୍କର ପ୍ରଚାର ଫଳରେ ଓଡ଼ିଶାର ଉଡ୍ର ବିଭାଷାରେ ପାଲି ଭାଷାର ମିଶ୍ରଣ ଘଟି ଏକ ସ୍ୱତନ୍ତ୍ର ପ୍ରକାରର ପ୍ରାକୃତ ଭାଷାର ସୃଷ୍ଟି ଘଟିଥିଲା । ମଥୁରା ଓ କୋଶଳ ଅଞ୍ଚଳ ସହିତ ଧାର୍ମିକ ତୀର୍ଥ ଯାତ୍ରା ଓ ରାଜନୈତିକ ଶାସନାଦି ସୂତ୍ରରେ ଝାଡ଼ଖଣ୍ଡ ପଥ ତଥା ନଦୀ ଅବବାହିକାମାନଙ୍କରେ ଗମନାଗମନ ଫଳରେ ଏହି ଦେଶର ଭାଷା ସହିତ ସୌରସେନୀ ପ୍ରାକୃତର ସଂସ୍ରବ ଘଟିଥିଲା । ତେଣୁ ଖାରବେଳଙ୍କ ଶିଳାଲେଖରେ ଭାଷାରେ ସୌରସେନୀ ପ୍ରାକୃତର କେତେକ ସାମଞ୍ଜସ୍ୟ ଥିବାର ଅନୁଭୂତ ହୁଏ । ଆଶୋକ ଓ ଖାରବେଳଙ୍କ ଶିଳାଲେଖଗୁଡ଼ିକରୁ ଖ୍ରୀଷ୍ଟପୂର୍ବ ତୃତୀୟରୁ-ପ୍ରଥମ ଶତାବ୍ଦୀର ଓଡ଼ିଶାର ଭାଷାର ସଙ୍କେତ ମିଳୁଥିଲେ ମଧ୍ୟ ଏହି ସମୟରେ ସହସ୍ର ସହସ୍ର ବର୍ଷର ଓଡ୍ର ବିଭାଷା ନାମରେ ସମଗ୍ର ଭାରତରେ ପରିଚିତ ହୋଇସାରିଥିଲା ।

କିନ୍ତୁ ଦୁଃଖର କଥା ଯେ, ଅଶୋକ ପୂର୍ବଯୁଗୀୟ କଳିଙ୍ଗ ଜାତି ବା ତା'ର ଓଡ୍ର ଭାଷା ସମ୍ବନ୍ଧରେ ଅଦ୍ୟାବିଧି କିଛି ତଥ୍ୟ ଆବିଷ୍କୃତ ହୋଇ ପାରିନଥିବାରୁ ଧଉଳି ପାହାଡ଼ରେ ଖୋଦିତ ହୋଇଥିବା ଅଶୋକଙ୍କ ଅନୁଶାସନର ଭାଷାକୁ ଏ ଅଞ୍ଚଳର ସ୍ଥାନୀୟ ଲୋକେ ବୁଝିପାରୁଥିବା ତଥା କହି ପାରୁଥିବା ଭାଷାର ପ୍ରାଚୀନତମ ସଂକେତ ଭାବରେ ଗ୍ରହଣ କରାଯାଇପାରେ ।

ଭାଷାତତ୍ତ୍ୱବିତ୍ ପଣ୍ଡିତମାନେ ଓଡ଼ିଆ, ବଙ୍ଗଳା, ମୈଥିଳୀ, ଅସମୀୟା ତଥା ପୂର୍ବାଞ୍ଚଳୀୟ ହିନ୍ଦୀ ମଧ୍ୟରେ ଥିବା ସାମଞ୍ଜସ୍ୟ ଭିତ୍ତିରେ ଏମାନଙ୍କୁ ମାଗଧୀପ୍ରାକୃତ ପରିବାରଭୁକ୍ତ କରିଥାନ୍ତି । ମହାରାଷ୍ଟ୍ରୀ, ପୈଶାଚୀ, ସୌରସେନୀ ପ୍ରକୃତି ଭାରତର ଅନ୍ୟାନ୍ୟ ପ୍ରାକୃତ ଭାଷାମାନଙ୍କର ପରି ମାଗଧୀ ପ୍ରାକୃତ ଏକ ସାହିତ୍ୟିକ ପ୍ରାକୃତ ହୋଇଥିବା ହେତୁ ଏବଂ ମଗଧରେ ଆଦର ପ୍ରତିଷ୍ଠା ଲାଭ କରିଥିବା ପାଲି ଭାଷାରେ ବୌଦ୍ଧ ଧର୍ମର ବିପୁଳ ସାହିତ୍ୟ ଏବଂ ଅଶୋକଙ୍କ ଅନୁଶାସନମାନ ଲିଖିତ ହୋଇଥିବା ହେତୁ ମାଗଧୀ ପ୍ରାକୃତ ଏକ ବୃହତ୍ତର ଅଞ୍ଚଳର ଲୋକ ଭାଷାର ପ୍ରତିନିଧିତ୍ୱ କରିଥାଏ । ତେଣୁ ପୂର୍ବାଞ୍ଚଳରେ ଅନ୍ୟାନ୍ୟ ଭାଷାମାନଙ୍କ ପରି ଓଡ଼ିଆ ଭାଷାକୁ ମଧ୍ୟ ମାଗଧୀ ପ୍ରାକୃତରୁ ସୃଷ୍ଟ ଏକ ଭାଷା ଭାବରେ ଅନେକ ଗ୍ରହଣ କରିଥାନ୍ତି । କିନ୍ତୁ ମୈଥିଳୀ, ବଙ୍ଗଳା ବା ଅସମୀୟା ଆଦି ଭାଷାମାନଙ୍କ ତୁଳନାରେ ଓଡ଼ିଆ ଭାଷା ଏକ ଅପେକ୍ଷାକୃତ ପୁରାତନ ଭାଷା । ଏଥିରେ ପ୍ରାଚୀନତାର ବହୁ ସଂକେତ ରହିଅଛି । ଷୋଡ଼ଶ ଶତାବ୍ଦୀର ଓଡ଼ିଆ ନରପତି କପିଳେନ୍ଦ୍ର ଦେବ 'ପରଶୁରାମ ବିଜୟ' ନାମକ ଏକ ବ୍ୟାମୋହ ବା କ୍ଷୁଦ୍ର ନାଟକ ରଚନା କରିଥିଲେ । ସଂସ୍କୃତ ନାଟକର ନିୟମାନୁସାରେ ରାଜା, ମନ୍ତ୍ରୀ, ବ୍ରାହ୍ମଣାଦିଙ୍କ ବ୍ୟତୀତ ଅନ୍ୟ ଚରିତ୍ରମାନଙ୍କ ମୁଖରେ ପ୍ରାକୃତ ଭାଷା ବ୍ୟବହୃତ ହେବା କଥା । ଏହିପରି ନିୟମର ଅନୁସରଣ କରି କପିଳେନ୍ଦ୍ର ଦେବ ପ୍ରାକୃତ ଭାଷା ଭାବରେ ଓଡ଼ିଆ ଭାଷାର ବ୍ୟବହାର କରିଅଛନ୍ତି । ଏଣୁ ଓଡ୍ର ଦେଶରେ ପ୍ରଚଳିତ ରହି ଆସିଥିବା ଭାଷା ଉଡ୍ର ବିଭାଷା, ଔଡ୍ରୀ ପ୍ରାକୃତ, ଔଡ୍ରୀ ଅପଭ୍ରଂଶ ଓ ତା'ର ଲିପି ଉଡ୍ରୀଲିପି ଭାବରେ ଯେ ଖ୍ରୀଷ୍ଟପୂର୍ବ ଯୁଗରୁ ଚଳି ଆସିଅଛି ଏଥିରେ ସନ୍ଦେହ ନାହିଁ ।

**୩– ଓଡ଼ିଶାରେ ପ୍ରଚଳିତ ପୁରାତନ ଭାଷାର ସଂକେତ**

ଓଡ଼ିଶାରେ ରହିଆସିଥିବା ଖ୍ରୀଷ୍ଟପୂର୍ବ ୩ୟ ଓ ୧ମ ଶତକର ଅଶୋକାନୁଶାସନ ଓ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ବହୁ ଶବ୍ଦର ବ୍ୟବହାର ହୋଇଛି ଯାହାକି ଅଦ୍ୟାବଧି ଓଡ଼ିଆ ଭାଷାରେ ପ୍ରଚଳିତ ଥିବାର ଦେଖାଯାଏ । ସେହି ସମୟରେ ଶିଳାଲିପି ଦ୍ୱୟ ପାଲି–ପ୍ରାକୃତ/ପ୍ରାକୃତ ଭାଷାରେ ଉତ୍‌କୀର୍ଣ୍ଣ ହୋଇଥିଲା । ପରବର୍ତ୍ତୀ ଯୁଗରେ ରାଜ କାର୍ଯ୍ୟରେ ସଂସ୍କୃତ ଭାଷାର ପ୍ରୟୋଗ କରାଯାଇଥିଲେ ମଧ୍ୟ ଓଡ଼ିଶାରେ ଉତ୍‌କୀର୍ଣ୍ଣ ହୋଇଥିବା ଶିଳାଲେଖ ଓ ତାମ୍ର ଶାସନ ବା ଦାନ ପଟ୍ଟାମାନଙ୍କର ଭାଷାରୁ ଓଡ଼ିଆ ଭାଷାର ପ୍ରଭାବର ସଂକେତ ମଧ୍ୟ ମିଳିଥାଏ ।ତାହାର କେତେକ ଉଦାହରଣ କ୍ରମାନ୍ୱୟରେ ଏଠାରେ ପ୍ରଦତ୍ତ ହେଲା । ଐତିହାସିକମାନଙ୍କ ଭିତରେ ଅଶୋକାନୁଶାସନଗୁଡ଼ିକ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ପାଲି ଭାଷାରେ ଲିଖିତ ହୋଇଥିଲା । ପାଲି ଭାଷା ସେ ଯୁଗରେ ଏକ କଥିତ ଲୋକଭାଷା ବା ପଲ୍ଲୀ ଅଞ୍ଚଳର ଭାଷା ଥିଲା । ଜର୍ମାନ୍ ଭାଷାତତ୍ତ୍ୱବିତ୍ ଓଲଡ଼େନ ବର୍ଗଙ୍କ ମତରେ ପାଲି ହେଉଛି କଳିଙ୍ଗର ଭାଷା, କାରଣ ମହେନ୍ଦ୍ର, ସଂଘମିତ୍ରା ପ୍ରଭୃତି କଳିଙ୍ଗରୁ ଯାତ୍ରା କରି ସିଂହଳାଦି ଦେଶ ବିଦେଶମାନଙ୍କରେ ଏହି ଭାଷାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ବୌଦ୍ଧଧର୍ମର ବହୁ ପୁରାତନ ତ୍ରିପିଟକାଦି ଗ୍ରନ୍ଥ ପାଲି ଭାଷାରେ ହିଁ ରଚିତ । ଅଶୋକଙ୍କ ଅନୁଶାସନଗୁଡ଼ିକ ଭାରତରେ ମାନ୍‌ସର, ଗୀର୍ଣ୍ଣାର, ସାହାବାଜଗିରି, କଳସୀ ପ୍ରଭୃତି ବିଭିନ୍ନ ସ୍ଥାନରେ ଥିଲେ ମଧ୍ୟ କଳିଙ୍ଗ ନିମିତ୍ତ ପ୍ରସ୍ତୁତ ସ୍ୱତନ୍ତ୍ର ଅନୁଶାସନ ଅବଲମ୍ବନରେ ନିମ୍ନୋକ୍ତ ଓଡ଼ିଆ ଶବ୍ଦାବଳୀ ଉଦ୍ଧାର କରାଗଲା ।

| **ଓଡ଼ିଆ** | **ପାଲି** | **ସଂସ୍କୃତ** |
|---|---|---|
| କଳିଙ୍ଗେ | କଳିଂଗ୍ୟେ | କଳିଙ୍ଗେ |
| ବିଜିତ | ବିଜିତ | ବିଜିତ |
| ସେ | ସେ | ସୋ |
| ମାତାପିତା | ମାତାପିତି | ମାତାପିତୃ |
| ମରଣେ | ମଲନେ | ମରଣେ |
| ବ୍ରାହ୍ମଣ | ବଂଭନା | ବ୍ରାହ୍ମଣାଃ |
| ଆନେ | ଅନେ | ଅନ୍ୟେ |
| ପାଷାଣ୍ଡ | ପାଶଂଡ଼ | ପାଷାଣ୍ଡ |

| | | |
|---|---|---|
| ମିତ | ମିତ | ମିତ୍ର |
| ଗୁରୁ | ଗୁଲୁ | ଗୁରୁ |
| ଖୁଦ/ଖୁଦର | ଖୁଦକ | କ୍ଷୁଦ୍ର |
| ଶତ | ଷତେ | ଶତ |
| ଇଏ/ଏଇ/ଏହି | ଇଏ | ଇୟଂ |
| ଭାଗେ | ଭାଗୋ | ଭାଗେ |
| ସିନେହ | ଷିନେହେ | ସ୍ନେହଃ |
| ଆଜ | ଅଜ | ଅଦ୍ୟ, ଇତ୍ୟାଦି |
| ଇଛା | ଇଛା | ଇଛା |
| କିଛି | କିଛି | କଶ୍ଚିତ୍ |

ସେହିପରି ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ପୂର୍ବେ ଲିଖିତ ହୋଇଥିବା ହାତୀ ଗୁମ୍ଫା ଶିଳାଲେଖର ଭାଷାରେ ମଧ୍ୟ ବହୁ ଶବ୍ଦ ବ୍ୟବହୃତ ହୋଇଅଛି ଯାହାକି ଆଦ୍ୟାବଧି ଓଡ଼ିଆ ଭାଷାରେ ପ୍ରଚଳିତ ଥିବାର ଦେଖାଯାଏ । ହାତୀଗୁମ୍ଫା ଶିଳାଲେଖର ଭାଷାକୁ କେହି କେହି ଅର୍ଦ୍ଧମାଗଧୀ ବୋଲି ଅଭିହିତ କରୁଥିଲେ ମଧ୍ୟ ଡକ୍ଟର ବେଣୀମାଧବ ବରୁଆ ଏହାକୁ ସୌରସେନା ବା ସୌରସେନୀ ପ୍ରାକୃତର ନିକଟବର୍ତ୍ତୀ ଭାଷା ବୋଲି କହିଛନ୍ତି । ଅଶୋକ ମଗଧରୁ ଆସି କଳିଙ୍ଗ ଜୟ ପରେ ଶିଳାଲେଖମାନ ଲେଖାଇଥିଲେ । କିନ୍ତୁ ଖାରବେଳ କଳିଙ୍ଗର ଲୋକ । ଅଶୋକଙ୍କ ଧଉଳୀ ଓ ଜଉଗଡ଼ ଶିଳାଲେଖର ଭାଷା ଏବଂ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖର ଭାଷା ଉଭୟ ପାଲୀ ପ୍ରାକୃତ ବା ପ୍ରାକୃତ ହୋଇଥିଲେ ମଧ୍ୟ ମାଗଧୀ, ସୌରସେନୀ, ମହାରାଷ୍ଟ୍ରୀ, ପୈଶାଚୀ ପ୍ରାକୃତମାନଙ୍କ ମଧ୍ୟରେ ଯେପରି ସୂକ୍ଷ୍ମ ପ୍ରଭେଦମାନ ଦେଖାଯାଏ ସେହିପରି ଏହି ଦୁଇ ନରପତିଙ୍କ ଶିଳାଲେଖାର ଭାଷାରେ ମଧ୍ୟ ଭେଦ ପରିଦୃଷ୍ଟ ହୁଏ । କଳିଙ୍ଗ ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫାର ଭାଷାକୁ କଳିଙ୍ଗ ଦେଶର ପ୍ରାକୃତ ଭାଷା ବୋଲି ଅଭିହିତ କରିବା ଯଥାର୍ଥ ହେବ । ହାତୀଗୁମ୍ଫାର ଭାଷା ସହିତ ଅଶୋକଙ୍କ ଶିଳାଲେଖର ଭାଷାର ନିମ୍ନ କେତେଗୋଟି ବିଷୟରେ ସାମ୍ୟ ଦେଖାଯାଉଥିବାରୁ ଉଭୟ ଭାଷା ଏହି କଳିଙ୍ଗ ଦେଶର ଭାଷା ବୋଲି ବିବେଚନା କରାଯାଇପାରେ ଏବଂ କଳିଙ୍ଗର ଭାଷା ଯେ ପାଲୀ ଭାଷା ଥିଲା ଓଲେଡ଼ନବର୍ଗଙ୍କର ଏହି ଅଭିମତ ମଧ୍ୟ ବିଶ୍ୱାସଯୋଗ୍ୟ ମନେହୁଏ । ଉଭୟ ଅଭିଲେଖ ମଧ୍ୟରେ ଯାହାକିଛି ପ୍ରଭେଦ ଦେଖାଯାଏ ତାହା କାଳଗତ ବ୍ୟବଧାନ ବଶତଃ ବା ଲିପିକାରଙ୍କର ବ୍ୟକ୍ତିଗତ ଉଚ୍ଚାରଣ ଭଙ୍ଗୀ ବଶତଃ ବୋଲି ମନେ ହୋଇଯାଇଥାଏ । ଖାରବେଳଙ୍କର ଭାଷା ନିମ୍ନ କେତେଗୋଟି ବିଷୟରେ ଆଧୁନିକ ଓଡ଼ିଆ ଭାଷା ସହିତ ସାମଞ୍ଜସ୍ୟ ଦେଖାଯାଏ ।

୧. ଧ୍ୱନିତତ୍ତ୍ୱବିତ୍‌ମାନଙ୍କ ମତରେ ଓଡ଼ିଆରେ ଶ, ଷ, ର ପ୍ରାୟ ଉଚ୍ଚାରଣ ନାହିଁ, 'ସ'ର ଉଚ୍ଚାରଣ ରହିଅଛି । ଖାରବେଳଙ୍କ ଶିଳାଲେଖରେ ଶ, ଷ ସ୍ଥାନରେ 'ସ'ର ବ୍ୟବହାର ଦେଖାଯାଏ, ଯଥା -ବିସତି (ବିଂଶତି) ସିରି (ଶ୍ରୀ) ଦିସଂ (ଦିଶଂ) ଏବଂ ବସାନି (ବର୍ଷାଣି), ଅଭିସିତୋ (ଅଭିଷିକ୍ତ) ରାଜସି (ରାଜର୍ଷି), ପୁରିସ (ପୁରୁଷ) ଇତ୍ୟାଦି ।

୨. କେବଳ ହ୍ରସ୍ୱ ସ୍ୱରମାନଙ୍କର ବ୍ୟବହାର ଦେଖାଯାଏ । କଥିତ ଓଡ଼ିଆରେ ମଧ୍ୟ ଦୀର୍ଘସ୍ୱର ଧ୍ୱନି କ୍ୱଚିତ ଉଚ୍ଚାରିତ ହୁଏ ବୋଲି ଧ୍ୱନି ବିଜ୍ଞାନୀମାନେ କହନ୍ତି ।

୩. କଥିତ ଓଡ଼ିଆ ଭାଷାରେ ବ୍ୟବହାର ପରି ଈ, ଊ, ଐ, ଔ ର ବ୍ୟବହାର ଏଥିରେ ନାହିଁ, ଯଥା-ସିରି (ଶ୍ରୀ), ପବ (ପୂର୍ବ) ଏରେଣ (ଐରେଣ) ଯୋବରଜଂ (ଯୌବରାଜ୍ୟଂ)

୪. ଫଳାର ବ୍ୟବହାର ଦେଖାଯାଏ ନାହିଁ, ଏହା କଥିତ ଓଡ଼ିଆ ଭାଷା ପରି, ଯଥା-ବିଜା (ବିଦ୍ୟା) ତତିୟେ (ତୃତୀୟେ) ପଧମେ (ପ୍ରଥମେ) ସିରି (ଶ୍ରୀ) ପାପୁନାତି (ପ୍ରାପ୍ନୋତି) ନତ (ନୃତ୍ୟ) ଇତ୍ୟାଦି । ଅନ୍ୟାନ୍ୟ ଲକ୍ଷଣଗୁଡ଼ିକ ପ୍ରାୟ ଭାରତର ଅନ୍ୟାନ୍ୟ ପ୍ରାକୃତ ଭାଷାମାନଙ୍କର ସାଧାରଣ ଲକ୍ଷଣ ପରି ।

ନିମ୍ନରେ କେତେକ ଶବ୍ଦର ତାଲିକା ଦିଆଗଲା ଯାହାକି ଅଦ୍ୟାବଧି ଓଡ଼ିଆ ଭାଷାରେ ପ୍ରଚଳିତ ଶବ୍ଦମାନଙ୍କର ନିକଟବର୍ତ୍ତୀ ।

| **ଖାରବେଳଙ୍କ ଲିପି** | **ଓଡ଼ିଆ** | **ସଂସ୍କୃତ** |
|---|---|---|
| ସବ | ସବୁ | ସର୍ବ |
| ସିରି | ଶିରି | ଶ୍ରୀ |
| ପନ୍ଦରସ | ପନ୍ଦର | ପଞ୍ଚଦଶ |

| | | |
|---|---|---|
| ପଠା (ପୟତି) | ପଠାଉଛି | ପ୍ରସ୍ଥାୟତି |
| ପଚ୍ଛିମ | ପଚ୍ଛିମ | ପଶ୍ଚିମ |
| ରତନ | ରତନ | ରତ୍ନ |
| ବାଟା | ବାଟ, ବାଟିଆ | ବର୍ତ୍ମନଃ |
| ଅଠ | ଆଠ | ଅଷ୍ଟ |
| ବଂହଣ | ବାହ୍ମୁଣ | ବ୍ରାହ୍ମଣ |
| ପୁବ | ପୂର୍ବ/ପୂବେଇ | ପୂର୍ବ |
| ତେରସ | ତେର | ତ୍ରୟୋଦଶ |
| ବାରସ | ବାର | ଦ୍ୱାଦଶ |
| ଦହ | ଦହ | ହ୍ରଦ |
| ଚକ | ଚକ | ଚକ୍ର |
| ପୁତ | ପୁତ/ପୁତା | ପୁତ୍ର |
| ଅଧ | ଅଧ/ଅଧା | ଅର୍ଦ୍ଧ |

ଓଡ଼ିଶା ବା କଳିଙ୍ଗ ଉତ୍କଳର ଅବସ୍ଥିତି ଦ୍ରାବିଡ଼ ତୌଲଙ୍ଗ ଦେଶର ସୀମାବର୍ତ୍ତୀ ହୋଇଥିବାରୁ ଏଥିରେ ଦ୍ରାବିଡ଼ୀ ପ୍ରଭାବ ବଶତଃ 'ଥ' ସ୍ଥାନରେ 'ଧ' ର ପ୍ରଚଳନ ଦେଖାଯାଏ । ଯଥା: (ପ୍ରଥମ) ପଧ (ପଥ) ରଧ (ରଥ) ଇତ୍ୟାଦି ।

ଅଶୋକଙ୍କ ରାଜତ୍ୱ ଯୁଗରେ ପାଲି ଭାଷାରେ ବୌଦ୍ଧଧର୍ମର ଗ୍ରନ୍ଥାବଳୀ ଲିଖିତ ହୋଇ ପ୍ରଚାରିତ ହୋଇଥିବା ହେତୁ ଓଡ଼ିଶାରେ ପାଲି ପ୍ରାକୃତ ଭାଷାର ପ୍ରଭାବ ମଧ୍ୟ ଲୋକ ଭାଷାକୁ ପ୍ରଭାବିତ କରିଥିଲା । ଦିଗ୍‌ବିଜୟୀ ସମ୍ରାଟ ଖାରବେଳ ମଥୁରାଞ୍ଚଳ ଜୟକରି ସେଠାରେ ନିଜ ଶାସନ ଚଳାଇବା ହେତୁ ମଥୁରାଞ୍ଚଳର ସୌରସେନୀ ପ୍ରାକୃତର ପ୍ରଭାବ ମଧ୍ୟ ଖାରବେଳଙ୍କର ଏହି ଭାଷାରେ ଦେଖାଯାଏ ।

ପୁରାଣମାନଙ୍କରେ କଳିଙ୍ଗ/ଉତ୍କଳ ଦେଶର ବିଭବ ଓ ସଭ୍ୟତାର ସୂଚନାମାନ ରହିଥିଲେ ହେଁ ଖ୍ରୀଷ୍ଟପୂର୍ବ ୧ମ/୨ୟ ଶତକ ସୁଦ୍ଧା କଳିଙ୍ଗ ସାମ୍ରାଜ୍ୟର ବିପୁଳ ସାମରିକ ସାମର୍ଥ୍ୟ, ସଂଗଠନ ଶକ୍ତି, ବିପୁଳ ବିଭବ ଓ ଆମୋଦ ପ୍ରମୋଦର ବର୍ଣ୍ଣନାରୁ ପୁରାତନ କଳିଙ୍ଗ ସଭ୍ୟତା ଓ ସଂସ୍କୃତ ଯେ ଅତ୍ୟନ୍ତ ସମୃଦ୍ଧ ଓ କଳିଙ୍ଗ ଜାତି ଯେ ଏକ ଅନମନୀୟ ଦୁର୍ଦ୍ଧର୍ଷ ସଭ୍ୟଜାତି ଭାବରେ ବିଦିତ ଥିଲେ ତାହା ସହଜରେ ଅନୁମିତ ହୁଏ । ଏହି ଜାତିକୁ ଜୟ କରିବା ପାଇଁ ମଗଧ ସମ୍ରାଟ ଅଶୋକ ହୋଇଥିଲେ ପ୍ରଲୁବଧ୍ । ପୁନଶ୍ଚ ଏପରି ଗମ୍ଭୀର ଶୈଳୀ ଓ ଶବ୍ଦ ସମ୍ଭାରରେ ଲିଖିତ ହୋଇଥିବା ଐର ନରପତି ଖାରବେଳଙ୍କ ଜୟଗାଥା ସମ୍ବଳିତ ଏହି ବିରାଟ ଶିଳାଲେଖର କାବ୍ୟିକ ଓଜସ୍ୱିନୀ ଭାଷା ଶୈଳୀରୁ କଳିଙ୍ଗର ଭାଷା ଓ ସାହିତ୍ୟର ଦୀର୍ଘ ସମୃଦ୍ଧ ପରମ୍ପରାର ଅସ୍ତିତ୍ୱ ମଧ୍ୟ ସହଜରେ ପ୍ରତିପାଦିତ ହୋଇଯାଏ, ତେଣୁ ଏହି ଭାଷାକୁ ପାଲି ବୋଲି କୁହାଯାଉଥିଲେ ମଧ୍ୟ ଏହା ବାସ୍ତବତଃ ଦେଶର ପ୍ରାକୃତ ଭାଷା ଅଟେ ।

### ୪– ଓଡ଼ିଆ ଓ ପାଲି ପ୍ରାକୃତ

ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ଭାରତ ପରିଭ୍ରମଣରେ ଆସିଥିବା ଚୀନ ପରିବ୍ରାଜକ ହୁଏନ୍‌ସାଂ କର୍ଣ୍ଣସୁବର୍ଣ୍ଣ ଓ ତାମ୍ରଲିପ୍ତ ପରିଦର୍ଶନ ପରେ 'ଉଚ୍ଚ' ବା ଉତ୍କଳକୁ ଆସିଥିଲେ । ଏହି ଅଞ୍ଚଳର ଭାଷା ଉତ୍ତର ଭାରତର ଭାଷାଠାରୁ ପୃଥକ୍ ବୋଲି ସେ ବର୍ଣ୍ଣନା କରିଅଛନ୍ତି । ଏହି ଯୁଗରେ ଭୌମକର ରାଜାମାନେ ଓଡ଼ିଶାରେ ରାଜତ୍ୱ କରୁଥିଲେ ଏବଂ ଏହି ବଂଶର ଜଣେ ରାଜା ଶୁଭାକର କେଶରୀ ଗଣ୍ଡବ୍ୟୁହ ନାମକ ଏକ ବୌଦ୍ଧଧର୍ମର ଗ୍ରନ୍ଥ ପ୍ରାଜ୍ଞନାମା ଜଣେ ଭିକ୍ଷୁଙ୍କ ହାତରେ ଚୀନ ସମ୍ରାଟଙ୍କ ପାଖକୁ ଉପହାର ପଠାଇଥିବାର ଚୀନ ଦେଶର ଇତିହାସରୁ ଜଣାଯାଏ (ଖ୍ରୀ.୭୯୫) । ମହାଯାନ ବୌଦ୍ଧଧର୍ମର ବିଭିନ୍ନ ଶାଖା ବଜ୍ରଯାନ ଓ ସହଜଯାନ ରାଜାଇନ୍ଦ୍ରଭୂତି ଓ ତାଙ୍କର ଭଗିନୀ ଲକ୍ଷ୍ମୀଙ୍କରା ଦେବୀଙ୍କ ଦ୍ୱାରା ପ୍ରଚାରିତ ହୋଇଥିଲା । ଏହି ଯୁଗରେ ଓଡ଼ିଶାରେ ପ୍ରାକୃତ ଭାଷା କ୍ରମେ ଅପଭ୍ରଂଶ ଭାଷାର ସ୍ତରରେ ପହଞ୍ଚିଥିଲା । ପାଲି, ପ୍ରାକୃତ ତଥା ଅପଭ୍ରଂଶ ଭାଷା କ୍ରମାନ୍ୱୟରେ ଖ୍ରୀ:ପୂ ୩ୟ–୧ମ ଶତାବ୍ଦୀଠାରୁ ଖ୍ରୀଷ୍ଟାବ୍ଦ ୮ମ–୯ମ ଶତାବ୍ଦୀ ପର୍ଯ୍ୟନ୍ତ ବିକଶିତ ହୋଇ ଓଡ଼ିଆ ଭାଷାକୁ କ୍ରମେ ବିବର୍ତ୍ତିତ କରୁଥିଲା । ତେଣୁ ପାଲୀ ପ୍ରାକୃତ ଓ ଅପଭ୍ରଂଶ ପ୍ରଭୃତି ପ୍ରାଚୀନ ଭାଷାର ବହୁ ଶବ୍ଦ ଅଧୁନା ପ୍ରଚଳିତ ଓଡ଼ିଆ ଭାଷାରେ ପରିଦୃଷ୍ଟ ହୁଏ । ତେଣୁ ସେହି ସାମଞ୍ଜସ୍ୟର କେତେକ ସଙ୍କେତ ନିମ୍ନରେ ପ୍ରଦତ୍ତ ହେଲା ।

| ଓଡ଼ିଆ | ପାଲି | ସଂସ୍କୃତ |
|---|---|---|
| ଘରଣୀ | ଘରଣୀ | ଗୃହିଣୀ |

| | | |
|---|---|---|
| ଅଗି | ଅଗ୍‌ଗି | ଅଗ୍ନି |
| ଅମ୍ବିଳ | ଅମ୍ବିଲୋ | ଅମ୍ଳ |
| ଆମ୍ବ | ଆମ୍ବୋ | ଆମ୍ର |
| ପୁତ | ପୁତ୍ତ | ପୁତ୍ର |
| ଏହି | ଏହି | ଏତି |
| ଔଷଧ | ଓଷଧ | ଔଷଧ |
| ଖଜୁରୀ | ଖଜ୍ଜୁରୀ | ଖର୍ଜ୍ଜୁର |
| ଘର | ଘର | ଗୃହ |
| ଗଣ୍ଠି | ଗଣ୍ଠି | ଗ୍ରନ୍ଥି |
| ତନ୍ତ | ତନ୍ତ | ତନ୍ତ |
| ପୁଚ୍ଛନ୍ତି | ପୁଚ୍ଛନ୍ତି | ପୁଚ୍ଛନ୍ତି |
| ଗଛ/ବୃଚ୍ଛ | ଗଚ୍ଛୋ | ବୃକ୍ଷ |
| ଛ | ଛ | ପଟ୍ ଇତ୍ୟାଦି |

୫– ପ୍ରାକୃତ ଭାଷା ଓ ଓଡ଼ିଆ

ଖ୍ରୀଷ୍ଟପୂର୍ବ ଯୁଗରୁ ସଂସ୍କୃତ ଭାଷାର ବିପରୀତ ଭାଷା ଭାବରେ ପ୍ରାକୃତ ପ୍ରଚଳିତ ରହିଆସିଥିବାର ପାଣିନୀ ପାତଞ୍ଜଳିଙ୍କ ଗ୍ରନ୍ଥମାନଙ୍କରୁ ଜଣାଯାଏ । ପ୍ରାକୃତ ଶବ୍ଦର ଅର୍ଥ ପ୍ରଜା ବା ଲୋକ ସାଧାର । ସେମାନଙ୍କ ଦ୍ୱାରା କଥିତ ଭାଷା 'ପ୍ରାକୃତ' ଭାଷା ନାମରେ ଅଭିହିତ । କେହି କେହି ଭାଷାତତ୍ତ୍ୱବିତ୍ ପ୍ରାକୃତ ଭାଷା ବ୍ୟାକରଣ ନିୟମରେ ମାର୍ଜିତ ହୋଇ 'ସଂସ୍କୃତ'ରେ ପରିଣତ ହୋଇଥିବାର କହୁଥିବା ବେଳେ ଅନ୍ୟ କେତେକ ସଂସ୍କୃତରୁ ପ୍ରାକୃତର ଜନ୍ମ ବୋଲି କହିଥାନ୍ତି । ତେବେ ଓଡ଼ିଶାରେ ଲୋକକଥିତ ଭାଷା 'ପ୍ରାକୃତ' ନାମରେ କଥିତ ଏବଂ ଓଡ଼ିଆ ଭାଷାରେ ରଚିତ ଭାଗବତର ଭାଷାକୁ ପ୍ରାକୃତ ଭାଷା ବୋଲି ଜଗନ୍ନାଥ ଦାସ ବାରମ୍ବାର ଉଲ୍ଲେଖ କରିଛନ୍ତି:

'କହଇ ଦାସ ଜଗନ୍ନାଥ ।
ପ୍ରାକୃତ ବନ୍ଧେ ଭାଗବତ ।'

ଅତଏବ ପ୍ରାକୃତ ଭାଷା ସହିତ ଓଡ଼ିଆ ଭାଷାର ସମ୍ବନ୍ଧ ଖୁବ୍ ଘନିଷ୍ଠ ଓ ନିକଟବର୍ତ୍ତୀ ମନେହୁଏ । ଏହି ପ୍ରାକୃତରୁ ହିଁ ଅପଭ୍ରଂଶ ଭାଷାର ସ୍ତରଦେଇ ପ୍ରାଚୀନ ଓଡ଼ିଆ ଭାଷା ଗଢି ଉଠିଥିଲା । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀଠାରୁ ଖ୍ରୀ. ଅ ୭ମ ଶତାବ୍ଦୀ ପର୍ଯ୍ୟନ୍ତ ପାଲି ଔଡ୍ରୀ–କାଳିଙ୍ଗୀ ପ୍ରାକୃତ ଅତିକ୍ରମ ପରେ ୭ମ ଶତାବ୍ଦୀରୁ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ଅପଭ୍ରଂଶ ସ୍ତର ଦେଇ ୧୧ଶ ଶତାବ୍ଦୀଠାରୁ ଆଧୁନିକ ଆର୍ଯ୍ୟ ଓଡ଼ିଆ ଭାଷାର ସୃଷ୍ଟି ହେବାର ପ୍ରମାଣ ମିଳିଥାଏ ।

ନିମ୍ନ ତାଲିକାରୁ ଓଡ଼ିଆ ଭାଷା ଓ ପ୍ରାକୃତ ମଧ୍ୟରେ ଥିବା ସମ୍ବନ୍ଧ ନିର୍ଣ୍ଣୟ କରିହେବ ।

| **ଓଡ଼ିଆ** | **ପ୍ରାକୃତ** | **ସଂସ୍କୃତ** |
|---|---|---|
| କାହିଁ | କହିଁ | କସ୍ମିନ୍ |
| ନାହି | ନହି | ନାସ୍ତି |
| ହେଠ | ହେଟ୍‌ଥ | ଅଧସ୍ତାତ୍ |
| ପୋଢୁଁହା | ପୁଢୁମ | ପ୍ରଥମ |
| ତେର | ତେରହ | ତ୍ରୟୋଦଶ |
| ମଉଡ | ମଉଡ | ମୁକୁଟ |
| ଦହ | ଦହ | ହ୍ରଦ |
| ମେହୁ | ମେହ | ମେଘ |
| ମିଛ | ମିଚ୍ଛା | ମିଥ୍ୟା |
| କାହ୍ନୁ | କଣ୍ହ | କୃଷ୍ଣ |
| ହିଆ | ହିଅଅ | ହୃଦୟ |
| ସିଆଳ | ସିଆଲୋ | ଶୃଗାଳ |
| ଡାଳିମ | ଡାଲିମ | ଦାଡିମ |
| ନଈ | ଣଈ | ନଦୀ |
| ସେଜ | ସେଜ୍ଜା | ଶଯ୍ୟା |
| ରସି | ରସ୍‌ସି | ରଶ୍ମି |
| ପଲଙ୍କ | ପଲ୍ଲଙ୍କ | ପର୍ଯ୍ୟଙ୍କ |
| ମାଛି | ମଚ୍ଛିଆ | ମକ୍ଷିକା |
| ଖୁମ୍ବ | ଖମ୍ବ | ସ୍ତମ୍ଭ |
| ମସାଣି | ମସାଣ | ଶ୍ମଶାନ |
| ଫୋଡ/ଫୋଟକା | ଫୋଟଅ | ସ୍ଫୋଟକ |
| ଦହି | ଦହି | ଦଧି ଇତ୍ୟାଦି |

**୬– ଓଡ଼ିଆ ଭାଷା ଓ ମାଗଧୀ ଅପଭ୍ରଂଶ**

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀଠାରୁ ୧୦ମ–୧୧ଶ ଶତାବ୍ଦୀ ମଧ୍ୟରେ ମାଗଧୀ ପ୍ରାକୃତରୁ ସୃଷ୍ଟି ହୋଇଥିବା ମାଗଧୀ ଅପଭ୍ରଂଶ ଭାଷାରେ ରଚିତ ହୋଇଥିବା ବଜ୍ରଯାନୀ ବୌଦ୍ଧ ସିଦ୍ଧମାନଙ୍କର

ବହୁଗୀତିକା ଓ ଦୋହା ନେପାଳରୁ ଆବିଷ୍କୃତ ହୋଇ 'ବୌଦ୍ଧଗାନ ଓ ଦୋହା' ଚର୍ଯ୍ୟାପଦ, ଚର୍ଯ୍ୟା ଗୀତିକା ଆଦି ନାମରେ ପ୍ରକାଶିତ ହୋଇଅଛି । ଏହାର ରଚୟିତାମାନେ ବଙ୍ଗଳା, ବିହାର, ଆସାମ ପ୍ରଭୃତିର ଲୋକ ଥିଲେ ଓ ତାହାର ଭାଷାକୁ ପ୍ରାଚୀନ ବଙ୍ଗଳା, ପ୍ରାଚୀନ ହିନ୍ଦୀ, ପ୍ରାଚୀନ ଆସାମୀ ଭାବରେ ଗବେଷକମାନେ ପ୍ରମାଣିତ କରୁଥିବା ବେଳେ ଓଡ଼ିଆର ସର୍ବାଧିକ ସଂଖ୍ୟକ ଲେଖକ ଏହି ଗୀତିକା ପ୍ରାଚୀନ ଓଡ଼ିଆ ଅପଭ୍ରଂଶ ଭାଷାରେ ରଚନା କରିଥିବାର ପ୍ରମାଣିତ ହୁଏ । କାହ୍ନୁପାଦ, ଲୁଇପାଦ, ସବରୀ ପାଦ, ଡେମ୍ଭୀପାଦ ପ୍ରଭୃତି ଓଡ଼ିଶାର ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କର ପଦମାନଙ୍କରେ ଓଡ଼ିଶାରୁ ସୃଷ୍ଟି ହୋଇଥିବା ତାନ୍ତ୍ରିକ ବଜ୍ରଯାନର ଦାର୍ଶନିକ ତତ୍ତ୍ୱମାନଙ୍କର ଧାରା ଯେପରି ପଞ୍ଚସଖା, ଚୈତନ୍ୟ ଦାସ, ଭୀମଭୋଇଙ୍କ ରଚନାମାନଙ୍କରେ ଦେଖାଯାଏ, ସେହିପରି ଚର୍ଯ୍ୟାଗୀତିକାମାନଙ୍କର ଭାଷାର ଅନୁରୂପ ବ୍ୟବହାର ମଧ୍ୟଯୁଗୀୟ ଓଡ଼ିଆ ନିର୍ଗୁଣ ସାହିତ୍ୟରେ ଦେଖାଯାଇଥାଏ ।

**୭– ଦ୍ରାବୀଡ ଭାଷାର ପ୍ରଭାବ**

ପୁରାତନ ଓଡ଼ିଶାର ଆଦିମ ଅଧିବାସୀ ଓଡ୍ର, ଶବରାଦି ମାନଙ୍କର ଭାଷା ସହିତ ବୈଦିକ ସଂସ୍କୃତ ଭାଷାର ସଂସ୍ରବ ହେତୁ ଯେପରି ଓଡ଼ିଆ ଭାଷାର ମୂଳପିଣ୍ଡ ପ୍ରସ୍ତୁତ ହୋଇଥିଲା, ଦକ୍ଷିଣ ଭାରତୀୟ, ତେଲଙ୍ଗା, ତାମିଲ ପ୍ରଭୃତି ଭାଷା ଗୋଷ୍ଠୀର ଲୋକମାନଙ୍କ ସଂସ୍ରବରେ ଆସିବା ଦ୍ୱାରା ସେମାନଙ୍କର ଭାଷା ଦ୍ୱାରା ମଧ୍ୟ ଆଦାନପ୍ରଦାନ ସୂତ୍ରରେ ପ୍ରଭାବିତ ହେଲା । ବିଶେଷତଃ ଶଙ୍କର, ରାମାନୁଚାର୍ଯ୍ୟ ପ୍ରମୁଖ ଦାକ୍ଷିଣାତ୍ୟର ଧର୍ମ ପ୍ରଚାରକମାନଙ୍କର ପୁରୀରେ ଧର୍ମପ୍ରଚାର ଦ୍ୱାରା ଦାକ୍ଷିଣାତ୍ୟର ଭାଷା ଓଡ଼ିଶାରେ ପ୍ରବେଶ କରୁଥିଲା । ପୁନଶ୍ଚ ଗଙ୍ଗବଂଶୀୟ ଶାସକମାନେ ମଧ୍ୟ ଦକ୍ଷିଣ ଓଡ଼ିଶାର କଳିଙ୍ଗ ନଗରଠାରୁ ଆସି କଟକରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ପୁନଶ୍ଚ ସୂର୍ଯ୍ୟ ବଂଶୀୟ ନରପତି କପିଳେନ୍ଦ୍ର, ପୁରୁଷୋତ୍ତମ, ପ୍ରତାପରୁଦ୍ରଙ୍କର ସାମ୍ରାଜ୍ୟ ସୁଦୂର କୃଷ୍ଣାକାବେରୀ ଅବବାହିକା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଣୁ ଶାସନ, ରାଜନୀତି ଓ ଧର୍ମ ପ୍ରଚାର ମାଧ୍ୟମରେ ଓଡ଼ିଆ ଭାଷାରେ ବହୁ ତେଲୁଗୁ, ତାମିଲ ଆଦି ଦ୍ରାବିଡ ଭାଷାମାନଙ୍କର ପ୍ରଭାବ ପଡିଥିଲା । ଏଠାରେ ଆଦିବାସୀ, ଦ୍ରାବିଡ ଭାଷା ଗୋଷ୍ଠୀର ଶବ୍ଦମାନଙ୍କର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହେଲା–

| **ଆଦିବାସୀ ଭାଷା** | **ଓଡ଼ିଆ ଭାଷା** |
|---|---|
| କୁଡି (ମୁଣ୍ଡା ଭାଷା) | କୋଡି |
| ଚାଉଳି ,, | ଚାଉଳ |
| ଟୁଙ୍କିଓ ,, | ଟୋକେଇ |
| ଚେନ୍‌ରେ ,, | ଚେମେରୀ |
| ସେଟା ,, | ହେଟା |
| ଓରା ,, | ଓରା |
| ଅରମୁ (ସାନ୍ତାଳୀ) | ଅରମା (ଜଙ୍ଗଲିଆ) |
| ଚାଳ ,, | ଚାଳ |
| ବାଉଟିଆ ,, | ବାହୁଟିଆ (ହରିଣ) |
| ଭୋଗ୍‌ଓଡା ,, | ବଗଡା (ମୋଟା) |
| **ତାମିଲ** | **ଓଡ଼ିଆ** |
| ପଳେ | ପଲେ (ଦଳେ) |
| କୁଡେମ୍ | କୁଣ୍ଡ |
| ତୋ–ଟ–ଏମ୍ | ତୋଟା |
| କୋ–ଟ–ଅଇ | କୋଟ୍ଟ (ଦୁର୍ଗ) |
| ସିନ୍ନ | ସାନ |
| କଟେଲ (କାନ୍ଦିବା) | କଟାଳ |
| | |
| **ତେଲଗୁ** | **ଓଡ଼ିଆ** |
| ମୁନଗ୍ (ସଜନା ଛୁଇଁ) | ମୁନିଗା, ମୁନିଆ |
| ପିଲ୍ଲି (ବିଲେଇ) | ବିଲ୍ଲି |
| କୁଡୁ (ଖାଦ୍ୟ) | କୋଡୁଆ (ଖାଦ୍ୟପାତ୍ର) |
| କୋୟିଲ | କୋଇଲି |
| ଗିନ୍ନେ | ଗିନା |
| ଇଡିଲି | ଏଣ୍ଡୁରି |
| ଆର୍‌ସା | ଆରିସା (ପିଠା) |
| ମାଣ | ମାଣ |
| ଅଡା | ଅଡା |
| ଗୁଣ୍ଡ | ଗୁଣ୍ଡ |
| କଡା | କଡା |
| ବୋଡି | ବୋଡି (୫ଟା) ଇତ୍ୟାଦି |

## ୮- ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା-ଓଡ଼ିଆର କ୍ରମବିକାଶ

ପୁରାତନ ସଂସ୍କୃତ, ପ୍ରାକୃତ, ଅପଭ୍ରଂଶାଦି ବିଭିନ୍ନ ସ୍ତର ଅତିକ୍ରମ କରି ଖ୍ରୀଷ୍ଟୀୟ ୧୧ଶ-୧୨ଶ ଶତାବ୍ଦୀ ବେଳକୁ ଓଡ଼ିଆ ସ୍ୱତନ୍ତ୍ର ଭାବରେ ସ୍ୱୟଂ ସମୃଦ୍ଧ ଏକ ଆଧୁନିକ ଭାରତୀୟ ଏକ ପ୍ରାଦେଶିକ ଭାଷା ଭାବରେ ପ୍ରତିଷ୍ଠା ଲାଭ କଲା । ମାଗଧୀ ପ୍ରାକୃତ ଭାଷାରୁ ସୃଷ୍ଟି ହୋଇଥିବା ଆଧୁନିକ ବଙ୍ଗଳା, ମୈଥିଳୀ, ଆସାମୀୟା ପ୍ରଭୃତି ଭାଷାମାନଙ୍କ ତୁଳନାରେ ଓଡ଼ିଆ ଭାଷା ଅଧିକ ପୁରାତନ ଓ ଏଥିରେ ସ୍ୱକୀୟ ମୌଳିକତାର ବହୁ ସଂକେତ ଅଦ୍ୟାବଧି ବିଦ୍ୟମାନ ଅଛି । ତେଣୁ ପର୍ଯ୍ୟାୟକ୍ରମେ ଏହାର ବିକାଶ ଧାରା ଏଠାରେ ଅନୁଶୀଳନ କରାଯାଉଅଛି ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବା ମଙ୍ଗଳ କବିତା ପରି ବହୁ ଲୋକ ଗୀତ, ନାଥ ଯୋଗୀ ଓ ବୈଷ୍ଣବ ଜୟଦେବ ପ୍ରଭୃତିଙ୍କ ନାମରେ ଭଣିତ ହୋଇଥିବା କବିତା, ସୋମନାଥ ବ୍ରତକଥା ପରି କେତେକ ଓଷା ବ୍ରତର କଥା ଏବଂ ମାଦଳାପାଞ୍ଜି ପରି କେତେକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥମାନଙ୍କର ସନ୍ଧାନ ମିଳୁଥିଲେ ମଧ୍ୟ ସେଗୁଡ଼ିକ ବାରମ୍ବାର ପୁର୍ନଲିଖିତ ଓ ଆବୃତ ହେବା ଫଳରେ ଲେଖକମାନେ ତଥା ପାଠକମାନେ ନିଜ ନିଜର ସମସାମୟିକ ଭାଷା ରୁଚି ଅନୁସାରେ ସେଗୁଡ଼ିକ ମାର୍ଜିତ ଓ ଯୁଗୋପଯୋଗୀ କରିବାର ଚେଷ୍ଟା କରି ଆସିଅଛନ୍ତି । ତେଣୁ ଭାଷାତତ୍ତ୍ୱ ଦୃଷ୍ଟିରୁ ସେଥିରେ ପ୍ରାଚୀନତାର ବହୁ ସଂକେତ ରହିଥିଲେ ମଧ୍ୟ ତତ୍କାଳୀନ ଭାଷାର ପ୍ରକୃତ ରୂପରେଖ ସେସବୁ ଗ୍ରନ୍ଥମାନଙ୍କର ଉପଲବ୍ଧ ହୋଇପାରେ ନାହିଁ । ଅତଏବ ଏହି ଦୀର୍ଘ ସମୟ ମଧ୍ୟରେ ଓଡ଼ିଆ ଭାଷାର ରୂପରେଖ ସମ୍ବନ୍ଧରେ ବହୁ ଦୃଷ୍ଟାନ୍ତ ଓଡ଼ିଶାରୁ ମିଳୁଥିବା ଶିଳାଲେଖ, ତାମ୍ର ଶାସନ ବା ଦାନପଟ୍ଟାମାନଙ୍କରୁ ମିଳିଥାଏ । ଏଗୁଡ଼ିକ ଅଧିକାଂଶ ରାଜକୀୟ ଦାନପଟ୍ଟା ବା ବିବରଣୀ ହୋଇଥିବା ହେତୁ ଏଥିରେ ବ୍ୟବହୃତ ଭାଷା ଓ ବାକ୍ୟ ରଚନା ଶୈଳୀ ପ୍ରାୟ ଗତାନୁଗତିକ ଏବଂ ବିଦ୍ୱତ୍ ସୁଲଭ ଲୋକମୁଖର ଭାଷା ବା ସାହିତ୍ୟିକର ଭାଷା ଏଥିରେ ବ୍ୟବହୃତ ହୋଇ ନଥିବା ହେତୁ ସେପରି ଭାଷାର ପରିଚୟ ଏଥିରୁ ମିଳେନାହିଁ ତଥାପି ଓଡ଼ିଆ ଭାଷାର କ୍ରମବିବର୍ତ୍ତନ ଧାରା ଅନୁଶୀଳନ ବେଳେ ଏଗୁଡ଼ିକ ଓଡ଼ିଆ ଭାଷାର ପ୍ରାଚୀନ ରାଜକୀୟ ପ୍ରାଧାନ୍ୟ ସମ୍ବନ୍ଧରେ ପ୍ରତ୍ୟକ୍ଷ ପ୍ରମାଣ ରୂପେ ବିବେଚିତ ହୋଇଥାନ୍ତି ।

## ୯- ଦେବଳ ଦେବଙ୍କ ନୃସିଂହନାଥ ମନ୍ଦିରର ଶିଳାଲେଖ

୧- ସମ୍ବଲପୁର ଜିଲ୍ଲାର ନୃସିଂହନାଥ ମନ୍ଦିରରେ ଥିବା ଦେବଳ ଦେବଙ୍କ ଲେଖନଟିକୁ ପ୍ରାୟ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ପ୍ରଥମ ଓଡ଼ିଆ ଲେଖବୋଲି କେହି କେହି ଅନୁମାନ କରନ୍ତି, ଯଥା: ଓଁ ନମ ଶ୍ରୀ ନିସଂଘ X X X ସ୍ୱସ୍ତି ଶ୍ରୀ ଉନସି ନାମ ସମ୍ବତ୍ସରରେ ଚୈତ୍ର ପୂର୍ଣ୍ଣିମା ଶୁକ୍ଳପକ୍ଷେ ହସ୍ତା ନକ୍ଷତ୍ରେ ପଟଣା ନଗରସ୍ଥିତ ବସ୍ତାନୁଜଦେବ ରାଜାଙ୍କ ଜ୍ୟେଷ୍ଠ ପୁତ୍ର ଦେବଳ ଦେବରାଜ ନରସିଂହ ତୀର୍ଥେ ଗୋତ୍ର ମାର୍ଦ୍ଦନ ପର୍ବତେ ବିରଳା ନରସିଂଘନାଥ ସ୍ୱାମୀଙ୍କ ଦେଉଳ ତୋଳାଇଲା ନିଜେ X X X ଇତ୍ୟାଦି ।

୨- ଖ୍ରୀଷ୍ଟୀୟ ୭ମ ଅଷ୍ଟମ ଶତାବ୍ଦୀ ମଧ୍ୟରେ ଧର୍ମରାଜ ଦେବଙ୍କ ୨ୟଙ୍କ ନିବିନାଗ୍ରାମ ତାମ୍ର ଶାସନରେ ବର୍ଣ୍ଣିତ ଜମି ଦାନ ସମ୍ବନ୍ଧରେ ଜମିର ସୀମା ନିର୍ଣ୍ଣୟ ପ୍ରସଙ୍ଗରେ ଓଡ଼ିଆ ଭାଷାର ବ୍ୟବହାର କରାଯାଇଅଛି । ଯଥା: ପଶ୍ଚିମ ଦିଶହ ତୃକୁଟ ଆଡପୋପାଳି ବଣରାଇ ବାଲ୍ମୀକ ବଙ୍ଗସିଲ ବଣରାଇ । ଉତ୍ତର ଦଶହି ତୃକୁଟ ପାଣି ସାସତରି ମଣିବାଧେବଣି ଉତ୍ତର ଦିସହି ଦିଘସିଳ । ପୂବେହି ଅତବଣରାଇ ବାଡ ଇତ୍ୟାଦି ।

ଏହି ତାମ୍ର ଶାସନର ଲେଖରେ ପୂବ, ଦକ୍ଷିଣ, ଉତର, ଗାଡି (ଗାଡିଆ) ପାଣି ଦିସ, ରାଇ, ବାଡ, ବଣ ପ୍ରଭୃତି ଶବ୍ଦ ପ୍ରାକୃତ ଭାଷା ରୂପେ ବ୍ୟବହୃତ ହୋଇଅଛି, ଯାହାକି ଓଡ଼ିଆ ଭାଷାରେ ରୂପାନ୍ତରିତ ହୋଇଅଛି ।

୩- ଏହିପରି ସଂକ୍ରାନ୍ତି କାଳୀନ ଓଡ଼ିଆ ଭାଷାର ସଂକେତ ଗଣ୍ଡିବେଢା ଶିଳାଲେଖ ମଧୁକାମାର୍ଣ୍ଣବ ଦେବଙ୍କ ଦାନ ଶାସନ, ଅନନ୍ତ ବର୍ମା ବଜ୍ର ହସ୍ତ ଦେବଙ୍କ ସମକାଳୀନ ଉରଜାମ ଶିଳାଲେଖ, ବଜ୍ରହସ୍ତ ଦେବଙ୍କ ସମୟର ନୃସିଂହ ସ୍ୱାମୀ ମଠର କାନ୍ଥଲେଖରେ ପ୍ରାଚୀନତମ ଓଡ଼ିଆ ଭାଷା ଓ ଲିପିର ବ୍ୟବହାର ଦେଖାଯାଏ । ଓଡ଼ିଆ ଭାଷାର ଏହି ପ୍ରାଚୀନତମ ସଂକେତମାନଙ୍କରୁ ଜଣାଯାଏ ଯେ, ଗଙ୍ଗରାଜତ୍ୱ ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟୀୟ ୬ଷ୍ଠ-୭ମ ଶତାବ୍ଦୀଠାରୁ ଓଡ଼ିଆ ଭାଷା ଲିଖିତ ଭାଷା ଭାବରେ ବ୍ୟବହୃତ ହୋଇ ଆସୁଅଛି । ଶ୍ରୀକୂର୍ମଠାରେ ଉତ୍କୀର୍ଣ୍ଣ ଥିବା ଗଙ୍ଗଯୁଗୀୟ ଗୋଟିଏ ଶିଳାଲେଖରେ ତେଲୁଗୁ ଲିପିରେ କିପରି ଓଡ଼ିଆ ଭାଷା ବ୍ୟବହାର କରାଯାଇ ତେଲୁଗୁ ଲୋକମାନଙ୍କୁ ଓଡ଼ିଆ ଭାଷାରେ ଆଦେଶ, ଅନୁଶାସନ ଆଦି

ପ୍ରଦାନ କରାଯାଉ ଥିଲା ତା'ର ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

'ଶ୍ରୀବୀର ଭାନୁଦେବଙ୍କର ବିଜୟ ରାଜ୍ୟ ସମ୍ବତ୍ସର ୧୨ ସ୍ରାହି ମେସ ସୁକ୍ଳ ୧୧ ଗୁରୁବାରେ ଶ୍ରୀକୂର୍ମ ଭୋଗ ପରୀକ୍ଷ କଳିଙ୍ଗ ପରୀକ୍ଷ ଯାତ୍ର ଶ୍ରୀ ପୁରୁଷୋତ୍ତମ ଜେନାଙ୍କର ଅଧିକାର ସମସ୍ତ ସଞ୍ଚାଦି ବେହରଣ ବିଦ୍ୟମାନ । ଶ୍ରୀ କୂର୍ମନାଥ ଦେବଙ୍କର ତୁଳସୀ ଗ୍ରାମମାଜି (ମଝି) ନାରାୟଣ ଜେନାଙ୍କର ଦତ ଅଖଣ୍ଡ ଦୀପ ଦୁଇକି ଗୋରୁ ସଏକ (ଶହେ ଏକ) । ଏରଖୁବାଳ (ରଖୁଆଳ) ଭାତ ବରତନକଇ ନିତ (ନିତ୍ୟ) ଦେଉଳ ଦେବା ଭାତ ଭରିମାଣ ୧୬ ମଳିକନାଇର ଫଳକଇ ଭାତ ବରତନ ସହିତେ । ଦୁଇମାଣ କୁଞ୍ଚା ଭାତ ନାରାୟଣ ଫଳକୁ ଭାତ ଦୁଇମାଣ ଦୁଇଅଡା । ଇଦୀପ ତୋଳନ୍ତା ମେଇକାପ (ମେକାପ) କଇ ଭାତ ମାଣେକ ଗା (ଏ) ଭାତ ୧୬ କଇ ଶ୍ରୀ କୂର୍ମନାଥ ଦେବଙ୍କର ଭଣ୍ଡାର କଇ ପଦ୍ମନିଧି ରୂପେଣ ଦତ୍ତ ସୁନାଖଣ୍ଡ ପଞ୍ଚାସ ମାଡ ୫୦ ଏନ୍ୟା ଏ ଯାବତ ଚନ୍ଦ୍ରାର୍କସ୍ତାଇ ଦତ୍ତ ।

### ୧– ସୂର୍ଯ୍ୟବଂଶ ଯୁଗୀୟ ଓଡ଼ିଆ ଭାଷା

ଏହି ଯୁଗରେ ଓଡ଼ିଆଭାଷା ଓ ସାହିତ୍ୟର ବିପୁଳ ଉନ୍ନତି ସାଧିତ ହୋଇଥିଲା । ବହୁ ଗ୍ରନ୍ଥ ରଚିତ ହୋଇଥିଲା । ଶାରଳା ଦାସ, ମାର୍କଣ୍ଡ ଦାସ, ଅର୍ଜୁନ ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ, ଶିଶୁ ଅନନ୍ତ ଦାସ ପ୍ରମୁଖ କବିଗଣଙ୍କର ଆବିର୍ଭାବ ଘଟିଥିଲା । ସେମାନେ ମହାଭାରତ, ରାମାୟଣ, ଭାଗବତ, ହରିବଂଶ ପ୍ରଭୃତି ପୁରାଣମାନଙ୍କୁ ଓଡ଼ିଆରେ ରଚନା କରିଥିଲେ । ଶ୍ରୀମଦ୍ ଭାଗବତ ଗୀତାର ଅନୁବାଦ ସହିତ ତା'ର ଅନୁକରଣରେ ବହୁ ଗ୍ରନ୍ଥ ରଚନା କରିଥିଲେ । ଗୀତା, ସଂହିତା, ପଟ୍ଟଳ, ନିର୍ଣ୍ଣୟ, ଗାହା, ଦୋହା ପ୍ରଭୃତି ରୀତିରେ ଧର୍ମଗ୍ରନ୍ଥ ପ୍ରଣୟନ ସହିତ ଚଉତିଶା, କୋଇଲି, ଚଉପଦି, ବୋଲି ପ୍ରଭୃତି ରୀତିରେ ଓଡ଼ିଆ ଗୀତି କବିତାକୁ ସମୃଦ୍ଧ କରିଥିଲେ । ଗଙ୍ଗଯୁଗର କୌଣସି ବଳିଷ୍ଠ ସାହିତ୍ୟିକ ରଚନା ନିର୍ଦ୍ଦିଷ୍ଟ ଭାବେ ନିର୍ଣ୍ଣୟ କରାଯାଇ ପାରୁନଥିବା ବେଳେ ଗଙ୍ଗଯୁଗର ବହୁ ଅଭିଲେଖରୁ ଓଡ଼ିଆ ଭାଷାର ଶକ୍ତିଶାଳୀ ପ୍ରୟୋଗର ଦୃଷ୍ଟାନ୍ତ ଦେଖାଯାଏ । ଗଙ୍ଗଯୁଗରେ ଓ ସୂର୍ଯ୍ୟ ବଂଶ ଯୁଗରେ ଓଡ଼ିଶାର ସୀମା ଦାକ୍ଷିଣାତ୍ୟରେ ବହୁଦୂର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିବା ହେତୁ ଆଧୁନିକ ଆନ୍ଧ୍ର ଓ ତାମିଲନାଡୁରେ ବହୁ ସଂଖ୍ୟକ ଓଡ଼ିଆ ଅଭିଲେଖରୁ ସମୃଦ୍ଧ ଓଡ଼ିଆ ଭାଷାର ବ୍ୟବହାର ଦେଖାଯାଏ । ବିଶାଖାପାଟଣା ଜିଲ୍ଲାର ସିଂହାଚଳଠାରେ ଥିବା ନୃସିଂହନାଥ ମନ୍ଦିର ଶ୍ରୀକାକୁଳମ୍ ଜିଲ୍ଲାର ଶ୍ରୀକୂର୍ମଠାରେ ଥିବା କୂର୍ମନାଥ ମନ୍ଦିର, ପୁରୀ, ଭୁବନେଶ୍ୱର ଓ ତା'ର ଆଖ ପାଖ ଗ୍ରାମ, ମଠମାନଙ୍କରେ ଗଙ୍ଗଯୁଗୀୟ ବହୁ ଅଭିଲେଖ ଓଡ଼ିଆ ବା ଓଡ଼ିଆ ମିଶା ସଂସ୍କୃତ କିମ୍ବା ଓଡ଼ିଆ ମିଶା ତେଲଗୁ, ଓଡ଼ିଆ ତାମିଲ ଭାଷାରେ ବହୁ ଲେଖ ଲିଖିତ ହୋଇଥିବାର ଦେଖାଯାଏ । ଏମାନଙ୍କ ମଧ୍ୟରେ ନରସିଂହ ଦେବଙ୍କ ରେମୁଣା ତାମ୍ର ଶାସନ (୧୨୭୮–୧୩୦୫) କୃପ୍ପିସାହସମଲ୍ଲଙ୍କ (୧୩୩୦ ଖ୍ରୀ.ଅ) ଶ୍ରୀକୂର୍ମ ଶିଳାଲେଖ ୩ୟ ନରସିଂହ ଦେବଙ୍କ ସମକାଳୀନ (୧୩୨୮–୫୨) ଭୁବନେଶ୍ୱର ମନ୍ଦିରର ଦ୍ୱିଭାଷିକ ଓଡ଼ିଆ ଓ ତାମିଲ ଶିଳାଲେଖ ଭୂପାଳ ପଡିରାୟଙ୍କ (୧୩୭୨)ର ଶିଳାଲେଖ, ପୁରୀ ତ୍ରିମାଳୀ ମଠ ଓ ଶଙ୍କରାନନ୍ଦ ମଠର ତାମ୍ର ଶାସନମାନଙ୍କରୁ ଗଙ୍ଗଯୁଗୀୟ ଓଡ଼ିଆ ଭାଷାର ସୁନ୍ଦର ନିଦର୍ଶନ ମିଳିଥାଏ । ଏହି ଯୁଗକୁ ଓଡ଼ିଆ ବିଭକ୍ତ୍ୟନ୍ତମାନଙ୍କର ବହୁଳ ବ୍ୟବହାର ଦେଖାଯାଏ ଯଥା:

୨ୟା ବିଭକ୍ତ୍ୟନ୍ତ– କି (ମାସିକି, ଦୁଇକି) କୁ–ଶ୍ରୀ ଭଣ୍ଡାରକୁ ତେଲଗୁ ପ୍ରଭାବରେ ୨ୟା ଓ ୪ର୍ଥୀ ବିଭକ୍ତିରେ 'କୈ' ପ୍ରତ୍ୟୟାନ୍ତ ଦେଖାଯାଏ, ଯଥା– ଭୋଂଗେକୈ, ଭଲିବାକୈ, ଛାଡିବାକୈ, ଅଖଣ୍ଡଦୀପକୈ, ପ୍ରକରଣକୈ ଇତ୍ୟାଦି କୈ ପ୍ରତ୍ୟୟ ଓଡ଼ିଆ ରଚନାମାନଙ୍କରେ ଦୀର୍ଘକାଳ 'କଇ' ଭାବରେ ବ୍ୟବହୃତ ହୋଇ ଆସିଥିଲା ।

୫ମୀ ବିଭକ୍ତ–'ରୁ' ବ୍ୟବହାର

୬ଷ୍ଠୀ–'ଙ୍କ' ଙ୍କର– ଦେବଙ୍କର, ପଣ୍ଡ୍ୟା (ପଣ୍ଡା)ଙ୍କର

୭ମୀ– 'ରେ'– ଅଦ୍ଧିକାରେ, ଗୁରୁବାରେ ଇତ୍ୟାଦି ।

ଅତଏବ ଗଙ୍ଗଯୁଗରେ ଆଧୁନିକ ଓଡ଼ିଆ ଭାଷାର ସମସ୍ତ ଲକ୍ଷଣ ବିକଶିତ ସ୍ତରକୁ ଆସି ସାରି ଥିବାର ନିଶ୍ଚିନ୍ତ ଭାବେ ପ୍ରମାଣିତ ହୁଏ ।

ଓଡ଼ିଆ ଭାଷାର ଗଠନରୀତି କିପରି ବିବର୍ତ୍ତିତ ହୋଇ ଆସୁଥିଲା ତା'ର ସୂଚନା ମଧ୍ୟ ଏ ଯୁଗର ଆଦି ମହାକବି ସାରଳା ଦାସଙ୍କ ମହାଭାରତ ଭାଷାରୁ ସନ୍ଧାନ କରାଯାଏ ।

**୧– ସଂସ୍କୃତରୀତିରେ ଗଠିତ ଶବ୍ଦାବଳୀ**

ଆମ୍ଭର, ତୋର, ତୋହର ପ୍ରଭୃତି ବିଭକ୍ତିରେ ବ୍ୟବହୃତ ଯଥା:

ଆମ୍ଭର ଲଙ୍ଘିଲେ ଗୋ ନାଶ ଯିବ ସଂସାର,
ତୋହର ଥା'ନ୍ତେ ନାଶଗଲେ ପାଣ୍ଡବେ କେମନ୍ତେ ।

ମଧ୍ୟପୁରୁଷ କ୍ରିୟା ପଦ ଅନ୍ତରେ 'ସି' ବା 'ଅସି' ବ୍ୟବହାର, ଶୁଣସି, କହସି, ଯାସି (ଯାଅ) ଇତ୍ୟାଦି ।

**୨– ପ୍ରାକୃତରୀତିରେ ଗଠିତ ଶବ୍ଦାବଳୀ**

କ) ୬ଷ୍ଠୀ ପରିବର୍ତ୍ତେ ୪ର୍ଥୀର ପ୍ରୟୋଗ

ତୋର ଆଜ୍ଞା ଶିରୋଧାର୍ଯ୍ୟ ମୋତେ ।

ଖ) 'ଆ' କାରାନ୍ତ ଶବ୍ଦର 'ଏ' ପରିଣତି ବିଭକ୍ତ୍ୟନ୍ତରୂପେ ବ୍ୟବହୃତ ସଭାଏ, ଦ୍ୱାରାକାଏ ଇତ୍ୟାଦି ।

ଗ) ସପ୍ତମୀରେ 'ଇ' କାରାନ୍ତ– ଦେଶଇ, ହସ୍ତଇ ଇତ୍ୟାଦି

ସ୍ୱାର୍ଥରେ କ୍ରିୟା ପଦରୁ 'କ' ପ୍ରୟୋଗ–

କରିବାକ, ହୋଇବାକ, କହିଲେକ,

ଘ) ହୋଇବା, ଘେନିମା ଇତ୍ୟାଦି ହୁଅନ୍ତୁ ଘେନାନ୍ତୁ ଅର୍ଥରେ ବ୍ୟବହୃତ ।

**୩– ଶୁଦ୍ଧ ଓଡ଼ିଆ ରୀତିର ବିକାଶ**

କ) ଅସମାପିକା କ୍ରିୟାର ସମାପିକା ରୂପେ ବ୍ୟବହାର କରି (କରିବ), ହରି (ହରିବ), ବାଜି (ବାଜିଲା) ଇତ୍ୟାଦି ।

ଖ) ହୋଇଛୁଟିକି, କରିଛୁଟିକି ପ୍ରଭୃତିର ବ୍ୟବହାର ।

ଗ) ଆମ୍ଭନ୍ତ, ତୁମ୍ଭନ୍ତ, ମାନନ୍ତି, ଜନନ୍ତ ପ୍ରଭୃତିର ୨ୟା ଓ ୪ର୍ଥୀରେ ବ୍ୟବହାର ।

ଘ) ରଖନ୍ତା, ଦିଅନ୍ତା, ଦେଖନ୍ତା ପ୍ରଭୃତି 'ଶତୃ' ପ୍ରତ୍ୟୟ ମୂଳକ ଶବ୍ଦର ପ୍ରଥମା ବିଭକ୍ତିରେ ପ୍ରୟୋଗ ।

ଙ) ୫ମୀ ବିଭକ୍ତିରେ 'ତହୁଁ' ଓ 'କୁ'ର ବ୍ୟବହାର ।

ଆମ୍ଭତହୁଁ, ତୁମ୍ଭତହୁଁ ଇତ୍ୟାଦି ହେତୁ ଅର୍ଥରେ ଦେଲାକୁ, କହିଲାକୁ, କଲାକୁ ଇତ୍ୟାଦି ।

ଚ) ୨ୟାରେ 'କୁ' କଇର ବ୍ୟବହାର

ମୁଁ କୁ, ତୁମକୁ, ତାକୁ, ମୋହକଇ, ତୁମ୍ଭକଇ, ଦେବକଇ ଇତ୍ୟାଦି ।

**ଛ) ତଦ୍‌ଭବ ଶବ୍ଦ ସୃଷ୍ଟି**

ମୋହ ପାଶ– ମୁହାଁସ, ଦ୍ରୋହୀ– ଦୋରେହା, ମଦୟ– ମୟାଣ, କନକ–କଣୟ, ସାଗର–ସାହେର, ଧିକ୍ ଭାଷା– ଝିଙ୍ଗାସ୍, ସକଳ–ସୟଳ ଇତ୍ୟାଦି । ଏହା ବ୍ୟତୀତ ବହୁ ବିଶୁଦ୍ଧ ଓଡ଼ିଆ ଶବ୍ଦମାନଙ୍କର ବ୍ୟବହାର ମଧ୍ୟ ଦେଖାଯାଏ । ଏହି ଶବ୍ଦଗୁଡ଼ିକରୁ ଓଡ଼ିଆ ଭାଷାର ଅତି ପ୍ରାଚୀନ ପରମ୍ପରାର ସଙ୍କେତ ମିଳିଥାଏ । ଯଥା– ଅଧାଟି, ଅଧାମ, ଅଲଟା, ଭବୁରା ଆଗଭଳି, ଉଚବାଚ, ଉଡାଉଳ, ଉଦଣ୍ଡ, ତ୍ରିପଣ୍ଡ, ପହିଜ, ତଡଳି, ତିହୁଡି, ବିଖଣ୍ଡ, ଶୟଳ, ହାଳହୋଳ, ବୁନ୍ଦାହୋଳ, ଖୁରାଣି, ଖୁରୁଷାଣି, ଖୁରିଶାସି, ଖଡିଆଳି, କରାଣ୍ଡି, କଲତି, ଗଉଡ, ଭାଉଡ, କରୁଣି, ଖୁଗୁଚିଆ, ଖୁଣ୍ଟରି, ପଙ୍ଗୁପାଳ, ମୁରାଟ ସିଂହଡା, ସଂକୋଚ, ପୋଏଲା, ପରିମୁଣ୍ଡା, ଆମଞ୍ଝ, ବିଶାବନ୍ଧ, କେବଣ, କେହ୍ନେ, ତେହ୍ନେ, ଏହେନେକ, ଅପାଙ୍ଗ ଚାହେଁ ମାତ୍ରକେ ।

ଏଥି ସହିତ ସଂସ୍କୃତ ମୂଳଶବ୍ଦ, ତତ୍ସମ ଏବଂ ସଂସ୍କୃତରୁ ସୃଷ୍ଟ ଶବ୍ଦ (ତଦ୍‌ଭବ)ମାନଙ୍କର ସମାହାରରେ ବିପୁଳ ଓଡ଼ିଆ ଭାଷାର ବିପୁଳ ବିକାଶ ସାଧିତ ହୋଇଥିବାର ବହୁ ସୂଚନା ଶାରଳା ମହାଭାରତ, ବଳରାମ ଦାସଙ୍କ ଦାଣ୍ଡିରାମାୟଣ, ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶ ଆଦିରୁ ମିଳିଥାଏ । ଜଗନ୍ନାଥ ଦାସଙ୍କ 'ଭାଗବତ'ର ଭାଷା ଅଧିକ ଉନ୍ନତ, ମାର୍ଜିତ । ଏଥିରେ ପ୍ରାକୃତ ଓଡ଼ିଆ ଏବଂ ସରଳ ସଂସ୍କୃତର ସୁନ୍ଦର ସମନ୍ୱୟ ଘଟିବାରୁ ଏହାର ଭାଷାଗତ ଶିଳ୍ପ ସୌନ୍ଦର୍ଯ୍ୟ ସର୍ବାଧିକ ଲୋକପ୍ରିୟତା ଲାଭ କରିଅଛି । ଶୁଦ୍ଧ ଓଡ଼ିଆ ଶବ୍ଦମାନଙ୍କର ପ୍ରୟୋଗ କୌଶଳରେ ଜଗନ୍ନାଥ ଦାସଙ୍କ ଦକ୍ଷତା ତାଙ୍କର ସହଜ କବିତ୍ୱର ପ୍ରମାଣ ଦିଏ, କତି, ଧଡପଡ, ଦୋଚାରୁଣୀ, ପୋୟେ, ମନସାଧ, ଭିଆଣ, ନିରୋଳ, ପରିମାଣି, ଅନ୍ୟୋଅନ୍ୟେ, ଶୟଳ, ଛଟପଟ ଆଦି ବହୁ ଶବ୍ଦମାନଙ୍କର ସୁନ୍ଦର ବ୍ୟବହାର ହେତୁ ଭାଗବତର ଭାଷା ଜୀବନ୍ତ ହୋଇପାରିଛି ।

**୨– ଦାଣ୍ଡି ରାମାୟଣର ଭାଷା**

ଓଡ଼ିଆ ଜାତିର ବିଶ୍ୱକୋଷ ସଦୃଶ ଶାରଳା ମହାଭାରତ ପରି ବଳରାମ ଦାସଙ୍କ ଦାଣ୍ଡି ରାମାୟଣର ଭାଷାରେ ମଧ୍ୟ

୧୫ଶ-୧୬ଶ ଶତାବ୍ଦୀର ଓଡ଼ିଆ ଭାଷାର ସୁପ୍ରତିଷ୍ଠ ରୂପ ଦେଖାଯାଏ ।

୧) ବିଭକ୍ତି ପ୍ରୟୋଗ:

ପ୍ରଥମାରେ 'ଏ' ପ୍ରୟୋଗ- କଥାଏ, ଦେବତାଏ, ରାଜାଏ,

ଦ୍ୱିତୀୟା ଓ ୪ର୍ଥୀ ଏକ ବଚନରେ 'କଇ' ପ୍ରତ୍ୟୟ- ଲଙ୍କାକଇ, ଆମ୍ଭକଇ, ମଞ୍ଚକଇ ଇତ୍ୟାଦି ।

୨ୟା ଓ ୪ର୍ଥୀ ବହୁ ବଚନରେ ନ୍ତ' ପ୍ରୟୋଗ-

ଆମ୍ଭନ୍ତ, ପୁତ୍ରନ୍ତ, ତାହାନ୍ତ, ପରଜାନ୍ତ, ଦେବତାନ୍ତ ଇତ୍ୟାଦି ।

୨) କ୍ରିୟା: ନିମିତ୍ତାର୍ଥରେ 'ତ' 'ତେ' ଯୋଗ ଛାଡିତେ, ଦେଖିତେ କହିତେ, କରିତ, କହିତ, ଦେଖିତ ଆଦି ସ୍ୱାର୍ଥେ 'କ' ଓ 'ସି'ର ପ୍ରୟୋଗ କରିବାକ, ଦେଖିବାକ, କରସି, ଯାସି ଇତ୍ୟାଦି ।

### ୩) ଅନ୍ୟାନ୍ୟ ପ୍ରାଚୀନ ପ୍ରୟୋଗ

ନୁହସି, କହକିନା, ପାଇବାକ, ବହେଣୀ (ଭଉଣୀ) କହଣା, ପରିଘାଇ, ଯିସିଯିସ ଇତ୍ୟାଦି ।

ଏହିପରି ଭାଷା ତାତ୍ତ୍ୱିକ ବୈଶିଷ୍ଟ୍ୟ ଓଡ଼ିଆ ଭାଷାର ଜଗନ୍ନାଥ ଦାସଙ୍କ 'ତୁଳାଭିଣା', ଶିଶୁଅନନ୍ତ ଦାସଙ୍କ 'ହେତୁ ଉଦୟ ଭାଗବତ' ଏବଂ ପଞ୍ଚଶଖା ବୈଷ୍ଣବମାନଙ୍କର ଅନ୍ୟାନ୍ୟ ରଚନାରେ ମଧ୍ୟ ଦେଖାଯାଏ ।

### ୪) ଯୋଗ ଶାସ୍ତ୍ରୀୟ ଭାଷା

ଏହି ଯୁଗରେ ସାହିତ୍ୟ ନିର୍ଗୁଣ ବ୍ରହ୍ମୋପାସନା ମୂଳକ ହୋଇଥିବା କାରଣରୁ ସନ୍ଥ କବିମାନଙ୍କର ନିର୍ଗୁଣ ସାହିତ୍ୟରେ ବହୁ ଶବ୍ଦର ପ୍ରୟୋଗ ହୋଇଅଛି । ଏଗୁଡିକର ଅର୍ଥ ଅତ୍ୟନ୍ତ ନିଗୂଢ ଏବଂ ସାଧକମାନଙ୍କର ଅନୁଭୂତି ସାପେକ୍ଷ । ଏଠାରେ କେତେକ ସେପରି ଶବ୍ଦର ନମୁନା ପ୍ରଦତ୍ତ ହେଲା:

ଅନାହତ- ଶରୀରସ୍ଥ ଷଡଚକ୍ର ମଧ୍ୟରେ ତୃତୀୟ ଚକ୍ର

ଅଜପା- ବାହ୍ୟ ଅବଲମ୍ବନ ବ୍ୟତୀତ ଅନ୍ତରରେ ଜପ ପ୍ରକ୍ରିୟା

ଅମୃତ-ତତ୍ତ୍ୱଜ୍ଞାନ

ଅମନ-ମନ ପ୍ରାଣର ଏକୀଭୂତ ଅବସ୍ଥା

ଅମଡା ଅପୋଡା-ଶରୀରସ୍ଥ ବ୍ରହ୍ମରନ୍ଧ୍ର ଓ ସହସ୍ରାରମଣ୍ଡଳ

ଅଣାକାର-ନିର୍ଗୁଣ ବ୍ରହ୍ମର ଅପ୍ରକାଶିତ ଅବସ୍ଥା

ଅଶୂନ୍ୟଶୂନ୍ୟ- ଆକାଶରେ ବିନ୍ଦୁରୂପୀ ଶୂନ୍ୟ ବ୍ରହ୍ମ

ଅବର୍ଣ୍ଣ- ବର୍ଣ୍ଣାତୀତ ବ୍ରହ୍ମ

ଅବନା-ଅଲେଖ ବ୍ରହ୍ମ ପ୍ରତୀକ ମନ୍ତ୍ର ବିଶେଷ

ଅମୁହାଁ ଦେଉଳ- ଅନାହତ ମଣ୍ଡଳ

ଅତୁଳ ଅମପା- ଅନିୟନ୍ତ୍ରିତ ଓ ଅନିୟମିତ ଶ୍ୱାସବାୟୁ

ଅଭକ୍ଷ- ଅଭକ୍ଷା ରେଚକରେ ପହଞ୍ଚିପାରୁ ନଥିବାରୁ

ଅନ୍ଧ- ଅଜ୍ଞାନ, ଅଚେତନ

ଅଗ୍ନି- ବାସନାଗ୍ନି, ଜ୍ଞାନାଗ୍ନି ।

ଏହିପରି ଆକାଶ ମଣ୍ଡଳ, ଅଗମ୍ୟଭୂଇଁ, ଓଲଟ ବୃକ୍ଷ, ଅର୍ଦ୍ଧମାତ୍ରା, ଷଟଚକ୍ର, କାଉଁରୀ ମଣ୍ଡଳ, ଭ୍ରମର ଗୁମ୍ଫା, ବଙ୍କନାଳ, ସପ୍ତପାତାଳ, ଅଷ୍ଟବସ୍ତୁ, ନବମୁନି, ଦଶଦ୍ୱାର, ଏକାଦଶରୁଦ୍ର, ଦ୍ୱାଦଶ ଆଦିତ୍ୟ, ପଚିଶତତ୍ତ୍ୱ ଇତ୍ୟାଦି ଅଜସ୍ରଗୂଢ଼ ଅର୍ଥପୂର୍ଣ୍ଣ ଶବ୍ଦମାନଙ୍କର ବ୍ୟବହାର କରାଯାଇଅଛି । ପଞ୍ଚସଖା ଓ ସେମାନଙ୍କର ଅନୁଗାମୀ କବିମାନଙ୍କ ରଚନାରେ ଏହାର ବହୁଳତା ଦେଖାଯାଏ । ଏସବୁ ଓଡ଼ିଆ ଭାଷାକୁ ସମୃଦ୍ଧିମନ୍ତ ଓ ଗମ୍ଭୀରତା ଦାନରେ ସାହାଯ୍ୟ କରିଛନ୍ତି ।

### ୩- ପୁରାତନ ଓଡ଼ିଆ ଗଦ୍ୟ ଶୈଳୀ

ସୂର୍ଯ୍ୟବଂଶୀୟ ନରପତି କପିଳେନ୍ଦ୍ର, ପୁରୁଷୋତ୍ତମ ଓ ପ୍ରତାପରୁଦ୍ର ଦେବଙ୍କ ଯୁଗରେ ସାହିତ୍ୟିକ ପଦ୍ୟ ଭାଷାର ଯେପରି ଭୂୟ ବିକାଶ ଘଟିଥିଲା ଗଦ୍ୟ ଭାଷାର ମଧ୍ୟ ସେହିପରି ବିକାଶ ଘଟିଥିଲା । କଥିତ ଗଦ୍ୟ ଭାଷାକୁ ଶୃଙ୍ଖଳିତ କରି ଲେଖିବାର ଚେଷ୍ଟା କିପରି କରାଯାଇଥିଲା ତା'ର ଉଦାହରଣ ଅଭିଲେଖମାନଙ୍କରୁ ବଳରାମ ଦାସଙ୍କ ବ୍ରହ୍ମଗୀତାରୁ ଏବଂ ଜଗନ୍ନାଥ ଦାସଙ୍କ 'ତୁଳାଭିଣା'ରୁ ମିଳିଥାଏ । କପିଳେନ୍ଦ୍ର ଦେବଙ୍କ

ଦ୍ୱାରା ଉତ୍‌କୀର୍ଣ୍ଣ ଜଗନ୍ନାଥ ମନ୍ଦିରର ଜୟ ବିଜୟ ଦ୍ୱାରର ଶିଳାଲେଖର ଗୋଟିଏ ନମୁନା ଏଠାରେ ପ୍ରଦାନ କରାଗଲା ।

'ବୀର ଶ୍ରୀ ଗଜପତି ଗୌଡେଶ୍ୱର ପ୍ରତାପ କପିଳେଶ୍ୱର ଦେବ ମହାରାଜଙ୍କ ବିଜେ ସମୟେ ସମସ୍ତ ୧୯ ଅଙ୍କ ସ୍ରାହି ମେଷ ଅମାବାସ୍ୟା ରବିବାରରେ ମଲ୍ଲିକା ପରିଷାଦିରୁ ବିଜେକରି ବାହୁଡି କଟକାଇ ଶ୍ରୀ ପୁରୁଷୋତ୍ତମ କଟକେ ବୀର ମଣୋହି ବିଜେ ସମୟେ ଶ୍ରୀଚରଣ ଅଗ୍ରତେ କୋଠଘର ସାମନ୍ତରା ପରିଚ୍ଛା ରଘୁଦେୟାନ ନରେନ୍ଦ୍ର ଦନାଇ ଛାଡ କରାଇଲାକୁ ଆଜ୍ଞା ହୋଇଲା । ଶ୍ରୀ ପୁରୁଷୋତ୍ତମର ପୁଣ୍ଡରୀକ ଗୋପ ସାଢି ଦେଲୁ । ଏଥିରୁ ଯେ ଲଂଘଇ ସେ ଶ୍ରୀଜଗନ୍ନାଥଙ୍କୁ ଦ୍ରୋହ କରଇ । ଏ ମୁଦଲ କେଳାଇ ଖୁଣ୍ଟିଆ କରାଇଲା,'' । ଅଭିଲେଖର ଗଦ୍ୟମାନଙ୍କରେ ଏପରି ଦୀର୍ଘ ବାକ୍ୟ ବିନ୍ୟାସ ଓ ଗମ୍ଭୀର ଶୈଳୀ ସଂସ୍କୃତ ବାଣଭଟ୍ଟୀୟ କାଦମ୍ବରୀର ଗଦ୍ୟ ଶୈଳୀକୁ ସ୍ମରଣ କରାଇଦିଏ । କିନ୍ତୁ ଖାରବେଳଙ୍କ ଯୁଗରେ ଯେପରି ସନ୍ଧି ସମାସ ବହୁଳ ଦୀର୍ଘବାକ୍ୟ ବିନ୍ୟାସର ଗମ୍ଭୀରତା ଭିତରେ ସମ୍ରାଟଙ୍କର ରାଜକୀୟ ଚାମ୍ଭୀର୍ଯ୍ୟ ଫୁଟି ଉଠୁଥିଲା । ଆଲୋଚ୍ୟ କପିଳେନ୍ଦ୍ର, ଦେବଙ୍କର ଅଭିଲେଖମାନଙ୍କର ଭାଷାରେ ତଥା ସମସାମୟିକ ମାଦଳା ପାଞ୍ଜିର ଭାଷାରେ ତଥା ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ 'ରୁଦ୍ରସୁଧାନିଧି'ରେ ଉଚ୍ଚକୋଟୀର ଶୈଳୀ ସମ୍ପନ୍ନ ସେହିପରି ଅନୁରୂପ ରାଜକୀୟ ଗାମ୍ଭୀର୍ଯ୍ୟର ସୂଚନା ମିଳେ । ଅପର ପକ୍ଷରେ ତୁଳାଭିଣା ଓ ବ୍ରହ୍ମଗୀତାରେ ଧର୍ମ ପ୍ରଚାରକ ସନ୍ଥ ବୈଷ୍ଣବ କବିମାନଙ୍କର ସରଳତା ବାକ୍ୟ ରଚନାରେ କ୍ଷୁଦ୍ରତା ଓ ଭାବପ୍ରକାଶରେ ସଂକ୍ଷିପ୍ତତାର ପରିଚୟ ମିଳେ । ରାଜାଙ୍କର ଅଭିଲେଖ ରାଜକର୍ମଚାରୀ, ପାରିଷଦ ଓ ଶାସକବର୍ଗଙ୍କ ପ୍ରତି ଅଭିପ୍ରେତ ଥିବାବେଳେ ବଳରାମ ଦାସ, ଜଗନ୍ନାଥ ଦାସ ପ୍ରମୁଖ ସନ୍ଥ କବିମାନଙ୍କର ଲକ୍ଷ୍ୟ ଥିଲା ଶିକ୍ଷିତ, ଅଳ୍ପଶିକ୍ଷିତ ବା ଅଶିକ୍ଷିତ ଜନସାଧାରଣଙ୍କୁ ଧର୍ମୋପଦେଶ ପ୍ରଦାନ କରାଇବା । ତେଣୁ ଦୁଇ ଗଦ୍ୟଶୈଳୀ ମଧ୍ୟରେ ପାର୍ଥକ୍ୟ ଫୁଟି ଉଠିବା ସ୍ୱାଭାବିକ, ଏପରି ଗଦ୍ୟଶୈଳୀ ଓଡ଼ିଶାରେ ଦୀର୍ଘକାଳଧରି ପ୍ରଚଳିତ ରହିଆସି ଅଛି । ଅଭିଲେଖଗୁଡିକ ବିଦଗ୍ଧ ସୁଲଭ ସାହିତ୍ୟିକ ଶ୍ରେଣୀର ଲିଖିତ ଭାଷା ଶୈଳୀର ନିକଟବର୍ତ୍ତୀ ଥିବାବେଳେ ସନ୍ଥମାନଙ୍କର ଭାଷାଶୈଳୀ ଲୋକମୁଖର କଥିତ ଭାଷା ଶୈଳୀର ସମୀପବର୍ତ୍ତୀ । ଓଡ଼ିଆ ଭାଷାରେ ରଚିତ ହୋଇଥିବା ଓଷା ବ୍ରତ କଥା ବା ଅନ୍ୟାନ୍ୟ ଲୋକଗଳ୍ପର ଶୈଳୀ ପ୍ରାୟ ଏହିପରି କଥିତ ଭାଷା ଶୈଳୀର ସମୀପବର୍ତ୍ତୀ । ପରବର୍ତ୍ତୀ କାଳରେ ଶିବଦାସଙ୍କ ବେତାଳ ପଞ୍ଚବିଂଶତି କଥା, ବ୍ରଜନାଥ ବଡଜେନାଙ୍କର ଚତୁର ବିନୋଦର ଗଦ୍ୟ ଭାଷା ଶୈଳୀ ଏହିପରି କଥିତ ଭାଷା ଶୈଳୀର ଅନୁକୂଳ । କିନ୍ତୁ ପରାଧୀନତା ଯୁଗରେ ଯାବନିକ ତୁର୍କୀ ଆଫଗାନ୍ ଶାସକମାନଙ୍କର ଭାଷାର ପ୍ରଭାବ ହେତୁ ବହୁ ପାରସୀ ଆରବୀ ଶବ୍ଦର ବ୍ୟବହାର ଚତୁର ବିନୋଦରେ ଦେଖାଯାଏ । କିନ୍ତୁ ବ୍ରଜନାଥ ବଡଜେନା ଥିଲେ ସୁପଣ୍ଡିତ, ଅଧୀତ ବହୁଶାସ୍ତ୍ର, କାବ୍ୟତତ୍ତ୍ୱ ବିଶାରଦ, ବୈଷ୍ଣବ ଦାର୍ଶନିକ କବି ଏବଂ ଓଡ଼ିଆ ରୀତିଯୁଗରେ ଅନ୍ୟତମ ପ୍ରଥିତ ଯଶାକବି । ତେଣୁ ତାଙ୍କର ବିଦଗ୍ଧତା, ରସିକତା ଓ ଦାର୍ଶନିକତାର ପ୍ରତିଫଳନ ଯେଉଁ ସ୍ଥଳରେ ଘଟିଛି ଚତୁର ବିନୋଦର ଭାଷା ହୋଇଛି ସେଠାରେ ସଂସ୍କୃତ ପ୍ରଭାବିତ, ଶବ୍ଦ ବିନ୍ୟାସରେ ଦେଖାଦେଇଛି ଆଡମ୍ବରପୂର୍ଣ୍ଣ ସନ୍ଧି ସମାସ ବହୁଳତା ଓ ବାକ୍ୟ ବିନ୍ୟାସରେ ଦୀର୍ଘତା ।

### ୪– ମୁସଲମାନ ମରହଟ୍ଟା ଯୁଗର କାବ୍ୟଯୁଗୀୟ ଓଡ଼ିଆ ଭାଷା

୧୫୬୮ ମସିହାରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇବା ପରେ ଏ ଦେଶରେ ତୁର୍କୀ–ଆଫଗାନ ମୋଗଲ–ମରହଟ୍ଟାମାନେ କ୍ରମାନ୍ୱୟରେ ୧୮୦୩ ସାଲ ପର୍ଯ୍ୟନ୍ତ ଶାସନ କରିଥିଲେ । ବିଶେଷତଃ ମୋଗଲ ଶାସନର ପ୍ରଭାବ ହେତୁ ଓଡ଼ିଶାର ଭାଷାରେ ବହୁ ମୁସଲମାନ କଥିତ ପାରସୀ–ଆରବୀ ଶବ୍ଦର ପ୍ରଚଳନ ଘଟିଲା । ପୁନଶ୍ଚ ଓଡ଼ିଶାର କବିଗଣ ସଂସ୍କୃତ କାବ୍ୟଧାରା ଅନୁସରଣରେ ପୌରାଣିକ ଓ ଲୌକିକ କାବ୍ୟମାନ ରଚନା କରିବା ହେତୁ ଓଡ଼ିଆ କାବ୍ୟ କବିତାମାନଙ୍କରେ ସଂସ୍କୃତ ଭାଷାର ବହୁଳ ପ୍ରଭାବ ଅନୁଭୂତ ହେଲା । ଓଡ଼ିଶା ଦୀର୍ଘକାଳ ଧରି ସଂସ୍କୃତ ଭାଷା, ଅଳଙ୍କାର ଓ କାବ୍ୟଶାସ୍ତ୍ର ଚର୍ଚ୍ଚାର ଏକ ପ୍ରସିଦ୍ଧ କେନ୍ଦ୍ରଥିଲା । ତେଣୁ କବି ଦୀନକୃଷ୍ଣ, ଧନଞ୍ଜୟ, ଉପେନ୍ଦ୍ର, ବଳଦେବ ରଥ, ଅଭିମନ୍ୟୁ, ବ୍ରଜନାଥ, ଯଦୁମଣି ମହାପାତ୍ର, ଭକ୍ତଚରଣ ଦାସ, ଗୋପାଳକୃଷ୍ଣ ଦାସ ପ୍ରଭୃତି ବିଶିଷ୍ଟ ରୀତିଯୁଗୀୟ କାବ୍ୟଲେଖକମାନଙ୍କ କୃତିରେ ସଂସ୍କୃତ ଭାଷାର

ଶବ୍ଦାଡମ୍ବର, ଅର୍ଥପ୍ରୌଢ଼ି, ଅଳଙ୍କାର ବିନ୍ୟାସ, ଉଚ୍ଚକୋଟୀର ସନ୍ଧି ସମାସ ସମ୍ବଳିତ ବର୍ଣ୍ଣନା ବିଳାସ ଦେଖାଦେଲା । ତନ୍ମଧ୍ୟରେ ମୋଗଲ ଶାସନ କର୍ତ୍ତାମାନଙ୍କ ବ୍ୟବହୃତ ଯାବନିକ ଭାଷା ଶାସନସୂତ୍ରରେ ଲୋକ ପରିଚିତି ଲାଭ କରି କାବ୍ୟମାନଙ୍କରେ ମଧ୍ୟ ସ୍ଥାନ ପାଇଲା । ସଂସ୍କୃତ ପ୍ରାଧାନ୍ୟ ଓ ବୈଦେଶିକ ଭାଷାର ପ୍ରଭାବସତ୍ତ୍ୱେ ଓଡ଼ିଆ କବିମାନଙ୍କ ରଚନାରେ ଶୁଦ୍ଧ ଓଡ଼ିଆ ଶବ୍ଦାବଳୀ ମଧ୍ୟ ବିଚିତ୍ର ଶୋଭାରେ ସ୍ଥାନଲାଭ କରିଛନ୍ତି ।

### ୫- ସଂସ୍କୃତରଚନା ଶୈଳୀର ବ୍ୟତିକ୍ରମ

ପରାଧୀନତାର ପ୍ରଥମ ପର୍ବରେ ଅର୍ଥାତ୍ ୧୬ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରଚିତ ହୋଇଥିବା ଅର୍ଜ୍ଜୁନ ଦାସଙ୍କ ରାମବିଭା, ଶିଶୁଶଙ୍କରଙ୍କର 'ଉଷାଭିଳାଷ', କାର୍ତ୍ତିକ ଦାସଙ୍କର ରୁକ୍ମିଣୀବିଭା, ନରସିଂହ ସେଣଙ୍କର ପରିମଳା ଆଦି କାବ୍ୟମାନଙ୍କରେ ଓଡ଼ିଆ ଭାଷାର ସରଳ ଲୌକିକ ପ୍ରୟୋଗ ଥିଲା । କିନ୍ତୁ ଦୀନକୃଷ୍ଣ, ଧନଞ୍ଜୟ ଓ ଉପେନ୍ଦ୍ର, ଅଭିମନ୍ୟୁ ପ୍ରମୁଖ ଅପେକ୍ଷାକୃତ ଉଚ୍ଚକୋଟୀର ବିଦଗ୍ଧ ଶୈଳୀରେ କାବ୍ୟ ରଚନା କରି ଓଡ଼ିଆ ଭାଷାକୁ ଆଭିଜାତ୍ୟ ସମ୍ପନ୍ନ କରିଦେଲେ । ପଞ୍ଚସଖାଦି ନିର୍ଗୁଣପନ୍ଥୀ ବୈଷ୍ଣବ କବିମାନେ ନିର୍ଗୁଣ ବ୍ରହ୍ମତତ୍ତ୍ୱର ବିପୁଳ ଚର୍ଚ୍ଚାକରି ଯେପରି ଓଡ଼ିଆ ଭାଷା ସାହିତ୍ୟକୁ ଗାମ୍ଭୀର୍ଯ୍ୟ ମଣ୍ଡିତ କରି ଦେଇଥିଲେ, ରୀତିଯୁଗ ବା କାବ୍ୟଯୁଗର କବିମାନେ ସେହିପରି ଭାଷାକୁ ରସାଳତା ଦାନ କରି ପୁଷ୍ଟି ସମ୍ପାଦନ କରିଥିଲେ । କାବ୍ୟ ଯୁଗରେ କବିମାନେ ସଂସ୍କୃତ କାବ୍ୟତତ୍ତ୍ୱ, ଅଳଙ୍କାର, ଛନ୍ଦଶାସ୍ତ୍ର, ବ୍ୟାକରଣତତ୍ତ୍ୱାଦି ଦ୍ୱାରା ପ୍ରଭାବିତ ଓ ଉତ୍ସାହିତ ହୋଇ କାବ୍ୟ ରଚନା କରିଥିଲେ ହେଁ, ସେମାନେ ଓଡ଼ିଆ ଭାଷାରେ ସଂସ୍କୃତ ଭାଷା ଶାସ୍ତ୍ରର ସବୁ ନୀତିନିୟମକୁ ଉପେକ୍ଷାକରି ସ୍ୱାଧୀନଭାବେ ଗଢି ଉଠୁଥିବା ଓଡ଼ିଆ ଭାଷା ଶାସ୍ତ୍ରର ନୀତିନିୟମକୁ ପରିପୁଷ୍ଟ କରିଅଛନ୍ତି, ତେଣୁ ବିପୁଳ ତତ୍ସମ-ତଦ୍ଭବ ଶବ୍ଦ ପ୍ରୟୋଗରେ ସମୃଦ୍ଧ ହୋଇ ଉଠିଥିବା ରୀତିକା ବ୍ୟମାନଙ୍କରେ ନିମ୍ନୋକ୍ତ ବ୍ୟତିକ୍ରମମାନ ଦେଖାଯାଏ ।

୧) ସଂସ୍କୃତ ଶବ୍ଦମାନଙ୍କର 'ହଳନ୍ତ' (୍) ପ୍ରୟୋଗ ଓଡ଼ିଶାରେ ଦେଖାଯାଏ ନାହିଁ, ଯଥା-ଧିକ୍, ଈଷତ୍, ମହତ, ବାକ୍, ଦିଗ, ପୃଥକ୍, ଯାବତ, ତାବତ ଏହି ରୀତି ଓ ଅଭ୍ୟାସ ବଶତଃ ହଳନ୍ତଯୁକ୍ତ ଯାବନିକ ଶବ୍ଦମାନେ ମଧ୍ୟ ନିଜ ନିଜର ବୈଶିଷ୍ଟ୍ୟ 'ହଳନ୍ତ' ହରାଇ ସ୍ୱରାନ୍ତ ହେଲେ, ଯଥା- ଫାଜିଲ,, ଗରଜ, ତାଲିମ, ଇଜତ, ଅସୁଲ, ଗରମ ଇତ୍ୟାଦି ।

୨) ସଂସ୍କୃତରେ ଅସ୍ତି ଅର୍ଥରେ 'ମତୁମ୍' ପ୍ରତ୍ୟୟର ବିକଳ୍ପେ 'ମ' ଓ 'ବ' ହୁଏ, କିନ୍ତୁ ଓଡ଼ିଆରେ କେବଳ 'ବ' ହୁଏ, ଯଥା- ଧୀବନ୍ତ, ବ୍ୟାଧିବନ୍ତ, ବଳବନ୍ତ, ବପୁବନ୍ତ, ଲକ୍ଷ୍ମୀବନ୍ତ ଇତ୍ୟାଦି ।

୩) 'ସମାପିକା' କ୍ରିୟା ରୂପେ ସଂସ୍କୃତରେ ଅସମାପିକା କ୍ରିୟାର ବ୍ୟବହାର ନଥିଲେ ମଧ୍ୟ ଓଡ଼ିଆରେ ଦିଶି, ଶୋହି, ବିଚାରି, କେହି, କହି, ଥରି ପ୍ରଭୃତିର ପ୍ରୟୋଗ ଅବାଧରେ ହୁଏ । ଏଗୁଡିକ ସମାପିକାଭାବେ ପ୍ରଯୁକ୍ତ ।

୪) ସଂସ୍କୃତରେ 'ଭୂ' ଧାତୁ ଯୁକ୍ତ କ୍ରିୟାଗୁଡିକ 'କ୍ତ' ପ୍ରତ୍ୟୟାନ୍ତ ହୋଇ ବ୍ୟବହୃତ ହୁଏ, ଯଥା-ପ୍ରବିଷ୍ଟ, ସନ୍ତୁଷ୍ଟ, କ୍ରୁଧିତ ହେବା ଇତ୍ୟାଦି, କିନ୍ତୁ ଓଡ଼ିଆରେ ପ୍ରବେଶ ହେଲେ, ସନ୍ତୋଷ ହେଲେ, କ୍ରୋଧହେଲେ ଇତ୍ୟାଦି ।

୫) ଶୋଭିତ, ଲୋଭିତ, ଭାବିତ, ମତ, ସଙ୍ଗତ, ପ୍ରସନ୍ନ, ପ୍ରାପତ, ରଚିତ ପ୍ରଭୃତି ଶବ୍ଦ ବିଶେଷଣ ରୂପେ ବ୍ୟବହୃତ ହୁଏ ।

୬) ବିଶେଷ୍ୟର 'ଲିଙ୍ଗ' ବିଶେଷଣରେ ଦେଖାଯାଏ ନାହିଁ-ଉପେନ୍ଦ୍ରଙ୍କ ରଚନାରେ ବିବେକୀ, ଅନୁରାଗୀ, ମନୋହାରୀ, ସର୍ବଭୂତ ମୋହୀ, ରତନବେଶୀ, ପଦୁବାସୀ, ଜିଜ୍ଞାସୁକୁମାରୀ, ଟହକାହାସୀ, ଗୁଣଶାଳୀ, ବୀଣାଭାଷୀ ପ୍ରଭୃତି ଶବ୍ଦମାନଙ୍କର ଲିଙ୍ଗ ନିର୍ବିଶେଷରେ ବ୍ୟବହୃତ ହୁଏ । ଦୀନକୃଷ୍ଣଙ୍କ ରଚନାରେ କଳାକରହାସୀ, ପିକଭାଷୀ, ଯଶୋଦା ଭାଗ୍ୟବନ୍ତ ପ୍ରଭୃତି ବ୍ୟବହୃତ ହୋଇଅଛି । ଦେବଦୁର୍ଲ୍ଲଭଙ୍କ 'ରହସ୍ୟ ମଞ୍ଜରୀ'ରେ ବିବିଧରୂପୀ, ଅପରାଧୀ, ଅଯୋଗ୍ୟ ଯୁବତୀ, ମହାପାପୀ ମଧ୍ୟ ଲିଙ୍ଗ ନିର୍ବିଶେଷରେ ବ୍ୟବହୃତ ହୁଏ ।

ଉପେନ୍ଦ୍ରଙ୍କ ପୂର୍ବଯୁଗରୁ ଓଡ଼ିଆ ଭାଷାର ଏପରି ସ୍ୱଚ୍ଛଳ ସ୍ୱାଧୀନ ଅକୃତ୍ରିମ ଅଗ୍ରଗତି ଘଟି ଆସୁଥିଲେ ମଧ୍ୟ ଉପେନ୍ଦ୍ର ପରବର୍ତ୍ତୀ ଯୁଗରେ ବିଶେଷତଃ ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ସଂସ୍କୃତ ବ୍ୟାକରଣର ନୀତି ନିୟମ ଓଡ଼ିଆ ଶବ୍ଦମାନଙ୍କରେ ଦେଖାଯାଇଥାଏ । ବିଦଗ୍ଧ ଚିନ୍ତାମଣି ୪୩ ଛନ୍ଦରେ ପ୍ରବର୍ତ୍ତକୀ, ବିତରଣୀ, ବିବର୍ଦ୍ଧନକାରୀ, ଉତ୍ପିଡ଼ିନୀ,

କୋଡଗଡଦାୟୀ, ପ୍ରଦୀପ୍ତିନୀ, କଉତୁକୀ ପ୍ରଭୃତି ସ୍ତ୍ରୀଲିଙ୍ଗ ବିଶେଷଣମାନଙ୍କର ପ୍ରୟୋଗ ଦେଖାଯାଇଥାଏ । ଆଧୁନିକ ଯୁଗରେ ଭିକ୍ଟୋରିୟା ଶାସନ ଯୁଗରେ ସଂସ୍କାର ପ୍ରବଣତା ବଶତଃ ଭକ୍ତକବି ମଧୁସୂଦନ, ରାଧାନାଥ, ଗଙ୍ଗାଧର ପ୍ରମୁଖ ମଧ୍ୟ ସେମାନଙ୍କର କାବ୍ୟରେ ସଂସ୍କୃତ ଶବ୍ଦମାନଙ୍କର ଲିଙ୍ଗ, ବିଶେଷାଦି ପ୍ରୟୋଗ ନିୟମ ଅନୁସରଣ କଲେ ।

### ୬– ପାରସୀ–ଆରବୀ ଭାଷାର ପ୍ରଭାବ

୧୫୬୮ ଖ୍ରୀ.ଅରୁ ତୁର୍କୀ ଆଫଗାନ୍ ଶାସକମାନେ ବଙ୍ଗ ଦେଶରୁ କ୍ରମେ ଆସି ଓଡ଼ିଶାରେ ଶାସନ କଲେ । ୧୫୭୨ ଖ୍ରୀ.ଅ ବେଳକୁ ଦକ୍ଷିଣରୁ ଗୋଲକୁଣ୍ଡାର ସୁଲତାନ ଦକ୍ଷିଣ ଓଡ଼ିଶାର ଚିଲିକା ପର୍ଯ୍ୟନ୍ତ ଅଧିକାର କରିନେଲେ । ୧୫୯୨ରୁ ମୋଗଲମାନେ ଉତ୍ତର ଓଡ଼ିଶାରେ ପୁରୀଜିଲ୍ଲା ସମେତ ସବୁ ଅଞ୍ଚଳରେ ପ୍ରଭୁତ୍ୱ ବିସ୍ତାର କଲେ । ୧୭୫୧ ଖ୍ରୀ.ଅ.ରୁ ବଙ୍ଗ ସୁଲତାନ୍‌ଙ୍କଠାରୁ ମରହଟ୍ଟା ଶାସକମାନେ ଓଡ଼ିଶା ଦଖଲ କରିନେଲେ । ୧୯୦୩ ମସିହାରୁ ଇଂରେଜମାନେ ଓଡ଼ିଶା ଦଖଲ କଲେ । ଏହି ସମୟ ମଧ୍ୟରେ ବିଭିନ୍ନ ବିଦେଶୀ ଶାସକ ଓଡ଼ିଶାରେ ଶାସନ କରିଥିବା ବେଳେ ପାରସୀ ଓ ଆରବୀ ଭାଷାର ମିଶ୍ରିତ ପ୍ରଭାତ ଓଡ଼ିଆ ଭାଷାରେ ଦେଖାଦେଲା । କାରଣ ତୁର୍କୀ, ଆଫଗାନ ଓ ମୋଗଲମାନେ ପାରସୀ ଆରବୀ ଭାଷାରେ ଶାସନ କରି ଆସୁଥିଲେ । ଏହା ଫଳରେ ଓଡ଼ିଶାରେ ଏହି ଭାଷାରୁ କେତେକ ଶବ୍ଦର ଅର୍ଥ ସମାନ ଥିବାବେଳେ ଅନ୍ୟ କେତେକ ଶବ୍ଦର ଅର୍ଥ ପରିବର୍ତ୍ତିତ ହୋଇଅଛି । ଆରବୀ ଶବ୍ଦ 'ତମସା' ଆନ୍ଦୋଳନ ଅର୍ଥରେ ବ୍ୟବହୃତ ହେଉଥିବା ବେଳେ ହିନ୍ଦୀ ଓ ଓଡ଼ିଆରେ ଏହା 'ନାଟ ତାମସା' ଅର୍ଥରେ ବ୍ୟବହୃତ ହେଲା । 'ଖଇରାତି' ଅର୍ଥ ଆରବୀରେ ସୁକାର୍ଯ୍ୟ ଅର୍ଥ ପ୍ରକାଶ କରୁଥିବା ବେଳେ ଏହା ଓଡ଼ିଆ ଦାନ ଖଇରାତି ଅର୍ଥରେ ବ୍ୟବହୃତ ହେଲା । ଆରବୀରେ 'ତୁଫାନ' ଅର୍ଥ ପ୍ରାଚୁର୍ଯ୍ୟ କିନ୍ତୁ ଓଡ଼ିଆରେ ଏହାର ଅର୍ଥ ଝଡ ବର୍ଷା । ପାରସୀ ଭାଷାରେ ରୋଜଗାର ଅର୍ଥ ପୃଥିବୀ, କିନ୍ତୁ ଓଡ଼ିଆରେ ଏହା ଆୟ ଅର୍ଥ ପ୍ରକାଶ କରେ । ଆରବୀ ଭାଷାରେ ମୁର୍ଗ ଅର୍ଥ ପକ୍ଷୀ ବିଶେଷ, ଓଡ଼ିଆରେ ଏହା ଲିଙ୍ଗନିୟନରେ ମୁର୍ଗା, ମୁଗୀ ହୋଇ ଅଣ୍ଡିରା ଓ ମାଈ କୁକୁଡାକୁ ବୁଝାଏ ।

ଦୀର୍ଘଦିନ ଧରି ମୋଗଲ ଶାସନରେ ପାରସୀ ଭାଷା ପ୍ରଚଳିତଥିବା ହେତୁ ଇଂରେଜମାନେ ମଧ୍ୟ ଏହାକୁ ସରକାରୀ ଭାଷା ଭାବରେ ସ୍ୱୀକାର କରିଥିଲେ । ତେଣୁ ପାରସୀ ଶବ୍ଦ ବହୁଳ ପରିମାଣରେ ଭାରତର ଅନ୍ୟାନ୍ୟ ଭାଷାମାନଙ୍କର ପରି ଓଡ଼ିଆକୁ ମଧ୍ୟ ପ୍ରଭାବିତ କଲା । ଏଣୁ ନିମ୍ନଲିଖିତ ମୂଳ ପାରସୀ–ଆରବୀ ଶବ୍ଦଗୁଡିକ ଓଡ଼ିଆ ଭାଷାରେ ଏପରି ପ୍ରଭାବ ବିସ୍ତାର କରିଛନ୍ତି ଯେ, ଏଗୁଡିକୁ ବୈଦେଶିକ ଭାଷା ବୋଲି କହିବାକୁ ସଂକୋଚ ଲାଗେ । ଯଥା ମାଲିମକଦ୍ଦମା, ଖେସରା, ନାଲିସ, ମଜକୁର, ମୌଜା, ଦଖଲ, ସଲାମୀ, ମସିହା, ଯାମିନ, ହାଜିରା, ତହବିଲ, ଖଜଣା, ବେନାମୀ, ତଫସିଲ, ତୌଜି, ପ୍ରଗନ୍ନା, ଜିଲ୍ଲା, କିଲ୍ଲା, ମାହାଲ, କୋରଖ, ହୁକୁମ୍, ମୁତାବକ, ଅମୀନ, ମୁକ୍ତାର, ଦରଖାସ୍ତ, ଦସ୍ତଖତ, ଓରଫ ବନ୍ଦୋବସ୍ତ, ମଞ୍ଜୁର, ମୋହରିର, ହଲ୍‌ଫ, କୋଲଫ, ମହକୁମା, ତମସୁକ, ଓଜର ଆପତ୍ତି ଇତ୍ୟାଦି । ଏହି ଶବ୍ଦଗୁଡିକ ଓଡ଼ିଆରେ ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରୁ ପ୍ରଚଳିତ ହୋଇ ଆସୁଅଛି ।

କ) ମାଦଳାପାଞ୍ଜୀରେ ମୁଗଲ, ଡିଲି (ଦିଲ୍ଲୀ), ପାତିଶା (ବାଦଶାହ), ମୁରସ୍ତାଣ (ସୁଲତାନ୍), ନବାବ, ଦିଆନ, ସଲାମ, ସୁବା, ନସକର, ଫରଦ, ଅମୀର ଆଦି ଶବ୍ଦ ପ୍ରଚଳିତ ହୋଇ ଆସୁଅଛି ।

ଖ) କବି ଲୋକନାଥ ବିଦ୍ୟାଧର 'କାଗଜ' ଶବ୍ଦ ବ୍ୟବହାର କରିଥିଲେ ।

ଗ) ଉପେନ୍ଦ୍ରଙ୍କ କାବ୍ୟମାନଙ୍କରେ ଜରି, ନଜରନଳୀ, ରୁମାଲ, କାଗଜ ପ୍ରଭୃତି ଶବ୍ଦ ବ୍ୟବହୃତ ହୋଇଅଛି ।

ଘ) ଅଭିମନ୍ୟୁଙ୍କ ସମୟକୁ ମୋଗଲ ଶାସନ ଅଧିକ ଶକ୍ତିଶାଳୀ ହୋଇ ପ୍ରସାରିତ ହୋଇ ଯାଇଥିଲା । ତେଣୁ ଏହି ଭାଷାର ବହୁ ଶବ୍ଦ ଅଭିମନ୍ୟୁଙ୍କ କାବ୍ୟରେ ଦେଖାଯାଏ । ଯଥା: ବାରୁଦ, କାଗଜ, ଖୁମାନ, ପହିଲେ, ତରକି, ବନାଇଲା, ଜରି, ତବଲା, ଜୁହାର, କଳ, ଚାକର, ଝଗଡା, କମ୍, କଡକା, ପଟୁଆର, ପିକଦାନୀ, ଭଗାରି, ବତାସ, ଦରବାର, ତରୱାର, ଅସୁଆର, ବଜାର ଇତ୍ୟାଦି ।

ଙ) କବି ସୂର୍ଯ୍ୟ ବଳଦେବ ରଥ ନିଜେ ରାଜକର୍ମଚାରୀ ଥାଇ ରାଜଦରବାରମାନଙ୍କରେ ସିଧା ସଳଖ ପ୍ରବେଶ କରୁଥିବା ଏହି ଯାବନିକ ଶବ୍ଦମାନଙ୍କର ବହୁଳ ବ୍ୟବହାର କରିଅଛନ୍ତି । ଯଥା: ଫତୁଆ, ଫତୁରିଖୋର, ଫରିଆଦ, ଫଉଜ, ଫରମାସ,

ଫଜିତ, ଚାକର, ହଜାର, ନଉକରୀ, ଜହର, ପସନ୍ଦ, ତରୁଆର, ଗୁମାନ, ଜୁହାର, ମାଫିକ, ମତୁଆଲ, ଡକାଇତ ପଣ, ସୁଆଗ, ଚାବୁକ, ବଦସା, ସମଜଇ, ପହିଲୁ, ବାଲିଶ୍ ଇତ୍ୟାଦି ।

ଚ) ବ୍ରଜନାଥ ବଡଜେନାଙ୍କ 'ସମରତରଙ୍ଗ'ରେ ଓ ଗଦ୍ୟଗ୍ରନ୍ଥ 'ଚତୁର ବିନୋଦ'ରେ ମଧ୍ୟ ଏପରି ବହୁ ଶବ୍ଦର ବ୍ୟବହାର ଦେଖାଯାଏ । ଯଥା: ଓକିଲ, ଫଇସା, ଲସ୍କର, ହାକିମ, ଜମାଦାର, ସାହେବ, ଇନାମ, କନାଟ, ବନାଉତ, ଗାଲିଚା, ରେଜାଇ, ସତରଞ୍ଜୀ, ବରକଳାଜ, ମରଦ, ଦୁକାନୀ, ମୁରାଦ, ଦୌଲତ, ମର୍ଜି, ଫତେ, ମୁଲକ, ବୈଦାନ, ଚୋପଦାନ, ହେମତ, ଜୋର, ନହବତ ଇତ୍ୟାଦି ।

ଛ) ଆଧୁନିକ ଯୁଗକୁ ଏହିସବୁ ଶବ୍ଦଗୁଡିକ ଓଡ଼ିଆ ଭାଷାରେ ଏପରି ଏକୀଭୂତ ଓ ଆପଣାର ହୋଇଯାଇଥିଲା ଯେ, ଫକୀର ମୋହନ, ରାଧାନାଥଙ୍କ 'ଛ'ମାଣ ଆଠଗୁଣ୍ଠ' ଓ 'ଦରବାର' ଆଦି ଗ୍ରନ୍ଥମାନଙ୍କରେ ଚରିତ୍ରମାନଙ୍କ ଉକ୍ତିରେ ଅକୃତ୍ରିମତା ଓ ସଂଗତି ସଂପାଦନ ପାଇଁ ବହୁ ଯାବନିକ ଶବ୍ଦ ବ୍ୟବହାର କରିଅଛନ୍ତି ।

ଇଂରେଜ ଶାସନ ସହିତ ଓଡ଼ିଶାର ସ୍କୁଲ କଲେଜ ଓ ସରକାରୀ ଦପ୍ତରରେ ଇଂରେଜୀ ଭାଷା ପ୍ରଚଳିତ ହେବା ସଙ୍ଗେ ସଙ୍ଗେ ଇଂରେଜୀ ଶବ୍ଦମାନ ଲୋକକଥିତ ଭାଷା ଓ ଲିଖିତ ଭାଷା ଭିତରକୁ ପ୍ରଭାବ ବିସ୍ତାର କରିଦେଲା । ଫଳରେ ବହୁ ପାରସୀ ଆରବୀ ପ୍ରଭୃତି ଯାବନିକ ଶବ୍ଦ ଛାଏଁ ଛାଏଁ ଅପସୃତ ହୋଇଗଲେ । ତଥାପି ବହୁ ଶବ୍ଦ ଲୋକ ବ୍ୟବହାରରେ ଏପରି ପ୍ରିୟ ଓ ନିଜସ୍ୱ ହୋଇ ଯାଇଛନ୍ତି ଯେ, ସେଗୁଡିକ ରେଷ୍ଟାକୃତଭାବେ ମଧ୍ୟ ସହଜରେ ପରିହାର କରାଯାଇ ନପାରେ । ଏପରି କେତେକ ଶବ୍ଦର ତାଲିକା ନିମ୍ନରେ ପ୍ରଦତ୍ତ ହେଲା । ଯଥା: ମେହେରବାନୀ, ଗଫଲତି, କସରତ, କରାମତ, ରିସଓତ୍, ହୁରମତ, ଚମକନ୍, ବସ୍ତାନୀ, ସରହଦ, ମୁତାବକ, ତଲବ, ମଜୁରୀ, ଅମୀନ ଇତ୍ୟାଦି ।

ଓଡ଼ିଶାର ସହସ୍ର ସହସ୍ର ବର୍ଷର ସ୍ୱାଧୀନ ହିନ୍ଦୁଶାସନ ପରମ୍ପରା ତୁଳନାରେ ଯବନ ଶାସନ ସମୟର ସ୍ୱଳ୍ପତା ଦୃଷ୍ଟିରୁ ପାରସୀ-ଆରବୀ ଶବ୍ଦମାନେ ଶାସନ ତଥା ସାଧାରଣ କ୍ଷେତ୍ରରେ ଦୀର୍ଘ ପ୍ରଭାବ ବିସ୍ତାର କରି ରହି ପାରିଲେ ନାହିଁ । ବରଂ ଅଧିକ ପ୍ରଭାବଶାଳୀ ଉଠିଥିବା ଇଂରେଜ ଶାସନ ହେତୁ ଇଂରେଜ ଶବ୍ଦଗୁଡିକ ଅଧିକ ପ୍ରଭାବ ବିସ୍ତାର କରି ସମୟକ୍ରମେ ପାରସୀ-ଆରବୀ ଭାଷାର ସ୍ଥାନ ପୂରଣ କରି ନେଇଥିଲା ।

### ୭- ଇଂରେଜୀ ଭାଷାର ପ୍ରଭାବ

୧୮୦୩ ମସିହାରୁ ଓଡ଼ିଶାରେ ଇଂରେଜୀ ଶାସନ ଚାଲିବାରୁ ଇଂରେଜ ଭାଷା ସରକାରୀ ତଥା ବେସରକାରୀ ଦପ୍ତରମାନଙ୍କରେ ପ୍ରବେଶ କଲା । ଏହି ଭାଷା ମାଧ୍ୟମରେ ଓଡ଼ିଆମାନେ ପାଶ୍ଚାତ୍ୟ ରୀତିନୀତି, ଧର୍ମ, ରାଜନୀତି, ଅର୍ଥନୀତି, ସମାଜନୀତି, ଚିକିତ୍ସା, ବୈଷୟିକ ବିଦ୍ୟା, ଶିଳ୍ପ ବିଜ୍ଞାନ ପ୍ରଭୃତିର ସଂସ୍ପର୍ଶରେ ଆସିଲେ । ନୂଆ ନୂଆ ବହୁ ବ୍ୟବହାର୍ଯ୍ୟ ପଦାର୍ଥ, ଯନ୍ତ୍ରପାତି, ହାତ ହତିଆର ପ୍ରଭୃତି ନିଜ ନିଜର ଇଂରେଜୀ ନାମ ସହିତ ଆସିଲେ । ଏହିପରି ନାନା ସ୍ମୃତି ଧରି ଇଂରେଜୀ ଭାଷାର ଶବ୍ଦମାନ ଓଡ଼ିଆ ଭାଷାରେ ପ୍ରବେଶ କରି ବ୍ୟବହୃତ ହେବା ବେଳେ କେତେକ ଅକ୍ଷୁଣ୍ଣଭାବେ ବ୍ୟବହୃତ ହେବାବେଳେ ଅନ୍ୟ କେତେକ ଅପଭ୍ରଷ୍ଟ ହୋଇ ଓଡ଼ିଆ କଥନ ରୀତିରେ ବ୍ୟବହୃତ ହେଲେ । ସ୍ୱାଧୀନତା ପରେ ଇଂରେଜୀ ଶାସନ ଏ ଦେଶରୁ ଲୋପ ପାଇଗଲେ ମଧ୍ୟ ପରାଧୀନ ମନୋଭାବର ପ୍ରଭାବରୁ ଏ ଦେଶର ଲୋକ ମାନସକୁ ମୁକ୍ତକରି ସ୍ୱାଭିମାନ ପ୍ରଦାନ କରାଇବା ନିମିତ୍ତ ନାନା ଚେଷ୍ଟା ହୋଇ ଆସୁଅଛି । କିନ୍ତୁ ବିଶ୍ୱର ନାନା ଦେଶର ଜ୍ଞାନବିଜ୍ଞାନ, ବୈଷୟିକ କୌଶଳ ତଥା ଭାଷା ସାହିତ୍ୟର ପ୍ରଭାବକୁ ଯେତେ ଚେଷ୍ଟାକଲେ ମଧ୍ୟ ସହଜରେ ପ୍ରତିହତ କରାଯାଇ ନପାରେ, କାରଣ ଆଦାନ ପ୍ରଦାନ ରୀତିରେ ତାହା ଅବଶ୍ୟ ଏ ଦେଶକୁ ଆସିବ । ତେଣୁ ବହୁ ଇଂରେଜୀ ଶବ୍ଦ ଆଜି ଆବଶ୍ୟକତା ଦୃଷ୍ଟିରୁ ଏକାନ୍ତ ଅପରିହାର୍ଯ୍ୟ ହୋଇଯାଇଛନ୍ତି । ଲୋକମାନଙ୍କର ଦୈନନ୍ଦିନ ଜୀବନରେ ସେଗୁଡିକର ବ୍ୟବହାର ଓଡ଼ିଆ ରୀତିରେ ସମ୍ପୂର୍ଣ୍ଣ ନିଜସ୍ୱ ହୋଇଗଲେଣି । ଏପରି କେତେକ ଇଂରେଜୀ ଶବ୍ଦର ତାଲିକା ନିମ୍ନରେ ପ୍ରଦତ୍ତ ହେଲା ।

ରେଳ, ମଟର, ବସ, ରିକ୍ସା, ସାଇକେଲ, ପେଡେଲ, ବ୍ରେକ୍, କ୍ରାଂକ, ହେଣ୍ଡେଲ, ପିଅନ, କ୍ଲର୍କ, ହେଡ କ୍ଲର୍କ, ସେକ୍ରେଟାରୀ, ଦୋପଟୀ, ଅଫିସ୍, ଅର୍ଦ୍ଦଳି, ଫାଇଲ, ନୋଟ୍, ଡାକ୍ତର, ଆଉଟ୍‌ଡୋର, ବେଡ୍, ନର୍ସ, ମେଡିସିନ୍, ଇଂଜେକସନ, ସ୍କୁଲ, ମାଷ୍ଟର, କ୍ଲାସ, ଫାଷ୍ଟ, ଫେଲ୍, ପାସ୍, ଡେକ୍ସ, ବେଞ୍ଚ, ଚେୟାର, ଟେବୁଲ, ପେନ, ପେନସିଲ,

ଫୁଟବଲ, ଭଲିବଲ୍, କ୍ରିକେଟ୍, ବ୍ୟାଡ୍‌ମିଣ୍ଟନ, ଜଜ, କୋର୍ଟ, କୋର୍ଟଫିସ, ମିସିନ, ଇଂଜିନିଅର, କାର୍ଡ, ବୋର୍ଡ, ପୋଷ୍ଟ ଅଫିସ୍, ପୋଷ୍ଟ ମାଷ୍ଟର, ଟେଲିଗ୍ରାମ୍, ରେଡିଓ, ବ୍ଲକ ମ୍ୟୁନିସିପାଲିଟି, ସାର୍ଟ, ପେଣ୍ଟ, ପ୍ଲେଟ, କପ, ସିନେମା, କେନାଲ, ରୋଡ, ମିନିଷ୍ଟର, ଲାଇଟ, ବିସ୍କୁଟ ଇତ୍ୟାଦି ।

ବହୁ ଇଂରେଜୀ ଶବ୍ଦ ଅପଭ୍ରଷ୍ଟ ହୋଇ ବ୍ୟବହୃତ ହେଉଛନ୍ତି । ସେଗୁଡିକର ଅର୍ଥ ଆଜି ଦୁର୍ବୋଧ ନୁହେଁ, ତାହାକୁ ଇଂରେଜୀ ବା ବୈଦେଶିକ ଶବ୍ଦ ବୋଲି ସହଜରେ ନାମିତ କରାଯାଇ ନପାରେ । ଯଥା: ଡାକ୍ତର, ଡାକ୍ତରାଣୀ, ନର୍ସିଆଣୀ, ମାଷ୍ଟ୍ରାଣୀ, ହାଁସପାତାଳ, ଇଷ୍ଟସନ, ପିଲାଟଫାରମ, ବ୍ରୁରୁସ, ଇସ୍କୁଲ, ଥେଟର, ବାଇଶିକୋପ, ପାଉଣ୍ଡର, କାନ୍ତରାଟୀ, ଉଗ୍ରସର, ଏସତୁଅ, ତେଲିଫୋନ୍, ଦିପୋଟୀ, ମେଜେଷ୍ଟର, କିଲଟର, ସବ୍ରେଷ୍ଟର, ବିଲାଉଜ, ଏଣ୍ଡିଆ, ପେସିରଣ୍ଟ, ବୋତଲ, ସିଗ୍ରେଟ୍ ଇତ୍ୟାଦି ।

ଇଉରୋପୀୟ ବିଶେଷତଃ ଇଂରେଜମାନଙ୍କ ଜରିଆରେ ବହୁ ଅନ୍ୟାନ୍ୟ ଭାଷାର ଶବ୍ଦଗୁଚ୍ଛ ମଧ୍ୟ ଓଡ଼ିଆରେ ପ୍ରବେଶ କରିଛି । ସେମାନଙ୍କର ମୂଳ ଆବିଷ୍କାର କରିବା କଷ୍ଟକର । ଯଥା: ରିକ୍ସା (ଜାପାନୀ), ଚକ୍‌ଲେଟ (ଗେକ୍ସିକୋ), କୁଇନାଇନ (ଦକ୍ଷିଣ ଆମେରିକୀୟ), ଜେବ୍ରା (ଆଫ୍ରିକା), କଙ୍ଗାରୁ (ଅଷ୍ଟ୍ରେଲିଆ), ଗୋଦାମ (ମାଲୟ), ମେଚେସ (ସୁଇଡେନ) ଇତ୍ୟାଦି ।

### ୮– ଆଧୁନିକ ଓଡ଼ିଆ ଭାଷା

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କେତେକ ଅଣଓଡ଼ିଆ ପ୍ରଭାବଶାଳୀ ଲୋକ ଏ ଦେଶର ସ୍କୁଲ କଲେଜ ଓ ସରକାରୀ ଦପ୍ତରରୁ ଓଡ଼ିଆ ଭାଷାର ଉଚ୍ଛେଦ କରାଇ ବଙ୍ଗଳା ଓ ଇଂରେଜୀ ଭାଷା ପ୍ରଚଳିତ କରାଇବାର ଚକ୍ରାନ୍ତ କରିଥିଲେ । କିନ୍ତୁ ଓଡ଼ିଆ ଭାଷା ରକ୍ଷା ପାଇଁ ଓଡ଼ିଶାର ତତ୍କାଳୀନ ସଚେତନ ଦେଶପ୍ରେମୀ କେତେଜଣ ବିଶିଷ୍ଟ ନେତା ଉଦ୍ୟମ କରିଥିଲେ । ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ 'ଉତ୍କଳଦୀପିକା'ର ସମ୍ପାଦକ କର୍ମଯୋଗୀ ଗୌରୀଶଙ୍କର, 'ସାମ୍ବାଦବାହିକା'ର ସମ୍ପାଦକ ଫକୀରମୋହନ ସେନାପତି 'ଉତ୍କଳପୁତ୍ର'ର ସମ୍ପାଦକ ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରମୁଖ । ସେମାନଙ୍କର ସଂଗଠିତ ଉଦ୍ୟମ ଓ ପ୍ରେରଣାରେ ଅନୁପ୍ରେରିତ ହୋଇ ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିବା ନିମିତ୍ତ ପ୍ରୟାସ କରିଥିଲେ କବିବର ରାଧାନାଥ ରାୟ, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ଗଙ୍ଗାଧର ମେହେର, ଅଭିରାମ ଭଞ୍ଜ, ବଡକୁମାର ବଳଦେବ, ବିଶ୍ୱନାଥ କର, ପଦ୍ମଚରଣ ପଟ୍ଟନାୟକ ଓ କୁନ୍ତଳାକୁମାରୀ ସାବତ ପ୍ରମୁଖ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା କବି ଓ ଲେଖକଗଣ । ବହୁ ସଂଖ୍ୟକ ସାହିତ୍ୟ ପତ୍ରିକା ମଧ୍ୟ ଏହି ଭାଷାରକ୍ଷା ଆନ୍ଦୋଳନରେ ଯୋଗଦାନ ଅବଶେଷରେ ଓଡ଼ିଶାର ଶିକ୍ଷା ଅନୁଷ୍ଠାନମାନଙ୍କରେ ଓଡ଼ିଆ ଭାଷା ଓ ସାହିତ୍ୟ ପଠନକୁ ଦୃଢ଼ୀଭୂତ କରାଇ ଥିଲେ । କ୍ରମେ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟିକ ଓ ସମାଜସେବୀ ଗୋଦାବରୀଶ, ଗୋପବନ୍ଧୁ, ନୀଳକଣ୍ଠ ପ୍ରମୁଖ ସାହିତ୍ୟିକମାନଙ୍କ କୃତିଦ୍ୱାରା ସାମ୍ପ୍ରତିକ ଲିଖିତ ଓ କଥିତ ଓଡ଼ିଆ ଭାଷା ଏକ ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କଲା । ବିଶେଷତଃ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ଓ ସମ୍ପାଦିତ 'ସମାଜ'ର ଭାଷାର ଭୂମିକା ଏ ଦିଗରେ ବିଶେଷତଃ ସହାୟତା କଲା । ଏହା ଏକ 'ଦୈନିକ' ସମ୍ବାଦପତ୍ର ଭାବରେ ଦୀର୍ଘଦିନ ଧରି ପାଠକମାନଙ୍କ ହାତରେ ଦୈନିକ ପହଞ୍ଚି ଓଡ଼ିଆରେ ନାନା ସମ୍ବାଦ ପାଠ କରାଇବାର ସୁଯୋଗ ପ୍ରଦାନ କରିଥିଲା । ତେଣୁ ଏହାର ଭାଷା ଓଡ଼ିଶାର ଜନସାଧାରଣଙ୍କୁ ଏକ ସାଧାରଣ ବ୍ୟବହାରରେ ଅଭ୍ୟସ୍ତ କରାଇଦେଲା । ପୁନଶ୍ଚ ଆମ ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହେବାରୁ ଗଣ ବା ଜନସାଧାରଣଙ୍କର ଭାଷା ଓଡ଼ିଆ ହେଲା ସର୍ବସାଧାରଣଙ୍କର ସ୍ୱାଧୀନମତ ପ୍ରକାଶର ମାଧମ ଏବଂ ଆଜି ଏହା ପ୍ରଦେଶର ରାଜକୀୟ ସରକାରୀ ଭାଷା ଭାବରେ ସ୍ୱୀକୃତ ଓ ଦୃଢ଼ୀଭୂତ । ଜନନେତା, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାୟତନ, ସାମ୍ବାଦିକ ସମ୍ବାଦପତ୍ର ସାହିତ୍ୟିକ, ସାହିତ୍ୟପତ୍ର, ଜନନେତା, ବିଧାୟକ, ବିଧାନସଭା, ସମାଜସେବୀ ତଥା ସର୍ବସାଧାରଣଙ୍କର ଉଦ୍ୟମଦ୍ୱାରା ଆଜିର ଓଡ଼ିଆ ଭାଷା ଦୃଢ଼ ସମୃଦ୍ଧି ପଥରେ ଗତିଶୀଳ ହେଉଅଛି । ଆନ୍ତପ୍ରାଦେଶିକ ଓ ଆନ୍ତରାଷ୍ଟ୍ରୀୟ ସମ୍ପର୍କ ଦିନକୁଦିନ ବୃଦ୍ଧି ପାଇବା ଫଳରେ ବହୁଦେଶର ଭାଷାର ଶବ୍ଦାବଳୀ ବ୍ୟବହାର୍ଯ୍ୟ ପଦାର୍ଥ, ଯନ୍ତ୍ରପାତି, ରୀତିନୀତି ଓ ସମ୍ପର୍କ ମାଧ୍ୟମରେ ଓଡ଼ିଶାକୁ ଆସି ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାରର ପରିସର ବୃଦ୍ଧି କରୁଛନ୍ତି ।



# ପ୍ରାଚୀନ ପରମ୍ପରାର ପ୍ରତୀକ ମହାବିଷୁବ ସଂକ୍ରାନ୍ତି

ଇଂ. ଅଭୟ ସୂତାର

ଆମ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ବୈଶାଖ ମାସର ସଂକ୍ରାନ୍ତି ତିଥିରୁ ନୂଆବର୍ଷ ଆରମ୍ଭ ହୁଏ । ସୂର୍ଯ୍ୟ ଏହିଦିନ ବିଷୁବ ରେଖାରେ ଅବସ୍ଥାନ କରିବା ପରେ ଉତ୍ତରାୟଣ ହୁଅନ୍ତି । ତେଣୁ ଏହାକୁ ବିଷୁବ ସଂକ୍ରାନ୍ତି କୁହାଯାଏ । ଲିଙ୍ଗ ପୁରାଣରେ କୁହାଯାଇଛି, ସୂର୍ଯ୍ୟଙ୍କର ଉତ୍ତରାୟଣ ସମୟ ହେଉଛି ଦେବତାମାନଙ୍କର ଦିନ ଓ ଦକ୍ଷିଣାୟନ ସମୟ ହେଉଛି ରାତି । ପୁଣି ଗୀତାରେ ଉଲ୍ଲେଖ ଅଛି, ସୂର୍ଯ୍ୟଙ୍କର ଉତ୍ତରାୟଣ କାଳରେ ମନୁଷ୍ୟର ମୃତ୍ୟୁ ଘଟିଲେ ସେ ବ୍ରହ୍ମପ୍ରାପ୍ତି ହୁଅନ୍ତି ଅର୍ଥାତ୍ ମୋକ୍ଷଲାଭ କରନ୍ତି । ଆମେ ପୃଥିବୀର ଉତ୍ତର ଗୋଲାର୍ଦ୍ଧରେ ବସବାସ କରୁଥିବାରୁ ସୂର୍ଯ୍ୟଙ୍କର ଉତ୍ତରାୟଣ କାଳ ହେଉଛି ଆମ ପାଇଁ ଅତି ପବିତ୍ର ଓ ଦିବ୍ୟ ସମୟ । ଏହି ସମୟ ବୈଶାଖ ସଂକ୍ରାନ୍ତି ତିଥିରୁ ଆରମ୍ଭ ହେଉଥିବାରୁ ଏହାକୁ ମହାବିଷୁବ ସଂକ୍ରାନ୍ତି ବୋଲି କୁହାଯାଏ ।

ମହାବିଷୁବ ସଂକ୍ରାନ୍ତି ଭାରତର ବହୁ ଅଞ୍ଚଳରେ ପାଳନ କରାଯାଏ । ବଙ୍ଗଳାରେ ଏହା ନବବର୍ଷ ବା ପହିଲା ବୈଶାଖୀ, ଆସାମରେ ରୋଙ୍ଗଲି-ବିହୁ, ତାମିଲନାଡୁରେ ପୁଥାନ୍ଦୁ, କେରଳରେ ଗୋରମ୍ (ଭିସୁ) ନାମରେ ଅତି ପବିତ୍ରତାର ସହ ପାଳିତ ହୁଏ । ପଞ୍ଜାବରେ ବୈଶାଖୀ ପର୍ବରେ ପୁରୁଷମାନେ ମୁଣ୍ଡରେ ପଗଡି ବାନ୍ଧି କରୁଥିବା ଭାଙ୍ଗଡା ନୃତ୍ୟ ଓ ମହିଳାମାନଙ୍କର ଗିଦ୍ଦା ନୃତ୍ୟ ଭାରତ ପ୍ରସିଦ୍ଧ । ଶିଖ୍ ଧର୍ମରେ ବୈଶାଖୀ ପର୍ବ ପାଳନକୁ ଖୁବ୍ ଗୁରୁତ୍ୱ ଦିଆଯାଏ । କାରଣ ୧୬୯୯ ମସିହାର ଏହି ଦିନରେ ଗୁରୁ ଗୋବିନ୍ଦ ସିଂହ ଆନନ୍ଦପୁର ନିକଟରେ ଥିବା କେଶଗଡ ସାହିବଠାରେ ଖାଲ୍‌ସାପନ୍ଥ ପ୍ରତିଷ୍ଠା କରିଥିଲେ ଓ ଏହିଦିନଠାରୁ ସେ ଶିଖ୍‌ମାନଙ୍କର ଧର୍ମଗୁରୁ ହେଲେ ବୋଲି ଘୋଷଣା କରାଯାଇଥିଲା । ବୌଦ୍ଧ ଧର୍ମାବଲମ୍ବୀମାନଙ୍କର ମଧ୍ୟ ବୈଶାଖୀ ଏକ ବଡ ପର୍ବ, କାରଣ ଗୌତମବୁଦ୍ଧ ଏହିଦିନ 'ଦିବ୍ୟଜ୍ୟୋତି' ପ୍ରାପ୍ତ ହୋଇଥିଲେ । ୧୮୭୫ ମସିହାର ଏହି ଦିନରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟ ସମାଜ ପ୍ରତିଷ୍ଠା କରିଥିଲେ । ପ୍ରଭୁ ଶ୍ରୀରାମଙ୍କର ପରମ ଭକ୍ତ ହନୁମାନଙ୍କର ଜନ୍ମ ତିଥି ଏହିଦିନ ହୋଇଥିବାରୁ ହିନ୍ଦୁମାନେ ବୈଶାଖୀ ପର୍ବ ସହିତ ହନୁମାନ ଜୟନ୍ତୀକୁ ଅତି ପବିତ୍ରତାର ସହ ପାଳନ କରିଥାଆନ୍ତି ।

ଆମ ଓଡିଶାରେ ପ୍ରାୟ ସମସ୍ତ ଶକ୍ତିପୀଠରେ ବର୍ଷ ଆରମ୍ଭର ପ୍ରଥମ ଦିବସ ଅର୍ଥାତ୍ ମହାବିଷୁବ ସଂକ୍ରାନ୍ତି ଦିନରେ ବହୁ ସଂଖ୍ୟାରେ ଲୋକ ସମବେତ ହୋଇ 'ଦୁର୍ଗେ ଦୁର୍ଗତି ନାଶିନୀ' ଅର୍ଥାତ୍ ଆସନ୍ତା ବର୍ଷ ଦୁର୍ଗତି ନାଶ ହେବା ସହିତ ସିଦ୍ଧିଲାଭ ହେବା ପାଇଁ ଦୁର୍ଗାଙ୍କୁ ଉପାସନା କରନ୍ତି । ଏହାର କାରଣ ହେଲା - ସେ ମହାଶକ୍ତି । ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ତାଙ୍କ ଶକ୍ତି ବଳରେ ହୋଇଥାଏ । ସେ ପ୍ରସନ୍ନା ହେଲେ ମନୁଷ୍ୟକୁ ସିଦ୍ଧିଲାଭ ପାଇଁ ବରଦାନ କରନ୍ତି ।

ସତ୍ୟ ଯୁଗରେ ସମାଧି ବୈଶ୍ୟ ଓ ରାଜା ସୁରଥ, ତ୍ରେତୟାରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଓ ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ, ମହାଶକ୍ତିଙ୍କର ପୂଜାର୍ଚ୍ଚନା କରି ସିଦ୍ଧିଲାଭ କରିଥିଲେ । ଏ ଯୁଗରେ ମଧ୍ୟ ଶ୍ରୀ ରାମକୃଷ୍ଣ ପରମହଂସ, ସ୍ୱାମୀ ପୂର୍ଣ୍ଣାନନ୍ଦ, ସ୍ୱାମୀ ନିଗମାନନ୍ଦ ସରସ୍ୱତୀ, ଠାକୁର ଅଭିରାମ ପରମହଂସ, ଓଡିଆ ମହାଭାରତର ରଚୟିତା ଶୂଦ୍ରମୁନି ସାରଳା ଦାସ ଆଦି ମହାପୁରଷ ଶକ୍ତି ଉପାସନା ବଳରେ ସ୍ୱ ସ୍ୱ ଭଗବତ ସତ୍ତାକୁ ଉଜ୍ଜୀବିତ କରି ବହୁ ଅଲୌକିକ କାର୍ଯ୍ୟ ସଂପାଦନ କରିଛନ୍ତି ।

ମହାବିଷୁବ ସଂକ୍ରାନ୍ତି ପାଳନର ପରଂପରା ହେଲା- ଝଙ୍କଡର ମା' ଶାରଳା, କାକଟପୁରର ମା'ମଙ୍ଗଳା, ବାଙ୍କୀର ମା' ଚର୍ଚ୍ଚିକା, ବାଣପୁରର ମା'ଭଗବତୀ, ଯାଜପୁରର ମା' ବିରଜା ଆଦି ଶକ୍ତିପୀଠରୁ କୁମ୍ଭ ସଂକ୍ରାନ୍ତି ପରେ ସେବକମାନେ ଦେବୀଙ୍କ ଘଟ ଗ୍ରାମମାନଙ୍କୁ ନେଇ ରଣପା ଚଢି ଘଣ୍ଟ କରନ୍ତି । ଏହି ଘଟ ନିକଟରେ ଗ୍ରାମବାସୀମାନେ ଭୋଗ କରନ୍ତି ଓ ଘଟର ସିନ୍ଦୂର - ଫୁଲକୁ ଗ୍ରହଣ କରି ସେବକଙ୍କୁ ଦକ୍ଷିଣା ଦିଅନ୍ତି । ଅନେକ ବାପ-ମା' ସେମାନଙ୍କର ପିଲାଙ୍କୁ ରୋଗମୁକ୍ତି ହେବା ନିମିତ୍ତ ସେହି ସମୟରେ ଘଟକୁ ମୁଣ୍ଡିଆ ମାରି ପାଟୁଆ ନାଚ ଓ ଅଗ୍ନିରେ ଚାଲିବା ପାଇଁ ମାନସିକ କରିଥାଆନ୍ତି । ସେହି ପିଲାମାନେ ରୋଗମୁକ୍ତ ହେଲାପରେ ଉପବାସ ରହି ଦେବୀପୀଠରେ ପାଟୁଆ ନାଚ କରନ୍ତି ଓ ଅଗ୍ନିରେ ଚାଲନ୍ତି । ଏହାକୁ 'ଝାମୁ ଚଲା' କୁହାଯାଏ । ପ୍ରାୟ ଦୁଇଫୁଟ ଓସାର, ଏକପୁଟ ଗଭୀର ଓ ୧୨ପୁଟ ଲମ୍ୱର ପହି ଖୋଳି ସେଥିରେ କାଠ କୋଇଲା ଭର୍ତ୍ତି କରି ନିଆଁ ଲଗାଯାଏ । ପହିର ଦୁଇ ମୁଣ୍ଡରେ ପାଣି ରଖାଯାଇଥାଏ । 'ଝାମୁ' ଚାଲିଲା ପରେ ଏହି ପାଣିରେ ଗୋଡ ଓଦା କରିବାକୁ ହୁଏ । ଖରାବେଳେ ପାଟୁଆ ନାଚ ଓ ଝାମୁ ଚଲା ଦେଖିବା ପାଇଁ ଶକ୍ତି ପୀଠମାନଙ୍କରେ ଅସମ୍ଭବ ଭିଡ ହୁଏ ।

କେତେକ ଦେବୀ ପୀଠରେ ମହିଳାମାନେ ନିଜ ପରିବାରର ମଙ୍ଗଳ କାମନା କରି ମନ୍ଦିର ବେଢାରେ ବିରି ଓ ଅରୁଆ ଚାଉଳ ବୁଣି ତାହାକୁ ଝାମୁ ଡାଳରେ ଓଳାନ୍ତି । ଗ୍ରାମମାନଙ୍କରୁ କୋଠ ଭୋଗ ଆସି ଦେବୀଙ୍କ ନିକଟରେ ପୂଜା କରାଯାଏ ଓ ପ୍ରସାଦ ନେଇ ଗ୍ରାମର ସବୁ ପରିବାରରେ ବଣ୍ଟାଯାଏ । ପ୍ରାୟ ସବୁ ଦେବୀ ପୀଠରେ ଏହି ଦିନ ଚଣ୍ଡୀପାଠ ଓ ଯଜ୍ଞ କରାଯାଇଥାଏ । ବହୁ ଦୂରଦୂରାନ୍ତରୁ ଲୋକେ ଆସି ଦେବୀଙ୍କୁ ଶାଢୀ, ଶଙ୍ଖା, ସିନ୍ଦୂର ଆଦି ଅର୍ପଣ କରି ଭୋଗ ଲଗାନ୍ତି ଓ ଆସନ୍ତା ବର୍ଷ ସେମାନଙ୍କର ସଂସାର ନିର୍ବାହ ସୁଖରେ ହେଉ ବୋଲି ପ୍ରାର୍ଥନା କରନ୍ତି । ଗ୍ରାମମାନଙ୍କରେ ଥିବା ଗ୍ରାମଦେବତୀଙ୍କ ନିକଟରେ ମଧ୍ୟ କୋଠ ଭୋଗ, ହୋମ ଓ ପୂଜାର୍ଚ୍ଚନା ସହିତ ପ୍ରତି ପରିବାର ଭୋଗ ସମର୍ପଣ କରନ୍ତି । ପରିବାରମାନଙ୍କରେ ଚଉରାରେ ବସୁନ୍ଧରା କରାଯାଇ ସେଠି ଠେକିରେ ମାସକ ପର୍ଯ୍ୟନ୍ତ ପ୍ରତିଦିନ ପାଣି ଦିଆଯାଏ, ଯେପରିକି ଠେକିରୁ ଟୋପା ଟୋପା ପାଣି ତୁଳସୀ ଗଛ ଉପରେ ପଡେ । ତେଣୁ ଏହାକୁ 'ଠେକି ବସା ସଂକ୍ରାନ୍ତି' ମଧ୍ୟ କୁହାଯାଏ । ମହାବିଷୁବ ସଂକ୍ରାନ୍ତି ଦିନ ଲୋକେ ପଣା ଓ ଜଳଛତ୍ର ଦେଇ ଲୋକଙ୍କର ତୃଷା ନିବାରଣ କରନ୍ତି । ତେଣୁ ଏହାକୁ ପଣା ସଂକ୍ରାନ୍ତି କୁହାଯାଏ । କେତେକ ପରିବାର ବ୍ରାହ୍ମଣମାନଙ୍କୁ ଭୋଜନ ଦେଇ ଦକ୍ଷିଣା ଦିଅନ୍ତି ଓ ଆଉ କେତେକ ପରିବାର ଭିକାରୀମାନଙ୍କୁ ପଖାଳ, ଶାଗ ଭଜା ଇତ୍ୟାଦିର ଭୁରି ଭୋଜନ ଦେଇ ଶକ୍ତିମତେ ବସ୍ତ୍ର ବା ଗାମୁଛା ଦାନ କରନ୍ତି ।

ଏହି ପରମ୍ପରା ଖୁବ୍ ପ୍ରାଚୀନ ଓ ମହାନ୍ । ଆମ ସାମାଜିକ ଓ ପାରିବାରିକ ଜୀବନରେ ସେବା, ଦାନ ଓ ଧର୍ମ ଆଧ୍ୟାତ୍ମିକ ଭାବନା ସୃଷ୍ଟି କରିଥାଏ । ଆମ ଧର୍ମ, ସଂସ୍କୃତି ଓ ଐତିହ୍ୟର ଭିତ୍ତି ଏହି ପରଂପରା ଉପରେ ପ୍ରତିଷ୍ଠିତ । ତେଣୁ ଏହାର ସୁରକ୍ଷା ଓ ବିକାଶ ପାଇଁ ସବୁ ସ୍ତରରେ ଉଦ୍ୟମ ହେବା ଉଚିତ୍ । ଯେଉଁ ଜାତି ତାହାର ପରଂପରାକୁ ଅକ୍ଷୁଣ୍ଣ ରଖିଥାଏ ଓ ପ୍ରସାର ପାଇଁ ଉଦ୍ୟମ କରିଥାଏ, ସେ ଜାତିର ସାଂସ୍କୃତିକ ସଭ୍ୟତା ସେତେ ଉନ୍ନତ ହୋଇଥାଏ । ତେଣୁ ଆଧୁନିକ ସଭ୍ୟତାର ମୋହରେ ଅନ୍ଧ ନ ହୋଇ, ଆମେ ସମସ୍ତେ ଆମର ପୂର୍ବ ପ୍ରଚଳିତ ପର୍ବ-ପର୍ବାଣି, ଓଷା-ବ୍ରତ, ଯାନି-ଯାତ୍ରା, ମେଳଣ-ମେଳା ଇତ୍ୟାଦିର ଯଥାଯଥ ପାଳନ ପାଇଁ ଉଦ୍ୟମ କରିବା ଉଚିତ୍ ।

---

ସଭାପତି(କାର୍ଯ୍ୟକାରୀ), ଜିଲ୍ଲା ଲେଖକ ସାମ୍ମୁଖ୍ୟ
ଭଦ୍ରକ



# ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

ନବଉତ୍କଳର ନିର୍ମାତା, ବିଛିନ୍ନ ଉତ୍କଳ ଏକତ୍ରୀକରଣର କର୍ଣ୍ଣଧାର, ସାହିତ୍ୟାନୁରାଗୀ, ସୁଶାସକ ତଥା ପ୍ରଜାବତ୍ସଳ ଦାନବୀର ରୂପେ ସର୍ବଜନବିଦିତ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଦକ୍ଷିଣ ଓଡ଼ିଶାର ବିଦ୍ୟାନଗରୀ - ପାରଳାଖେମୁଣ୍ଡିରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଉତ୍କଳମାତାର ସେବାରେ ନିଜକୁ ନିୟୋଜିତ କରିଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାରେ ତାଙ୍କର ଭୂମିକା ଥିଲା ଉଲ୍ଲେଖନୀୟ ।



୧୮୯୨ ମସିହା ଏପ୍ରିଲ ୨୬ ତାରିଖ (ବୈଶାଖ କୃଷ୍ଣ ଅମାବାସ୍ୟା ତିଥି)ରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିର ରାଜପରିବାରରେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପିତା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଓ ମାତା ରାଧାମଣି ଦେବୀଙ୍କର କୋଳ ମଣ୍ଡନ କରିଥିଲେ । ତୁଳସୀ ଦୁଇପତ୍ରରୁ ବାସିଲାଭଳି ତାଙ୍କ ଚରିତ୍ର ବାଲ୍ୟ ଜୀବନରୁ ଜଣାପଡ଼ିଥିଲା । ପିତା ଗୌରଚନ୍ଦ୍ର ଗଜପତି ଓ ପିତୃବ୍ୟ ପଦ୍ମନାଭ ଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଓ ମି. ଏଡମଣ୍ଡ କ୍ୟାଣ୍ଡେଲର ଗୃହ ଶିକ୍ଷକଙ୍କ ଦାୟିତ୍ୱରେ ସେ ବାଲ୍ୟଶିକ୍ଷା ସମାପ୍ତ କରିଥିଲେ । ପ୍ରାଥମିକ ଶିକ୍ଷା ଶେଷ ହେବା ପରେ ଉଚ୍ଚ ଶିକ୍ଷା ପାଇଁ ସେ ମାନ୍ଦ୍ରାଜ ଗଲେ । ଅଧ୍ୟକ୍ଷ ମରିସନ୍ ସାହେବ ଓ ଅଧ୍ୟାପକ ମି. ଡି.ଲାହେ, ନିୟୁଲଣ୍ଡନ କଲେଜରେ ତାଙ୍କର ଶିକ୍ଷକ ଥିଲେ । ମାନ୍ଦ୍ରାଜରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କ ପିତା ଗୌରଚନ୍ଦ୍ର ନାରାୟଣ ଦେବଙ୍କର ସ୍ୱର୍ଗବାସ ହୋଇଥିଲା । ପାଠପଢ଼ା ଶେଷ ପରେ କୃଷ୍ଣଚନ୍ଦ୍ର ୧୯୧୩ ମସିହାରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ଖରସୁଆଁ ରାଜ୍ୟର ରାଜଜେମାଙ୍କୁ ବିବାହ କରିଥିଲେ । ସେହିବର୍ଷ ପ୍ରଥମ ମହାଯୁଦ୍ଧ ହୋଇଥିଲା । ଏହି ମହାସମରର ଘନଘଟା ପୂର୍ବରୁ ସେ ସିଂହାସନ ଆରୋହଣ କରିଥିଲେ । ରାଜ୍ୟାଭିଷେକ ପରେ ସେ ପାଞ୍ଚୋଟି କାର୍ଯ୍ୟ କରିବା ପାଇଁ ଶପଥ ଗ୍ରହଣ କରିଥିଲେ । ୧. ପିତାଙ୍କ ସଂରକ୍ଷିତ ରାଜକୋଷ (୨୫ ଲକ୍ଷ ଟଙ୍କା)ରୁ ନିଜ ସୁଖ ସ୍ୱାଛନ୍ଦ୍ୟ ନିମନ୍ତେ ଖର୍ଚ୍ଚ କରିବେ ନାହିଁ । ସେହି ଗଚ୍ଛିତ ଧନ କେବଳ ଦେଶୋପକାରରେ ଲାଗିବ । ୨. ପୂର୍ବ ପୁରୁଷଙ୍କ ଦ୍ୱାରା ନିର୍ମିତ କୀର୍ତ୍ତିମାଳାର ଉନ୍ନତି ସାଧନ, ୩. ପ୍ରଜାମଙ୍ଗଳ ନିମନ୍ତେ ଲୋକହିତକର କାର୍ଯ୍ୟ କରିବା, ୪. ପଦବ୍ରଜରେ ଯାଇ ବ୍ରହ୍ମକପାଳରେ ପିତା ଓ ପ୍ରପିତାମହଙ୍କୁ ପିଣ୍ଡ ଦେବେ ଓ ୫. ସ୍କଟଲାଣ୍ଡର ବନାନୀ ମଧ୍ୟରେ ପଶୁ ଶିକାର କରିବେ ।

ପରବର୍ତ୍ତୀ ଜୀବନରେ ଏହି ସର୍ତ୍ତଗୁଡ଼ିକ ପାଳନ କରିଥିବା ଯୋଗୁଁ ସେ ପରମ ଶାନ୍ତି ଓ ଆଶ୍ୱସ୍ତି ଲାଭ କରିଥିଲେ । କୃଷ୍ଣଚନ୍ଦ୍ର ଦେବଙ୍କର ଦୁଇ ଗୋଟି ପୁତ୍ର ଥିଲେ । ମାତ୍ର ବୈବାହିକ ଜୀବନ ତାଙ୍କର ଦୀର୍ଘକାଳ ସ୍ଥାୟୀ ହୋଇ ନଥିଲା । ପାଟରାଣୀଙ୍କର ଅକାଳ ବିୟୋଗ ଯୋଗୁଁ ସେ ଏକପତ୍ନୀ ବ୍ରତ ଗ୍ରହଣ କରିଥିଲେ । ''ପ୍ରଜା ପାଇଁ ରାଜାର ଜନ୍ମ'' - ସତ୍ୟକୁ ଆଧାର କରି ପ୍ରଜାନୁରଞ୍ଜନ ନିମନ୍ତେ ଜୀବନ ଉତ୍ସର୍ଗ କରିଥିଲେ । ସେସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବିଭିନ୍ନ ପ୍ରଶାସନିକ

ଅଧୀନରେ ରହିଥିଲା । ସମସ୍ତ ଓଡ଼ିଆ ଭାଷାଭାଷୀ ଲୋକେ ଗୋଟିଏ ଅଞ୍ଚଳରେ ରହିଲେ, ଉନ୍ନତି ସମ୍ଭବ ବୋଲି କୃଷ୍ଣଚନ୍ଦ୍ର ଦେବ ହୃଦୟଙ୍ଗମ କରିପାରିଥିଲେ । ତଦନୁସାରେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କାର୍ଯ୍ୟ କରିବାକୁ ସେ ଶପଥ ଗ୍ରହଣ କରିଥିଲେ । ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ୧୯୧୪ ମସିହା ଡିସେମ୍ବର ମାସରେ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ହୋଇଥିଲା । ଏହା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ବିଶେଷ ପ୍ରଭାବିତ କରିଥିଲା । ଏହି ସମ୍ମିଳନୀର ପ୍ରାରମ୍ଭରେ କୃଷ୍ଣଚନ୍ଦ୍ର ଗଜପତି ଦୃଢ଼ତାର ସହିତ ପ୍ରସ୍ତାବ ଦେଇ କହିଲେ, ''ଓଡ଼ିଆ ଭାଷାଭାଷୀଙ୍କୁ ଏକ ଶାସନାଧୀନ କରିବା ପାଇଁ କେବଳ ଦାବି ନ କରି ସମଗ୍ର ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳକୁ ଏକତ୍ରୀତ କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି କରିବା ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ ।'' କୃଷ୍ଣଚନ୍ଦ୍ରଙ୍କର ଏଇଭଳି ବଳିଷ୍ଠ ଓ ଅକାଟ୍ୟ ଯୁକ୍ତି ସମ୍ମିଳନୀର ନେତୃବର୍ଗ, ଏପରିକି ବୟୋଜ୍ୟେଷ୍ଠ ନେତା ମଧୁବାବୁଙ୍କୁ ମଧ୍ୟ ଚକିତ କରି ଦେଇଥିଲା ଏବଂ ଗଜପତିଙ୍କର ଏହି ବଜ୍ର ନିର୍ଘୋଷ ନିନାଦ ଗୋପବନ୍ଧୁ ଦାସ, ଫକୀର ମୋହନ ସେନାପତି, ଶଶିଭୂଷଣ ରଥ ଓ ମଧୁସୂଦନ ଦାସ ଇତ୍ୟାଦିଙ୍କର ସମର୍ଥନ ପାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏକ ପ୍ରସ୍ତାବ ଭାବରେ ଉତ୍କଳ ସମ୍ମିଳନୀରେ ଗୃହୀତ ହେଲା । ୧୯୧୭ ମସିହାରେ ମଣ୍ଟେଗୁ-ଚେମସ୍ ଫୋର୍ଡ଼ କମିଟି ଭାଷାଭିତ୍ତିକ ପ୍ରଦେଶ ଗଠନ ସପକ୍ଷରେ ମତ ପ୍ରକାଶ କରିଥିଲେ । ଏ ସଂପର୍କରେ ଉତ୍କଳର ସଦସ୍ୟଭାବେ କୃଷ୍ଣଚନ୍ଦ୍ର ଦିଲ୍ଲୀଠାରେ ମଣ୍ଟେଗୁଙ୍କ ସହିତ ସାକ୍ଷାତ କରିଥିଲେ । ୧୯୨୨ ମସିହାରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ଏକ ସ୍ୱତନ୍ତ୍ର ପ୍ରସ୍ତାବ ଗୃହୀତ ହୋଇଥିଲା । ଫିଲିପ୍ ଡଫ୍ କମିଟି ବିଶାଖାପାଟଣା ଓ ଗଂଜାମ ଗସ୍ତ ବେଳେ ଗଜପତିଙ୍କ ସହିତ ସାକ୍ଷାତ କରିଥିଲେ । ୧୯୨୭ ମସିହାରେ ଭାରତରେ ଶାସନ ସଂସ୍କାର ପାଇଁ ବ୍ରିଟିଶ୍ ସରକାର ସାଇମନ୍ କମିଶନ୍ ନିଯୁକ୍ତି କରିଥିଲେ । ସମଗ୍ର ଦେଶ ସେତେବେଳେ ସାଇମନ୍ କମିଶନ୍‌ଙ୍କୁ ବାସନ୍ଦ କରିଥିଲେ । କିନ୍ତୁ ଓଡ଼ିଶାର ସ୍ୱାର୍ଥ ନିମନ୍ତେ ଗଜପତି ଅଣ୍ଟାଭିଡ଼ି ସାଇମନ୍ କମିଶନ୍‌ଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଆଗେଇ ଆସିଥିଲେ । ଯା' ଫଳରେ ଓଡ଼ିଶା କଥା ବିଚାର କରିବା ପାଇଁ ଅଟଲିଙ୍କ ଅଧ୍ୟକ୍ଷତାରେ ଏକ ସବ୍‌କମିଟି ଗଠନ କରାଗଲା ଓ ସେହି କମିଟି ଓଡ଼ିଶା ପାଇଁ ଅନୁକୂଳ ମତ ପ୍ରକାଶ କଲେ । ପ୍ରଥମ ଗୋଲ ଟେବୁଲ ବୈଠକ ଲଣ୍ଡନଠାରେ ଅନୁଷ୍ଠିତ ହେଲା । ବିହାର ଓ ଓଡ଼ିଶା ସରକାରଙ୍କ ତରଫରୁ କୃଷ୍ଣଚନ୍ଦ୍ର ଗଜପତି ମନୋନୀତ ସଭ୍ୟଭାବେ ଗୋଲ ଟେବୁଲ ବୈଠକରେ ଓଡ଼ିଶାର ଦାବି ଉତ୍ଥାପନ କରି ଏକ ଐତିହାସିକ ଭାଷଣ ଦେଇ ବିଟ୍ରିଶ୍ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି କହିଥିଲେ, ''ଆମେ ଚାହୁଁ ଭାଷା ଓ ଜାତି ସୂତ୍ରରେ ପ୍ରଦେଶ ଗଠନ । ଏକ କୋଟି ଓଡ଼ିଆଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଅନୁମତି ନଦେଇ ଆପଣମାନେ ଭାରତରେ ନୂତନ ଶାସନ ସଂସ୍କାର କରିପାରିବେ ନାହିଁ ।'' ଏହି ମନୀଷୀଙ୍କ ଯୁକ୍ତିଯୁକ୍ତ ବକ୍ତବ୍ୟ ଶୁଣି ଗୋଲଟେବୁଲ ବୈଠକରେ ଉପସ୍ଥିତ ବ୍ରିଟିଶ୍ ସରକାରଙ୍କ ପ୍ରତିନିଧିମାନେ ସ୍ତବ୍ଧ ହୋଇଯାଇଥିଲେ ।

ବିଲାତ ସରକାର ୧୯୩୧ ମସିହାରେ ଓଡ଼ନେଲ କମିଟି ବସାଇଲେ ଓ ଏହି କମିଟି ମୂଖ୍ୟତଃ ତିନୋଟି ବିଷୟ ପ୍ରତି ଧ୍ୟାନ ଦେଇଥିଲେ । ତନ୍ମଧ୍ୟରୁ ଗୋଟିଏ ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୀମା ନିର୍ଦ୍ଧାରଣ । ୧୯୩୨ ମସିହାରେ ଓଡ଼ନେଲ କମିଟି ରିପୋର୍ଟ ପ୍ରକାଶ ପାଇଲା । ଫିଲିପ୍ ଡଫ୍ କମିଟିର ଅନୁମୋଦନ ଲାଭ କରି ୧୯୩୩ ମସିହାରେ ଏହି ବିଷୟ ଶ୍ୱେତପତ୍ରରେ ପ୍ରକାଶ ପାଇଲା । ଏହି ଶ୍ୱେତପତ୍ର ନୈରାଶ୍ୟଜନକ ଥିଲା । କାରଣ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀ ଏଥିରୁ ବାଦ୍ ପଡ଼ିଥିଲା । ମଧୁବାବୁଙ୍କ ନିବେଦନକ୍ରମେ କୃଷ୍ଣଚନ୍ଦ୍ର ଜଏଣ୍ଟ ସିଲେକ୍ଟ କମିଟି ଆଗରେ ଏହି କଥା ଉପସ୍ଥାପନ କରିବା ନିମନ୍ତେ ବିଲାତ ଗଲେ ଏବଂ ଏହି କମିଟିର ଅଧ୍ୟକ୍ଷ ଲର୍ଡ଼ ଲିନ୍‌ଲିଥିଗୋଙ୍କୁ ପ୍ରଭାବିତ କରିପାରିଥିଲେ । ପରେ ଭାରତର ବଡ଼ଲାଟ୍ ଲର୍ଡ଼ ଉଇଲିଂଡ଼ନ୍‌ଙ୍କୁ ପ୍ରଭାବିତ କରି ଓଡ଼ିଶା ସହିତ ପାରଳାଖେମୁଣ୍ଡି ଓ ଜୟପୁରକୁ ମିଶାଇବା ପାଇଁ ରାଜି କରାଇ ପାରିଥିଲେ । ପରିଶେଷରେ ୧୯୩୬ ମସିହା ଏପ୍ରିଲ୍ ପହିଲା ଦିନ ୬ ଗୋଟି ଜିଲ୍ଲାକୁ ନେଇ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ଲାଭ କଲା ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଠିକ୍ ବର୍ଷକ ପରେ ଅର୍ଥାତ୍ ୧୯୩୭ ମସିହା ଏପ୍ରିଲ ମାସ ୧ ତାରିଖରେ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍ ଗଜପତି କୃଷ୍ଣଚନ୍ଦ୍ର

ଦେବଙ୍କୁ ନେତା ରୂପେ ନିର୍ବାଚିତ କରି ପ୍ରଥମ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ନିମନ୍ତ୍ରଣ କଲେ । ତେଣୁ ଗୋରାଚାନ୍ଦ ପଟ୍ଟନାୟକ ଓ ଲତିଫୁର୍‌ ରହମାନ୍‌ଙ୍କୁ ସଦସ୍ୟ ଭାବରେ ନେଇ ମନ୍ତ୍ରିମଣ୍ଡଳ ଗଠନ କରି ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ୧୯୩୭ ମସିହା ଏପ୍ରିଲ ପହିଲାରୁ ଜୁଲାଇ ମାସ ଅଠର ତାରିଖ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ ପରିଚାଳନା କଲେ ଏବଂ ପରେ ୧୯୪୧ ମସିହା ଡିସେମ୍ବର ମାସଠାରୁ ୧୯୪୪ ମସିହା ଜୁନ୍‌ ମାସ ପର୍ଯ୍ୟନ୍ତ ତୃତୀୟ ମନ୍ତ୍ରିମଣ୍ଡଳରେ ପୁନର୍ବାର ପ୍ରଧାନମନ୍ତ୍ରୀ ରୂପେ ଯୋଗ ଦେଇ ଦକ୍ଷତାର ସହ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଏବଂ ଓଡ଼ିଆ ଜାତି ତଥା ଭାଷାସାହିତ୍ୟର ଅଭିବୃଦ୍ଧି ପାଇଁ ନିଷ୍ଠାପର ଭାବରେ ବହୁ ଜନହିତକର ଓ ଉନ୍ନୟନମୂଳକ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ସେ ପ୍ରତ୍ୟକ୍ଷ ବିବଦମାନ ରାଜନୀତିରୁ ଅପସରି ଯାଇ କୃଷି ଓ ଶିଳ୍ପର ଉନ୍ନତି କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ୧୯୫୪ ମସିହାରେ ସେ ହିନ୍ଦୁସ୍ଥାନ୍‌ ଷ୍ଟିଲ୍‌ ଲିମିଟେଡ୍‌ର ନିର୍ଦ୍ଦେଶକ ରୂପେ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ ।

ରାଜନୀତି, ଶିଳ୍ପ, ଶିକ୍ଷା, ଗମନାଗମନ ଓ କୃଷି ବ୍ୟତୀତ ସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର ଅବଦାନ ଅତୁଳନୀୟ । କୃଷ୍ଣଚନ୍ଦ୍ର ଗଜପତି ଉଚ୍ଚଶିକ୍ଷାର ସୁବିଧା ପାଇଁ କଲେଜ ପ୍ରତିଷ୍ଠା କରିବା ସଂଗେସଂଗେ ଗରିବ ଛାତ୍ରଛାତ୍ରୀଙ୍କୁ ବୃତ୍ତି ପ୍ରଦାନ ବ୍ୟବସ୍ଥା ମଧ୍ୟ କରିଥିଲେ । ମହାରାଜାଙ୍କ ମନ୍ତ୍ରିତ୍ୱ ଥିବାଯାଏ ତାଙ୍କର ମାସିକ ଦରମା ଓ ଗସ୍ତଖର୍ଚ୍ଚ ସବୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କରୁଥିଲେ । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ''ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ''ର ମୁଦ୍ରଣ ଖର୍ଚ୍ଚ, ଗୋପାଳକୃଷ୍ଣ ପଦ୍ୟାବଳୀର ପ୍ରକାଶନ, ଜଗବନ୍ଧୁ ସିଂହଙ୍କ ''ପ୍ରାଚୀନ ଉତ୍କଳ'' ପ୍ରକାଶନ, ସିଂହଭୂମି ଅଞ୍ଚଳରେ ଓଡ଼ିଆ ଭାଷାର ପ୍ରସାର ଓ ପ୍ରଚାର, ''ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ୫ମ ଖଣ୍ଡ''ର ମୁଦ୍ରଣ ଓ ବହୁ କାବ୍ୟର ପ୍ରକାଶନ ପାଇଁ ସଂପୂର୍ଣ୍ଣ ଆର୍ଥିକ ସହାୟତା ଯୋଗାଇ ଦେଇ ଗଜପତି ନିଜକୁ ଜଣେ ସାହିତ୍ୟାନୁରାଗୀ ଭାବରେ ପରିଚୟ ଦେଇଥିଲେ । ସେ ତତ୍‌କାଳୀନ ଓଡ଼ିଶାର କୃଷକମାନଙ୍କ ଉନ୍ନତି ପାଇଁ ପାରଳାଖେମୁଣ୍ଡିଠାରେ ଆଦର୍ଶ କୃଷି ଫାର୍ମ ଓ କଟକଠାରେ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠାର ପ୍ରାରମ୍ଭିକ କାର୍ଯ୍ୟ ମଧ୍ୟ ତାଙ୍କ ସମୟରେ ଆରମ୍ଭ ହୋଇଥିଲା । ସେ ପାରଳାଖେମୁଣ୍ଡିଠାରେ ମଧ୍ୟ ଏକ ଛୋଟ ଇସ୍ପାତ ଶିଳ୍ପ ସଂସ୍ଥା ପ୍ରତିଷ୍ଠା କରି ତାହାକୁ ଟାଟା କମ୍ପାନୀ ସହିତ ଚୁକ୍ତି କରିଥିଲେ । ଓଡ଼ିଶାରେ କଳା ଓ ସଂସ୍କୃତିର ପ୍ରସାର ଓ ପ୍ରଚାର ପାଇଁ ତାଙ୍କର ଅବଦାନ ଅତୁଳନୀୟ । ବିଶେଷ କରି ଲଳିତକଳା, ସାହିତ୍ୟ, ସଙ୍ଗୀତ, ରାଗ ରାଗିଣୀ, ଗୋଟିପୁଅ ନାଚ ବା ଗାନ୍ଧର୍ବ ବିଦ୍ୟାରେ ମହାରାଜାଙ୍କ ଜନ୍ମସ୍ଥାନ ପାରଳାଖେମୁଣ୍ଡି ଥିଲା ଚିର ପ୍ରସିଦ୍ଧ । ଯାହାକି ସହରର ଅବସ୍ଥିତି ସାହିତ୍ୟ ସଙ୍ଗୀତର ଏକ କ୍ଷୁଦ୍ର ସଂସ୍କରଣ ବୋଲି ମନେହୁଏ । ଘୁମୁସରର ରାଜା ଧନଞ୍ଜୟ ଭଞ୍ଜ, ନାତି ଉପେନ୍ଦ୍ର ଭଞ୍ଜଙ୍କୁ କଥା ଛଳରେ କହିଥିଲେ –

''ଗଣିତରେ ଖଣ୍ଡପଡ଼ା ସଂସ୍କୃତରେ ନୟାଗଡ଼
କ୍ଷତ୍ରିୟରେ ଘୁମୁସର
ଧରାକୋଟ ରାଜନୀତି
ଗନ୍ଧର୍ବ ବିଦ୍ୟାରେ ପାରଳାଖେମୁଣ୍ଡି
ମନେ ରଖିଥିବୁ ନାତି ।''

୧୯୭୪ ମସିହା ମଇ ମାସ ୨୫ ତାରିଖରେ ୮୨ ବର୍ଷ ବୟସରେ ପାରଳାଖେମୁଣ୍ଡି ସହରରେ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କର କର୍ମମୟ ଜୀବନର ଅବସାନ ଘଟିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବାରେ ତାଙ୍କର ଅଦମ୍ୟ ପ୍ରଚେଷ୍ଟା ଥିଲା ଅତୁଳନୀୟ । ଜଣେ ବିଚକ୍ଷଣ ରାଜନୀତିଜ୍ଞ, ଦେଶଭକ୍ତ, ଶିକ୍ଷାନୁରାଗୀ ତଥା ସୁଶାସକ ଭାବେ ତାଙ୍କର ନାମ ଚିର ଦିନ ପାଇଁ ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର



# ଓଡ଼ିଆ ଜାତିର ଭୀଷ୍ମ ପିତାମହ କୁଳବୃଦ୍ଧ ମଧୁସୂଦନ

**ପଣ୍ଡିତ ତ୍ରିଲୋଚନ ମିଶ୍ର**

ନିଜକୁ ଜଣେ ଓଡ଼ିଆଭାବେ ପରିଚୟ ଦେଇ ଗର୍ବ ଅନୁଭବ କରୁଥିବା ମହାନ ଓଡ଼ିଆ ହେଉଛନ୍ତି ମଧୁବାବୁ । ତାଙ୍କ ଆଜୀବନ ପ୍ରଚେଷ୍ଟା ହେତୁ ଆଜି ଆମେ ଓଡ଼ିଆ ଭାବେ ଗର୍ବ ଅନୁଭବ କରୁଛେ । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ସଂସ୍କାର, ଧାର୍ମିକ ସ୍ଥିତି, ସାମାଜିକ ସ୍ଥିତିର ସୁରକ୍ଷା ପାଇଁ ସେ ଭୀଷ୍ମପିତାମହ ତୁଲ୍ୟ ବହୁ ପ୍ରତିରୋଧକୁ ପରାହତ କରିଥିଲେ । ସ୍ୱଦେଶୀ ଜାଗରଣ, ନାରୀ ଜାଗରଣ, ନିଶାନିବାରଣ ଭଳି କାର୍ଯ୍ୟରେ ସେ ସଫଳ ହୋଇଥିଲେ । ୧୯୧୯ ମସିହାରେ ଇଂଲଣ୍ଡରେ ପଚଳିତ ନାରୀ ସ୍ୱାଧୀନତା ଆଇନକୁ ଆମ ଦେଶରେ ପ୍ରଚଳନ କରିବାକୁ ସେ ପ୍ରଥମେ ପ୍ରୟାସ ଆରମ୍ଭ କରିଥିଲେ । ନିଜ ପାଳିତା କନ୍ୟା ଶୈଳବାଳା ଓ ସୁଧାଂଶୁବାଳାଙ୍କୁ ଭାରତର ପ୍ରଥମ ମହିଳା ଓକିଲ କରାଇ ପାରିଥିଲେ । ରେଭେନ୍ସା କଲେଜରେ ପରିଚାଳିତ ଆଇନ କଲେଜ ବନ୍ଦ ହୋଇଯିବା ସମ୍ଭାବନା ଦେଖି ସେ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ୭ବର୍ଷ ଅବୈତନିକ ଶିକ୍ଷାଦାନ କରି ଅନୁଷ୍ଠାନକୁ ବଞ୍ଚାଇ ରଖିଥିଲେ । ୧୮୪୮ ଏପ୍ରିଲ ୨୮ ତାରିଖରେ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମିତ ମଧୁବାବୁ ମାଗୁଣି ଅବଧାନଙ୍କ ଗ୍ରାମଚାଟଶାଳୀରୁ ଶିକ୍ଷା ଆରମ୍ଭ କରି କଟକ ଜିଲ୍ଲା ସ୍କୁଲରେ ପଢିବା ପରେ କଲିକତା ଯାଇ ଉଚ୍ଚଶିକ୍ଷା ପ୍ରାପ୍ତି ସହ ନିଜକୁ ବହୁ କ୍ଷେତ୍ରରେ ପ୍ରଥମ ଓଡ଼ିଆର ପରିଚୟରେ ପରିଚିତ କରାଇପାରିଥିଲେ । ସେ ଥିଲେ ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍, ପ୍ରଥମ ଏମ୍.ଏ., ପ୍ରଥମ ବିଲାତଯାତ୍ରୀ, ପ୍ରଥମ ଏଲ୍.ଏଲ୍‌ବି, ବିହାର ଓଡ଼ିଶା ବିଧାନସଭାର ସଦସ୍ୟ, ବଙ୍ଗ ବିଧାନସଭାର ସଦସ୍ୟ, ପ୍ରଥମ ଓଡ଼ିଆ ମନ୍ତ୍ରୀ, ଭାଇସ୍‌ରାୟଙ୍କ ପରିଷଦର ସଦସ୍ୟ, ଭାରତୀୟ ଇସାଲ ମହାସଂଘର ରାଷ୍ଟ୍ରୀୟ ଅଧକ୍ଷ, ବିନା ଦରମାରେ ମନ୍ତ୍ରୀତ୍ୱ ଦାବିକରି ଗୃହୀତ ନହେବାରୁ ପଦତ୍ୟାଗ ଭଳି ଅନେକ । ଓଡ଼ିଆ ଭାଷାକୁ ମୂଳପୋଛ କରିବାର ପ୍ରୟାସ ବଙ୍ଗୀୟମାନଙ୍କ ଦ୍ୱାରା ଚାଲିଥିବା ସ୍ଥିତିକୁ ଲକ୍ଷ୍ୟକରି ସେ ଗଢିଥିଲେ ଉତ୍କଳ ଭାଷା ସୁରକ୍ଷା ସଂଗଠନ । ଭିଙ୍ଗାରପୁର ଜମିଦାର ଚୌଧୁରୀ କାଶୀନାଥ ଦାଶ ଏହାର ସଭାପତି ଓ କର୍ମବୀର ଗୌରୀଶଙ୍କର ରାୟ ଏହାର ପ୍ରଥମ ସମ୍ପାଦକ ଥିଲେ । ନିଜେ ସଂଗଠନ ଗଢି ମଧ୍ୟ ଏହାର ଉପସଭାପତି ଥିଲେ । ଏହି ଅନୁଷ୍ଠାନର ପ୍ରେରଣାରେ ୧୯୦୩ରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ 'ଉତ୍କଳ ସମ୍ମିଳନୀ' ଗଠିତ ହୋଇଥିଲା । ବାପୁଜୀଙ୍କର ସେ ଅତ୍ୟନ୍ତ ସମ୍ମାନିତ ବ୍ୟକ୍ତିଥିଲେ । ବହୁଧା ଗାନ୍ଧିଜୀ ଏହା ପ୍ରକାଶ କରିଛନ୍ତି । ୧୯୨୯ ଅଗଷ୍ଟ ୧୯ରୁ ୨୧ ତାରିଖ ପର୍ଯ୍ୟନ୍ତ ଗାନ୍ଧିଜୀ ଏକ ସ୍ୱତନ୍ତ୍ର ଗସ୍ତରେ ଆସି ମଧୁବାବୁଙ୍କ ଅତିଥି



ହୋଇଥିଲେ । ତାଙ୍କ ପାଖରେ ୩ଦିନ କଟାଇ ତାଙ୍କ ଦ୍ୱାରା ଗଢା ଉତ୍କଳ ଟ୍ୟାନେରୀ ଓଡ଼ିଶା ଆର୍ଟଓୟାର, ତନ୍ତବୁଣା ପାଟ ପ୍ରସ୍ତୁତି କେନ୍ଦ୍ର, ଖଦୀ କେନ୍ଦ୍ର କୁଟୀର ଶିଳ୍ପକେନ୍ଦ୍ର ବୁଲି ଦେଖି ବିଶେଷ ପ୍ରଭାବିତ ହୋଇଥିଲେ । ମୌଳିକ ଶିକ୍ଷା ପ୍ରଚଳନ, ଗ୍ରାମୀଣ ଅର୍ଥନୀତିର ସୁଦୃଢ଼ୀକରଣ, କୁଟୀର ଶିଳ୍ପର ବିକାଶ, ଜାତୀୟ ସଂହତି ରକ୍ଷା, ନାରୀ ଜାଗରଣ, ନିଶାନିବାରଣ, ସମବାୟ ଆନ୍ଦୋଳନର ସୁଦୃଢ଼ୀକରଣ ଭଳି ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ବାପୁ ମଧୁବାବୁଙ୍କ ପରାମର୍ଶ ଲୋଡିଥିଲେ । ଓଡ଼ିଶାକୁ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦେବାକୁ କଂଗ୍ରେସର କାଳକ୍ଷେପଣ ନୀତି ଦୃଷ୍ଟିରୁ ମଧୁବାବୁ ନିଜକୁ କଂଗ୍ରେସଠାରୁ ଦୂରେଇ ରଖିଥିଲେ । ଓଡ଼ିଆଙ୍କ ସ୍ୱାର୍ଥ ହାସଲ ପାଇଁ ଗାନ୍ଧୀଙ୍କ ଅନିଚ୍ଛା ସତ୍ତ୍ୱେ ସେ 'ସାଇମନ କମିଶନ'ଙ୍କୁ ପୂର୍ଣ୍ଣ ସମର୍ଥନ କରିଥିଲେ ।

୧୯୦୩ରେ ମଧୁବାବୁଙ୍କ ଦ୍ୱାରା ଗଠିତ ଉତ୍କଳ ସମ୍ମିଳନୀକୁ ପ୍ରତ୍ୟେକ ଓଡ଼ିଆଙ୍କ ସମର୍ଥନ ମିଳିବା ଦେଖି ସେ ସଂଗଠନକୁ ଅଧିକ ସୁଦୃଢ଼ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ପାଇବାକୁ ସମର୍ଥ ହୋଇଥିଲେ । ୧୯୩୧ରେ ଅନୁଷ୍ଠିତ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଉତ୍କଳ ସମ୍ମିଳନୀ ଦାବିକୁ ମାନିନେଇ ବ୍ରିଟିଶ ପାର୍ଲାମେଣ୍ଟ ଓଡ଼ିଶାକୁ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ମାନ୍ୟତା ଦେବା ସ୍ଥିର କରିନେଲେ । ଏହା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଖୁସିର ଖବର ଥିଲା । ମଧୁବାବୁଙ୍କ ଖୁସିର ସୀମା ନଥିଲା । ସେ ପଣ୍ଡିତ ନୀଳକଣ୍ଠଙ୍କୁ ପାଖରେ ବସାଇ ଭାବବିହ୍ୱଳ ହୋଇ କହିଥିଲେ- 'ଏଥର ମୋର କାମ ସରିଗଲା । ମୋତେ ଯିବାକୁ ଦିଅ । ମନେ ରଖିଥିବା ଜଣେ ଓଡ଼ିଆ ଥିଲା ।' ଏହି ପଦକ କଥାରେ ପଣ୍ଡିତ ନୀଳକଣ୍ଠ କାନ୍ଦି ପକାଇଥିଲେ । ପରେ ପରେ ରାଜ୍ୟର ସୀମା ନିର୍ଣ୍ଣୟ ସାରି ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଘୋଷଣା କାର୍ଯ୍ୟ ୧୯୩୬ ଏପ୍ରିଲ ପହିଲା ଦିନ ସମ୍ପୂର୍ଣ୍ଣ ହେଲା । ସେତେବେଳକୁ ମଧୁବାବୁ ନଥିଲେ । ମାତ୍ର କୀର୍ତ୍ତିର କୋଣାର୍କ ଗଢିଦେଇ ଗଲେ ।

୧୯୨୧ରେ ମଧୁବାବୁ ବିହାର ଓଡ଼ିଶା ଶାସନର ବରିଷ୍ଠ ମନ୍ତ୍ରୀ ପଦ ପାଇଲେ । କିନ୍ତୁ ମନ୍ତ୍ରୀ ହେବା ପରେ ସେ ଇଂରେଜ ସରକାରଙ୍କଠାରୁ ଦରମା ନେବାକୁ ମନାକଲେ । ତାଙ୍କର ଯୁକ୍ତିଥିଲା ଇଂରେଜମାନଙ୍କଠାରୁ ଦରମା ନେଇ ସେ ପ୍ରଦେଶବାସୀଙ୍କୁ ନ୍ୟାୟ ଦେଇପାରିବେ ନାହିଁ । ମାତ୍ର ଇଂରେଜ ସରକାର ତାଙ୍କୁ ଏପରି କରିବାକୁ ବାରଣ କରିବାରୁ ତଥା ଅନ୍ୟ ମନ୍ତ୍ରୀମାନେ ଦରମା ନେବା ସପକ୍ଷରେ ଥିବା ଦୃଷ୍ଟିରୁ ସେ ତୁରନ୍ତ ମନ୍ତ୍ରୀପଦ ତ୍ୟାଗ କଲେ । ଏହା ପରାଧୀନ ଓ ସ୍ୱାଧୀନ ଭାରତ ପାଇଁ ଏକ ଅନନ୍ୟ ଉଦାହରଣ । ତାଙ୍କର ଏହି କାର୍ଯ୍ୟ ଓଡ଼ିଆ ଜାତିର ଗୌରବକୁ ଶତଗୁଣ ବଢାଇ ଦେଇଥିଲା । ତାଙ୍କର ବାଗ୍ମିତା, ନିର୍ଭୀକତା, ଦୃଢ଼ତା, ସ୍ୱଦେଶ ପ୍ରୀତି, ନୀତି, ଆଦର୍ଶ ଆଗରେ ବିଦେଶୀ ଇଂରେଜମାନେ ମଧ୍ୟ ମଥାନତକରି ଟୋପିଖୋଲି ସମ୍ମାନ ଜଣାଇ କରମର୍ଦ୍ଦନ କରୁଥିଲେ । ଏହା କ'ଣ ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗର୍ବଗୌରବର ବିଷୟ ନୁହେଁ ।

କୁଳବୃଦ୍ଧ ମଧୁସୂଦନ ଥିଲେ ବଙ୍ଗଳାର ମହାନ ଜନନାୟକ ସାର ଆଶୁତୋଷ ମୁଖାର୍ଜୀଙ୍କ ପୂଜ୍ୟ ଗୁରୁ ଓ ତାଙ୍କ ସୁପୁତ୍ର ଶ୍ୟାମାପ୍ରଶାଦ ମୁଖାର୍ଜୀଙ୍କ ମହାନ ଆଦର୍ଶ । ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ, ପଣ୍ଡିତ ଗୋଦାବରୀଶ ମିଶ୍ର, ବ୍ୟାସକବି ଫକୀର ମୋହନ, ସ୍ୱଭାବକବି ଗଙ୍ଗାଧର ମେହେର, ଶଶିଭୂଷଣ ରଥ, ଚନ୍ଦ୍ରଶେଖର ବେହେରା, କର୍ମବୀର ଗୌରୀଶଙ୍କର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନଙ୍କ ଭଳି ଅନେକ ଆଗଧାଡିର ଓଡ଼ିଆ ତଥା ଓଡ଼ିଶାର ରାଜା, ମହାରାଜା, ଜମିଦାର ସମସ୍ତେ କୁଳବୃଦ୍ଧ ମଧୁସୂଦନଙ୍କୁ ମୁରବି ମାନୁଥିଲେ । ବହୁବାର ସେ ତାଙ୍କ ନେତୃତ୍ୱର, ମୁରବିତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ୧୯୨୩ ଜାନୁଆରୀ ୨୪ ତାରିଖ ଦିନ କନିକା ରାଜାଙ୍କ ଦ୍ୱାରା ଆଗତ ଏକ ମିଥ୍ୟା ମାନହାନୀ ମୋକଦ୍ଦମାରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ ଇଂରେଜ ସରକାର ଗିରଫ କଲେ । ମଧୁବାବୁଙ୍କ ଚାପରେ ପରେ କନିକା ରାଜା ମୋକଦ୍ଦମା ପ୍ରତ୍ୟାହାର କରିଥିଲେ ମଧ୍ୟ ଇଂରେଜ ସରକାର ଆକ୍ରୋଶ ରଖି ତାଙ୍କୁ ହଜାରୀବାଗ ଜେଲକୁ ପଠାଇଦେଲେ । ଏହାର ପ୍ରତିବାଦରେ ମଧୁବାବୁ ୧୯୨୪ ଜାନୁଆରୀ ୨୦ ତାରିଖ ଦିନ ଇଂରେଜ ସରକାରଙ୍କ ଅନ୍ୟାୟ କାର୍ଯ୍ୟ ବିରୁଦ୍ଧରେ ଏକ ନିନ୍ଦା ପ୍ରସ୍ତାବ ବିହାର ଓଡ଼ିଶା ବିଧାନସଭାରେ ଗୃହୀତ କରାଇ ସରକାରଙ୍କୁ ଅପଦସ୍ତ କରାଇଦେଲେ । ସରକାର ଉପାୟ ନପାଇ ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ ତୁରନ୍ତ ମୁକ୍ତ କରିଦେଲେ । ସେସମୟରେ ଏ ଘଟଣା ସମଗ୍ର ଭାରତରେ ଚହଳ ପକାଇ ଦେଇଥିଲା ।

ନିଜେ ଗାନ୍ଧିଜୀ କହିଥିଲେ ମିଷ୍ଟର ଦାସଙ୍କ ତୁଳନା ନାହିଁ । ମଧୁବାବୁ ଥିଲେ ସାଲିସ ବିହୀନ ନିର୍ଭୀକ ବ୍ୟକ୍ତିତ୍ୱ । ଯୁବାବସ୍ଥାରେ ପତ୍ନୀଙ୍କୁ ହରାଇ ମଧ୍ୟ ସେ ନିଜର ସମସ୍ତ ସମ୍ପତ୍ତି ଓଡ଼ିଆ ଜାତିର ଉତ୍‌ଥାନରେ ଲଗାଇ ପ୍ରତ୍ୟେକ ଓଡ଼ିଆଙ୍କ ହୃଦୟରେ ଭୀଷ୍ମ ପିତାମହଙ୍କ ପରି ମାନ୍ୟତା ପାଇପାରିଥିଲେ ।

ଓଡ଼ିଆ ଜାତିକୁ ବିଶ୍ୱଦରବାରରେ ଏକ ସ୍ୱତନ୍ତ୍ର ପରିଚୟ ଦେବା ତାଙ୍କ ଜୀବନର ମୂଳଲକ୍ଷ୍ୟ ଥିଲା । ସେ ବିଲାତ ରହଣି ସମୟରେ ଓଡ଼ିଶାର ତାରକସି କାର୍ଯ୍ୟ, ପାଟବସ୍ତ୍ର, ଚମଡାଦ୍ରବ୍ୟ, ଲଣ୍ଡନର ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଉପହାର ରୂପେ ଦେଉଥିଲେ । ସାଥିରେ ଥିବା କନ୍ୟା ଶୈଳବାଳା ଏଭଳି ଅବିଶ୍ରାନ୍ତ ଅର୍ଥଶ୍ରାଦ୍ଧକୁ ସୀମିତ କରିବାକୁ ଅନୁରୋଧ କରନ୍ତେ ମଧୁବାବୁ ବୁଝାଇ କହିଥିଲେ 'ମୁଁ ମୋ ଓଡ଼ିଆ ଜାତିର ଐତିହ୍ୟସହ ବିଶ୍ୱବାସୀଙ୍କୁ ପରିଚିତ କରାଇବା ପାଇଁ ଏଠାକୁ ଆସିଛି । ମୋ ଜାତି ମୋର ସର୍ବଶ୍ରେଷ୍ଠ ସମ୍ପଦ । ଏ ସମ୍ପଦର ସୁରକ୍ଷା ପାଇଁ ମୁଁ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରସ୍ତୁତ ।' ମଧୁବାବୁଙ୍କ ଦୃଢ ସଂକଳ୍ପର ଅନ୍ୟଏକ ଅନନ୍ୟ ଦୃଷ୍ଟାନ୍ତ ହେଲା ଶ୍ରୀମନ୍ଦିର ପ୍ରଶାସନରୁ ଗୋରା ସରକାରଙ୍କୁ ଦୂରେଇ ରଖିବା । ତାଙ୍କ ଅକାଟ୍ୟ ଯୁକ୍ତି ଆଗରେ ଇଂରେଜ ବିଚାରକ ମଣ୍ଡଳୀ ମଥାନୁଆଁଇ ଶ୍ରୀମନ୍ଦିର ଶାସନ ଆଶା ଛାଡି ଦେଇଥିଲେ । ମଧୁବାବୁଙ୍କ ଭୀଷ୍ମ ପ୍ରତିଜ୍ଞା ଥିଲା ସେ ବଞ୍ଚିଥିବା ପର୍ଯ୍ୟନ୍ତ ଇଂରେଜ ସରକାର ଶ୍ରୀମନ୍ଦିର ଛାଇ ମାଡିପାରିବେ ନାହିଁ । ଓଡ଼ିଆ ଜାତିର ଉତ୍‌ଥାନ ପାଇଁ ସେ ମଧ୍ୟ ଜଣେ ଦରଦୀ କବି ପାଲଟି ଯାଇଥିଲେ । ଏହି ଅନନ୍ୟ କବିତାର ତୁଳନା ନାହିଁ । ତାଙ୍କ ରଚନାର ଦୃଷ୍ଟାନ୍ତ ଏପରି – ତୁପରା ବୋଲାଉ ଉତ୍କଳ ସନ୍ତାନ, ତେବେ କିମ୍ପା ତୁହି ଭୀରୁ, ତୋହର ଜନନୀ ରୋଦନ କରିଲେ, କହିବାକୁ କିମ୍ପା ଡରୁ, ତୋ ପୂର୍ବ ପୁରୁଷେ ଜୟ କରିଥିଲେ, ଗଙ୍ଗାଠାରୁ ଗୋଦାବରୀ, ତାଙ୍କରି ଔରସେ ଜନ୍ମ ହୋଇ ତୁହି, କେଉଁ ଗୁଣେ ତାଙ୍କ ସରି ? ଏପରି ଅନେକ ପ୍ରେରଣା ଦାୟୀ ଉପଦେଶ ।

ଏ ଜାତିର ଭିଷ୍ମ ପିତାମହ କୁଳବୃଦ୍ଧ ମଧୁସୂଦନ ଶେଷ ନିଃଶ୍ୱାସ ଛାଡିବା ସମୟରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ନିଶ୍ଚିନ୍ତ ଜାଣି ପ୍ରସନ୍ନ ଥିଲେ । ପଣ୍ଡିତ ନୀଳକଣ୍ଠଙ୍କୁ ପାଖରେ ବସାଇ ଅନେକ ଭବିଷ୍ୟତ ଯୋଜନା ବୁଝାଉଥିଲେ । ଡାକ୍ତରଙ୍କ ପରାମର୍ଶ ଥିବାରୁ କନ୍ୟା ଶୈଳବାଳା ପିତାଙ୍କୁ ନିରବ ରହିବାକୁ ଅନୁରୋଧ କରନ୍ତେ ମଧୁବାବୁ ସ୍ୱଷ୍ଟଭାବେ କହିଥିଲେ– 'ମୋ ଜୀବନ ଯାକର ବ୍ୟସ୍ତତା କେବଳ ମୋ ଓଡ଼ିଆ ଜାତିର ଉତ୍‌ଥାନ ପାଇଁ, ଅନ୍ତିମ ସମୟରେ ମୋତେ ଏଥିରୁ ଅଲଗା କରନାହିଁ । ପରେ ପରେ ମଧୁବାବୁ କନ୍ୟାଶୈଳବାଳାଙ୍କୁ କହିଥିଲେ, 'ମା ତୁ ଶୁଣୁଛୁ ମୋର ପ୍ରଭୁ ମୋତେ ପାଖକୁ ଡାକିଲେଣି, 'କହିଛନ୍ତି ପୁତ୍ର ପାଖକୁ ଆସ ଏଥର ବିଶ୍ରାମ କର । ହେ ଶାନ୍ତପୁତ୍ର ତୋ ଶିର ମୋ କୋଳରେ ରଖି ଶୋଇପଡ ।' ଏହି ପଦକ କଥାପରେ ସେ ଆଉ ଆଖି ଖୋଲି ନାହାନ୍ତି । ଓଡ଼ିଆ ଜାତିର ଭୀଷ୍ମପିତାମହ ଦୃଢ ସଂକଳ୍ପର ମୂର୍ତ୍ତିମନ୍ତ ପ୍ରତୀକ, ଉତ୍କଳ ଜନନୀର ଶ୍ରେଷ୍ଠ ସନ୍ତାନ ଶେଷରେ ତାରି କୋଳରେ ୧୯୩୪ ଫେବୃଆରୀ ୪ ତାରିଖରେ ମହାନଦୀର ପବିତ୍ର ବାଲୁକାପୂର୍ଣ୍ଣ ଗୋରା କବର ପରିସରରେ ଶେଷ ବିଶ୍ରାମ ନେଲେ । ତତ୍କାଳୀନ ସମସ୍ତ ସମ୍ବାଦପତ୍ର ଏଦୁଃଖଦ ସମ୍ବାଦ ସ୍ୱତନ୍ତ୍ର ପୃଷ୍ଠାରେ ପ୍ରକାଶ କଲେ । ସେମାନଙ୍କ ମତରେ ପୂର୍ବରୁ କଟକ ସହରରେ ଏଭଳି ଶବ ଶୋଭାଯାତ୍ରା କେବେ ବି ହୋଇନଥିଲା । ରାଜପଥରେ ସୋରିଷ ପକାଇବାକୁ ସ୍ଥାନ ନଥିଲା । ବୋହୂ ଭୁଆଶୁଣୀମାନେ ଲଜ୍ଜାକୁ ପଛରେ ପକାଇ ଘରୁ ବାହାରି ଆସି ଶବାଧାରରେ ପୁଷ୍ପବୃଷ୍ଟି କରି ମଙ୍ଗଳଧ୍ୱନି ଦେଇଥିଲେ । ତାଙ୍କ ଶେଷ ଦର୍ଶନ ପାଇଁ ସମଗ୍ର କଟକ ସହର ଚଳଚଞ୍ଚଳ ହୋଇ ଉଠିଥିଲା । ଇଂରେଜ ପଦାଧିକାରୀମାନେ ଟୋପି ଖୋଲି ଆଦ୍ର ଆଖିରେ ସଲାମ ଠୁକି ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ଏ ଅନୁଭବକୁ ଏ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ଭୁଲି ପାରିବ ନାହିଁ । ଶତ ଚେଷ୍ଟା କରି ମଧ୍ୟ ଓଡ଼ିଆ ଜାତି ତାଙ୍କ ଋଣରୁ ମୁକ୍ତ ହୋଇ ପାରିବ ନାହିଁ । ଆଜିବି ସେ ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ପ୍ରେରଣାର ଉତ୍ସ ଓ ନମସ୍ୟ ।

ପ୍ରକୃତିବନ୍ଧୁ ଭବନ
କାକଟପୁର, ପୁରୀ



# ସ୍ୱପ୍ନର ଓଡ଼ିଶା : ନେତୃତ୍ୱର ଅନ୍ୱେଷା

ଶୁଭଶ୍ରୀ ନନ୍ଦ

ଜଣେ ଅଭିଜ୍ଞ ରାଷ୍ଟ୍ରନୀତିଜ୍ଞ କ'ଣ ଗୋଟିଏ ଦେଶ ଓ ଜାତିକୁ ଯଥାର୍ଥ ନେତୃତ୍ୱ ଦେବାରେ ସମର୍ଥ ହୋଇପାରେ ? ଜଣେ ଲୋକପ୍ରିୟ, ବିଜ୍ଞ ନେତା କ'ଣ ସମାଜକୁ ସ୍ୱୀୟ ରାଜନୈତିକ ଦକ୍ଷତା ପ୍ରଦର୍ଶନ କରି ସଫଳତାର ଶୀର୍ଷ ସ୍ଥାନରେ ପହଞ୍ଚାଇ ଦେଇପାରେ ? ଏ ସମସ୍ତ ପ୍ରଶ୍ନର ଏକ ସ୍ୱଚ୍ଛ ଉତ୍ତର– କଦବା କ୍ୱଚିତ୍ । ତେବେ ରାଜନୀତି ଓ ନେତୃତ୍ୱ – ଦୁଇଟିର ପାରସ୍ପରିକ ସଂପର୍କର ଏକ ସମନ୍ୱିତ ଇତିବୃତ୍ତ – ଏକ ସ୍ୱର୍ଦ୍ଧିତ ବ୍ୟକ୍ତିତ୍ୱ – ଜଣେ ଆତ୍ମ ପ୍ରତ୍ୟୟରେ ପରିପୂର୍ଣ୍ଣ ଉତ୍ତୁଙ୍ଗ ନେତୃତ୍ୱର କାଳଜୟୀ ଦିଗ୍‌ଦର୍ଶକ – ସ୍ୱର୍ଗତ ବିଜୁ ପଟ୍ଟନାୟକ । ଦୀର୍ଘ ଦିନର ରାଜନୈତିକ ଜୀବନ କାଳରେ ମାତ୍ର ୧୧ ବର୍ଷ କାଳ ବିଭିନ୍ନ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରି ସେ ଯେଉଁଭଳି ରାଜନୈତିକ ପାରଦର୍ଶିତା ଓ ଦକ୍ଷତାର ସହ ଇତିହାସ ସୃଷ୍ଟି କରି ଯାଇଛନ୍ତି, ତାହା ଅନନ୍ୟ, ଅବିସ୍ମରଣୀୟ । ଏତଦ୍‌ବ୍ୟତୀତ ଓଡ଼ିଆମାନଙ୍କର ଜାତୀୟ ସ୍ୱାଭିମାନର ପ୍ରତୀକ ରୂପେ ସ୍ୱର୍ଗତ ବିଜୁ ପଟ୍ଟନାୟକ, ଯେପରି ନିର୍ଭୀକତା ଓ ଆତ୍ମୋତ୍ସର୍ଗର ସହ ସ୍ୱୀୟ ନେତୃତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ତାହା ତାଙ୍କୁ ବିଶ୍ୱର ଜଣେ ଅଦ୍ୱିତୀୟ ଜନନେତା ରୂପେ ପ୍ରତିପାଦିତ କରିପାରିଛି ।

ଓଡ଼ିଶା ପାଇଁ ଗର୍ବ ଓ ଗୌରବର ବିଷୟ, ଏହିଭଳି ଜଣେ ଯୋଗଜନ୍ମା, ଦେଶସେବକ, ସେବା ଓ ତ୍ୟାଗର ମନ୍ତ୍ରରେ ଦୀକ୍ଷିତ ହୋଇ ସେ ଏ ମାଟିକୁ ପବିତ୍ର କରିଛନ୍ତି । ଓଡ଼ିଶାର ସୁଯୋଗ୍ୟ ସନ୍ତାନ ବିଜୁ ପଟ୍ଟନାୟକଙ୍କର ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟର ସ୍ୱାକ୍ଷର ପ୍ରତ୍ୟେକ କ୍ଷେତ୍ରରେ – କଳା, ସାହିତ୍ୟ, ଶିଳ୍ପ, ବିଜ୍ଞାନର ଅଭିବୃଦ୍ଧି ସହ ରାଜନୀତିକୁ କଳୁଷମୁକ୍ତ, ସ୍ୱଚ୍ଛ ଓ ନିର୍ମଳ କରିବାର ଅଭିପ୍ରାୟ ଥିଲା ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର । ପାରାଦୀପ ବନ୍ଦର, ରାଉରକେଲାରେ ଇସ୍ପାତ କାରଖାନା, ହୀରାକୁଦ ବନ୍ଧଠାରୁ ଆରମ୍ଭ କରି ବିଶ୍ୱ ସ୍ତରରେ 'କଳିଙ୍ଗ ପୁରସ୍କାର' ୟୁନେସ୍କୋ ମାଧ୍ୟମରେ ପ୍ରଦାନ କରିବାର ସୁବନ୍ଦୋବସ୍ତ କରି ସେ ଓଡ଼ିଶାକୁ ବିଶ୍ୱ ଦରବାରରେ ସୁପ୍ରତିଷ୍ଠିତ କରିପାରିଛନ୍ତି । କଳିଙ୍ଗ ଟ୍ୟୁବ୍‌ସ୍, କଳିଙ୍ଗ ନିଉଜ୍, କଳିଙ୍ଗ ପୁରସ୍କାର, କଳିଙ୍ଗ ଏୟାର ୱେଜ୍, ଏ ସମସ୍ତ ମଧ୍ୟରେ ଓଡ଼ିଆ ପ୍ରାଣ ବିଜୁବାବୁ । ଓଡ଼ିଶା ବା କଳିଙ୍ଗର ଗୌରବମୟ ଐତିହ୍ୟ ଓ ସଂସ୍କୃତିକୁ ଉଜ୍ଜୀବିତ ରଖିବାର ପ୍ରୟାସରେ ସଫଳକାମ ହୋଇଥିଲେ ସେ । ନିଜର ପ୍ରତ୍ୟୁତ୍ପନ୍ନମତିତା, ମେଧା ଶକ୍ତି, ବୁଦ୍ଧି ଓ ଯୋଗ୍ୟତାକୁ ପ୍ରତିପାଦିତ କରି ବିଜୁ ପଟ୍ଟନାୟକ ପ୍ରତ୍ୟେକ ସ୍ତରରେ ସ୍ୱୀୟ ଅନବଦ୍ୟ ବ୍ୟକ୍ତିତ୍ୱର ସ୍ପଷ୍ଟ ପଦଚିହ୍ନ ରଖିଯାଇଛନ୍ତି । ଯେଉଁ କଳିଙ୍ଗ ବିଶ୍ୱର ବୃହତ୍ତମ ନୌଶକ୍ତି ରୂପେ ସୁବିଦିତ, ଯେଉଁ କଳିଙ୍ଗ ସଭ୍ୟତାରେ 'ଚଣ୍ଡାଶୋକ' 'ଧର୍ମାଶୋକ'ରେ ପରିଣତ ହୋଇଥିଲେ, ଯେଉଁ କଳିଙ୍ଗର ସ୍ଥାପତ୍ୟ ଶିଳ୍ପୀ ସୃଷ୍ଟି କରିଥିଲେ 'କୋଣାର୍କ' ଭଳି ବିଶ୍ୱ ବିସ୍ମୟ... ସେହି କଳିଙ୍ଗର ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ ଥିଲେ ସ୍ୱର୍ଗତ ବିଜୁ ପଟ୍ଟନାୟକ । ତାଙ୍କର ସ୍ୱପ୍ନର ଓଡ଼ିଶା ବିଷୟରେ ବକ୍ତବ୍ୟ ପ୍ରଦାନ କରି ବିଜୁବାବୁ କହିଥିଲେ – 'ମୋ ସ୍ୱପ୍ନର ଓଡ଼ିଶାରେ ରାଜ୍ୟର ସ୍ୱାର୍ଥ ପାଇଁ ବଳିଦାନ ପାଇଁ ପ୍ରସ୍ତୁତ ଥିବା ତରୁଣ ତରୁଣୀମାନଙ୍କର ସମସ୍ତ ଅନ୍ତଃର୍ନିହିତ ପ୍ରତିଭାର ଉନ୍ମେଷ ଆବଶ୍ୟକ ।' ଏ ରାଜ୍ୟର କୃଷକ ଓ କୃଷିର ଉନ୍ନତି ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥାର ବିକେନ୍ଦ୍ରୀକରଣ, କଳା ଓ ଭାସ୍କର୍ଯ୍ୟ ଶିଳ୍ପୀଙ୍କର ଉନ୍ନତି ଓ ଆର୍ଥିକ ପ୍ରଗତି ଓ ନାରୀ ନିର୍ଯାତନାର

ପରିସମାପ୍ତି ହିଁ ଥିଲା ବିଜୁ ପଟ୍ଟନାୟକଙ୍କର ସ୍ୱପ୍ନର ଅନ୍ୟତମ ଅଙ୍ଗ।

ସ୍ୱର୍ଗତ ବିଜୁ ପଟ୍ଟନାୟକ ଯେଭଳି ପୋଲ୍‌ଭଲ୍ଟ ଖେଳର ଚାମ୍ପିୟାନ୍ ଥିଲେ, ସେହିଭଳି ରେଭେନ୍‌ସା କଲେଜରେ ଫୁଟ୍‌ବଲ୍ ଖେଳି ଆଥ୍‌ଲେଟିକ୍ ଚାମ୍ପିୟାନ୍ ହୋଇଥିଲେ।

ଦୁର୍ଦ୍ଧର୍ଷ ସଂଗ୍ରାମୀ ବିଜୁ ପଟ୍ଟନାୟକଙ୍କର ଦୁଃସାହସିକ ସାଇକେଲ୍ ଯାତ୍ରା, ତାଙ୍କର ଆତ୍ମବିଶ୍ୱାସ ଓ ଗଭୀର ନେତୃତ୍ୱର ପରିଚାୟକ। କଲେଜରେ ଅଧ୍ୟୟନ ସମୟରେ ସେ ଦୁଇ ବନ୍ଧୁଙ୍କ ସହ ସୁଦୂର ପେଶାୱାର୍‌କୁ ସାଇକେଲ୍‌ରେ ଯାତ୍ରା କରିଥିଲେ।

ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଅନୁରୋଧକ୍ରମେ ସେତେବେଳେ ଡଚ୍‌ମାନଙ୍କର ଦ୍ୱାରା କବଳିତ ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣୋ ଓ ସହଯୋଗୀ ସୁତନ ସାହାରିୟରଙ୍କୁ ଭାରତରେ ଆଣି ପହଞ୍ଚାଇ ପାରିଥିଲେ। ଦୁଃସାହସିକ ବୈମାନିକ ସ୍ୱର୍ଗତ ବିଜୁ ପଟ୍ଟନାୟକ ଗୋଟିଏ ଡାକୋଟା ବିମାନରେ ଜାଭାକୁ ଉଡିଯାଇ ସିଙ୍ଗାପୁର ଦେଇ ସେମାନଙ୍କୁ ଭାରତରେ ପହଞ୍ଚାଇ ଅପୂର୍ବ ସାହସିକତାର ପରିଚୟ ପ୍ରଦାନ କରିଥିଲେ। ତେଣୁ ଇଣ୍ଡୋନେସିଆର ସ୍ୱାଧୀନତା ପରେ ଏହି ଦେଶର ସର୍ବୋଚ୍ଚ ବେସାମରିକ ସମ୍ମାନ 'ଭୂମିପୁତ୍ର' ଉପାଧିରେ ବିଜୁ ପଟ୍ଟନାୟକ ବିଭୂଷିତ ହୋଇଥିଲେ।

ଓଡ଼ିଶାର ରାଜନୀତିର ପ୍ରତ୍ୟେକ କ୍ଷେତ୍ରରେ ବିଜୁବାବୁଙ୍କର ନେତୃତ୍ୱର, ତାଙ୍କର ଜନପ୍ରିୟତାର, ତାଙ୍କର ଅଭିନବ ବକ୍ତବ୍ୟ ଶୈଳୀର, ତାଙ୍କର ନିର୍ଭୀକତା ଓ ଆନ୍ତରିକ ନିଷ୍ଠାର, ଓଡ଼ିଶା ପାଇଁ ତାଙ୍କର ପ୍ରାଣର ଅନୁସ୍ପନ୍ଦନର ଦଳିତମାନଙ୍କ ପାଇଁ ଓ ସେମାନଙ୍କର ଉତ୍‌ଥାନ ପାଇଁ ବିଜୁ ବାବୁଙ୍କର ବ୍ୟାକୁଳ ପ୍ରାଣର ଅର୍ନ୍ତଃଧ୍ୱନି ଓଡ଼ିଶାକୁ ଏକ ସୁସମୃଦ୍ଧ ଓ ଓଡ଼ିଆଙ୍କୁ ଏକ ସୁସଂସ୍କୃତ ଜାତିରେ ପରିଣତ କରିବାର ସ୍ୱପ୍ନ ନେଇ ବିଜୁ ପଟ୍ଟନାୟକ ଏକ ଯଥାର୍ଥ ରାଷ୍ଟ୍ରନୀତିଜ୍ଞ ଓ ବିରଳ ନେତୃତ୍ୱର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଚିରକାଳ ଅନୁସରଣୀୟ ଓ ଅଭିବନ୍ଦନୀୟ।

ମୋର ପରମ ଓ ଚରମ ସୌଭାଗ୍ୟର ବିଷୟ ଏହି ମହାନ୍ ବ୍ୟକ୍ତିତ୍ୱ ତ୍ୟାଗ, ତିତିକ୍ଷା, ଦକ୍ଷତା ଓ ଆତ୍ମବିଶ୍ୱାସର ଏହି ଅଭିନନ୍ଦନୀୟ ନେତୃତ୍ୱ ନିର୍ଭୀକତା ଓ ସ୍ୱାଧୀନଚେତା ତଥା ଜାତିପ୍ରୀତିର ଏହି ଅନନ୍ୟ ଦିବ୍ୟାତ୍ମା ରାଜନୀତି ଓ ନେତୃତ୍ୱର ଏହି ଅବିସମ୍ବାଦିତ ବିସ୍ମୟ ଚେତନା ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ସହିତ ମୋର ବ୍ୟକ୍ତିଗତ ସାନ୍ନିଧ୍ୟ ଲାଭର ସୁଯୋଗ ମତେ ମିଳିଥିଲା ମୋର ଛାତ୍ରୀ ଜୀବନରେ, ମହାବିଦ୍ୟାଳୟ ସ୍ତରରେ, ପୁଣି ବୃତ୍ତିଗତ ଜୀବନରେ। କଟକର ଗଡ଼ଗଡ଼ିଆ ପଠା ଠାରେ ଚାଲିଥିବା ଏନ୍.ଏସ୍.ଏସ୍. କ୍ୟାମ୍ପରେ ସ୍ୱର୍ଗତ ପଟ୍ଟନାୟକ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ। ସେଠାରେ ଏହି କ୍ୟାମ୍ପର ଜଣେ ଲିଡର୍ ଭାବରେ ଅନ୍ୟ କିଛି ଛାତ୍ରଛାତ୍ରୀଙ୍କ ସହ ମୁଁ ଅତିଥି ଚର୍ଚ୍ଚା ସମୟରେ ବିଜୁ ବାବୁଙ୍କଠାରୁ କେତେକ ସକରାତ୍ମକ ଉପଦେଶ ଓ ପ୍ରେରଣାର ବାଣୀ ଶୁଣି ଉଦ୍‌ବୁଦ୍ଧ ହୋଇଥିଲି। ବିଶେଷ କରି 'ମା ଭୈଃ।' – ଭୟ କର ନାହିଁ। 'ଚରୈବତି, ଚରୈବତି' – ଆଗେଇ ଚାଲ – ବିଜୁବାବୁଙ୍କର ବ୍ୟକ୍ତିତ୍ୱର ଏହି ଅନୁପ୍ରେରଣା ଏବେ ମଧ୍ୟ ମୋ କର୍ଣ୍ଣରେ ନିନାଦିତ।

ପରେ ସ୍ୱର୍ଗତ ବିଜୁବାବୁଙ୍କର ଜନ୍ମବାର୍ଷିକୀ ପାଳନ ଅବସରରେ 'ସ୍ମୃତି କମିଟି' ପକ୍ଷରୁ ଆୟୋଜିତ ବକ୍ତୃତା ଓ ପ୍ରବନ୍ଧ ପ୍ରତିଯୋଗିତାରେ ରାଜ୍ୟ ସ୍ତରରେ ପ୍ରଥମ ପୁରସ୍କାର ପାଇବା ଅବସରରେ ମୁଁ ତାଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ସଂପର୍କରେ ଅବଗତ ହୋଇଥିଲି। ସେହି ବିସ୍ମୟ ପୁରୁଷ ବିଜୁବାବୁଙ୍କର ସକରାତ୍ମକ ଚିନ୍ତାଧାରା, ବୈପ୍ଳବିକ ପଦକ୍ଷେପ, ନିର୍ଭୀକ ଜାତିପ୍ରୀତି ଓ ବଳିଷ୍ଠ ଚେତନା, ପ୍ରଗତିଶୀଳ ମନୋବୃତ୍ତି, ସର୍ବଜନାଦୃତ ନିରହଙ୍କାର ଓ ଅପ୍ରତିହତ ନେତୃତ୍ୱ ମୋତେ ବିଶେଷ ପ୍ରଭାବିତ କରିଥିଲା।

ବୃତ୍ତିଗତ ଜୀବନରେ ମୁଁ ଓଡ଼ିଶା ପ୍ରଶାସନିକ ସେବା ସଂଘର ଜୟଦେବ ଭବନରେ, ଭୁବନେଶ୍ୱରଠାରେ ଅନୁଷ୍ଠିତ ଦ୍ୱିବାର୍ଷିକ ସାଧାରଣ ଅଧିବେଶନରେ, ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ସହିତ ବିଶେଷ ସଭାରେ ଭାଷଣ ଦେବାର ସୁଯୋଗ ଲାଭ କରିଥିଲି। ମୁଖ୍ୟ ଅତିଥି ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର ଉଦ୍‌ବୋଧନରେ ଭରି ରହିଥିଲା ଓଡ଼ିଶାର ପ୍ରଶାସକମାନଙ୍କ ପାଇଁ ପ୍ରେରଣା ଓ ଉତ୍ସାହର ଅଗ୍ନିମନ୍ତ୍ର। ଏହି ଦୀପ୍ତିମନ୍ତ ବଳିଷ୍ଠ ବ୍ୟକ୍ତିତ୍ୱ ବିଜୁବାବୁଙ୍କର ଭାଷଣର ସାରାଂଶକୁ, ସମସ୍ତଙ୍କ ନିକଟରେ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗତ ବିଜୁବାବୁଙ୍କ ସହ ଗୋଟିଏ ମଞ୍ଚରେ ବକ୍ତୃତା ପ୍ରଦାନ କରିଥିଲି। ମୋର ବକ୍ତବ୍ୟ ପରେ ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ ସେ କହିଥିଲେ – 'ଆରେ ୟେ ତ କ'ଣ ଟେଲିଭିଜନ୍‌ରେ କହିଲା

ଭଳି ଭାଷଣ ଦେଉଛନ୍ତି । ସେତେବେଳେ ମଞ୍ଚସ୍ଥ ଅନ୍ୟାନ୍ୟ ଅତିଥି ବୃନ୍ଦ ମଧ୍ୟ ଜଣାଇଥିଲେ 'ହଁ, ସାର୍, ଶୁଭଶ୍ରୀ ମଧ୍ୟ ଦୂରଦର୍ଶନର ସମ୍ବାଦ ପାଠିକା ଓ କଳାକାର।' ତା'ପରେ ଅତିଥିମାନଙ୍କ ସହ ଆଲୋଚନା ବେଳେ ସ୍ୱର୍ଗତ ବିଜୁବାବୁ ପଚାରିଥିଲେ ପ୍ରଶାସନ ସଂପର୍କିତ କେତେକ ପ୍ରଶ୍ନ, ଯାହାର ଉତ୍ତର ମୁଁ ମଧ୍ୟ ପ୍ରଦାନ କରିଥିଲି । ପରବର୍ତ୍ତୀ ସମୟରେ ସ୍ୱର୍ଗତ ମୁଖ୍ୟମନ୍ତ୍ରୀ ବିଜୁବାବୁ ଉକ୍ତ ସଭାରେ ଘୋଷଣା କରିଥିବା ସର୍ତ୍ତକୁ ମଧ୍ୟ ବାସ୍ତବରେ ରୂପାୟିତ କରିଥିଲେ ।

ଜଣେ ଦୂରଦ୍ରଷ୍ଟା ରାଷ୍ଟ୍ରନୀତିଜ୍ଞ ରୂପେ, ଜଣେ ସ୍ୱପ୍ନକୁ ସାକାର ରୂପ ଦେବାର ବଳିଷ୍ଠ ନେତୃତ୍ୱ ଭାବରେ, ଜଣେ ପ୍ରଗତିଶୀଳ ଚିନ୍ତାଧାରାର ଜନନାୟକ ଭାବରେ, ସ୍ୱର୍ଗତ ବିଜୁବାବୁ ସଦା ସ୍ମରଣୀୟ, ଅନୁକରଣୀୟ ଓ ଅଭିବନ୍ଦନୀୟ । ତାଙ୍କର ବଳିଷ୍ଠ ସାହସ, ଅଦମନୀୟ ନିଷ୍ଠା, ଅକୁଣ୍ଠ ପ୍ରେରଣା, ରାଜନୈତିକ ପର୍ଯ୍ୟାଲୋଚନାକାରୀ ଦୃଷ୍ଟିଭଙ୍ଗୀ, ତାଙ୍କୁ ଏକ ଐତିହାସିକ ସ୍ୱୀକୃତି ପ୍ରଦାନ କରିଛି । ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର କୃତି ଓ କୀର୍ତ୍ତି – ଓଡ଼ିଶାର ନବ ନିର୍ମାଣର ଜନଜାଗରଣର ଅଭିମନ୍ତ୍ର । ତାଙ୍କର ମହାନ୍ ଆତ୍ମା ନିକଟରେ ମୋର ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ।

---

ମାର୍ଫତ୍ – ଶୁଭେନ୍ଦୁ କୁମାର ନନ୍ଦ
ଏନ୍-୪/୩୪୯, ଆଇଆର୍‌ସି ଭିଲେଜ୍
ନୟାପଲ୍ଲୀ, ଭୁବନେଶ୍ୱର – ୭୫୧୦୧୫

# ପୁଣ୍ୟ ଏ ଉତ୍କଳ ଭୂଇଁ

**ସୁଦାମ ଚରଣ ଜେନା**

ଉତ୍କଳ ଜନନୀ ସେବା ସମର୍ପଣ
କୋଟି ଓଡ଼ିଆଙ୍କ ମନ
ଛତିଶ ମସିହା ଅପ୍ରେଲ ମାସଟି
ଅବିସ୍ମରଣୀୟ ଦିନ ।

କେତେ ମୁନିଋଷି ଜନମି ଏ ମାଟିରେ
ରଖିଗଲେ ଯଶ କୀର୍ତ୍ତିକୁ
ମହାନତା ଯା'ର ମହତ ପଣିଆ
ମନେରଖି କାଳକାଳକୁ ।
ଦରଦୀ ବନ୍ଧୁ ସେ ଉତ୍କଳର ମଣି
ଧନ୍ୟ ଥିଲେ ଦେଶ ସେବୀ
ଧନ୍ୟ ସେ ଯଶସ୍ୱୀ ଭଞ୍ଜ ନରପତି
ଉତ୍କଳର କର୍ମ ଯୋଗୀ ।

ସେନାପତି ପୁଅ ଫକୀର ମୋହନ
ଭାଷା ସାହିତ୍ୟ ଲେଖିଲେ
ପଠାଣି ସାମନ୍ତ କାଠି ଦୁଇଖଣ୍ଡେ
ଆକାଶକୁ ମାପିଦେଲେ ।

ଭାଷା ଏ ଜାତିର ପରିଚୟ ଅଟେ
ଦାମ୍ଭିକତା ଆମ ଟାଣ
ସ୍ୱରାଜ୍ୟ ପଥରେ ହଜିଯିବା ଆମେ
ଉତ୍କଳ ସନ୍ତାନ ଗଣ ।

ଏ ମାଟିର କଳା ସାହିତ୍ୟ ସଂସ୍କୃତି
ବିଶ୍ୱ ଦରବାରେ ଖ୍ୟାତି
କଳାରେ ମଣ୍ଡିତ ଓଡ଼ିଆ ଜାତି ସେ
କହିଅଛି ତା'ର କୀର୍ତ୍ତି ।

ଜାତୀୟ ପ୍ରେମରେ ହଜିଯିବା ଆମେ
ସ୍ୱାର୍ଥ ପଛକୁ ପକାଇ
ହୀନମନ୍ୟତାକୁ ଦୂରେଇ ଦେବାରେ
ପୁଣ୍ୟ ଏ ଉତ୍କଳ ଭୂଇଁ ।

---

ଉତ୍ତାରଣ, କସର୍ଦ୍ଦା, କଟକ

# ବିଜୁ ମାମୁଁଙ୍କ ସାଙ୍ଗେ କିଛି ଅନୁଭୂତି

**ଅଳକା ମହାପାତ୍ର**

ମୁଁ ତିତିଲି। ବିଜୁବାବୁଙ୍କ ବଡ ଭଉଣୀଙ୍କ ବୋହୂ। ମୁଁ ଖାରବେଳ ନଗରରେ ରହେ। ସେ ମୋର ମାମୁଁ ଶ୍ୱଶୁର। ବେଳେବେଳେ ମାମୁଁଙ୍କ ପାଖରୁ ଫୋନ୍ ଆସେ, 'ମୁଁ ବିଜୁମାମୁଁ କହୁଛି, ଆଜି କ'ଣ ରାନ୍ଧିଛୁ? ମୁଁ ଜାଣିବାରେ ତାଙ୍କ ଜୀବନର ବଡ ସଉକ ଥିଲା, ଭଲ ଜିନିଷ ଖାଇବା। ତାଙ୍କର ମା' ଆଶାଲତା । ବିଭିନ୍ନ ପ୍ରକାରର ମାଛ ତରକାରୀ ରାନ୍ଧିବାରେ ସେ ଧୂରନ୍ଧର ଥିଲେ। ମାମୁଁ ପଚାରନ୍ତି, ଆଜିକାଲି କ'ଣ ଚିଲ୍ଲଳ ମାଛ ମିଳୁନାହିଁ? ମୋ ଉତ୍ତରକୁ ଅପେକ୍ଷା ନ କରି ସେ ତାଙ୍କ ମା'ଙ୍କର ବିଭିନ୍ନ ପ୍ରକାର ମାଛ ରନ୍ଧା ପ୍ରଣାଳୀ ବର୍ଣ୍ଣନା କରି କହନ୍ତି। ଦିନେ ମୁଁ ତାଙ୍କୁ ଫୋନ୍ କରି କହିଲି, ବୁଲୁ (ମୋ ସ୍ୱାମୀ ଓ ତାଙ୍କର ପ୍ରିୟ ଭଣଜା) ପାଞ୍ଚ କିଲୋ ଓଜନର ଗୋଟିଏ ଚିତ୍ତଳ ମାଛ କଟାକଟି କରି ଆଣିଛନ୍ତି। ସେ ଶୁଣି ଖୁବ୍ ଖୁସି ହୋଇ କହିଲେ ତୁ କ'ଣ ମୋ ମାଆ ପରି ରାନ୍ଧି ପାରିବୁ? ମୁଁ କହିଲି, ଆପଣଙ୍କ ଭଉଣୀ ସେ ସବୁଥିରେ ଆପଣଙ୍କ ମାଆଙ୍କଠାରୁ କିଛି କମ୍ ନୁହନ୍ତି। ମୁଁ ତାଙ୍କ (ମୋ ଶାଶୁ) ଠାରୁ ସବୁ ବିଦ୍ୟା ହାସଲ କରିଛି। ଆପଣ ଦେଖନ୍ତୁ, ମୁଁ କ'ଣ କରୁଛି? ମାଛର ପେଟି କିପରି ଝାଳ ହେବ। ପିଠିକୁ କିପରି ରନ୍ଧାଯିବ, ଏ ବିଷୟରେ ପ୍ରାୟ ୧୦ ମିନିଟ୍ ଭାଷଣ ଦେଇ ସେ ଫୋନ୍ ରଖିଲେ। ପ୍ରାୟ ୧୧ଟାବେଳେ ତାଙ୍କ ଡ୍ରାଇଭର ଗାଡି ନେଇ ଆସିଲା ମାଛ ତରକାରୀ ନେବାକୁ। ମାମୁଁ ଫୋନ୍ କଲେ, ରନ୍ଧା ସରିଲାଣି? ମୁଁ କହିଲି ଆଉ ଦୁଇଘଣ୍ଟା ଲାଗିବ। ଡ୍ରାଇଭର ଅପେକ୍ଷା କଲା। ତା'ପରେ ପେଟି, ପିଠି ସବୁ ତାଙ୍କ ବରାଦ ମୁତାବକ ରନ୍ଧା ହୋଇଗଲା। ଆମ ଘରୁ ବାହାରିବା ପରେ ଡ୍ରାଇଭର ତାଙ୍କୁ ଫୋନ୍ କଲେ। ତା'ପରେ ଅଫିସ୍ ଛାଡି ମାମୁଁ ଘରକୁ ଗଲେ। ପ୍ରାୟ ଏକ କିଲୋଗ୍ରାମର ରନ୍ଧାମାଛ ଥିଲା। ସେ ତାହାକୁ ପୂରା ଖାଇ ଅଫିସ୍ ନ ଯାଇ ଶାନ୍ତିରେ ଶୋଇ ପଡିଲେ। ୫ଟା



ବେଳକୁ ଉଠି ମୋତେ ଫୋନ୍ କରି କହିଲେ, ତୁ ତ ବଢ଼ିଆ ରାନ୍ଧିଛୁ। ତୋ ହାତରନ୍ଧା ତରକାରୀରେ ମୁଁ ମୋ ମାଆ ହାତ ରନ୍ଧାର ସ୍ୱାଦ ପୂରାପୂରି ପାଇ ପାରିଛି।

ତା'ପରେ ମୋର କାମ ବଢ଼ିଗଲା। କିଛି ଦିନ ପରେ ଇଲିସି ମାଛ ପେଟିଟିଏ ଆଣି ତାଙ୍କ ଡ୍ରାଇଭର ଆସିଲା। ମାମୁଁ ଫୋନ୍ କରି କହିଲେ, ଜ୍ୟୋତି ବସୁକୁ କହିଥିଲି, ତୁ କ'ଣ ଏକା ପଦ୍ମାନଦୀର ଇଲିସି ମାଛ ଖାଇବୁ? ବିଜୁ ଦାଦାର କଥା ମନେ ପଡୁନି? ଏହାପରେ ସେ ଏ ମାଛ ପଠେଇଛି। ସେହି ମାଛରେ କି କି ପ୍ରକାରର ରନ୍ଧା ଯାଇ ପାରିବ ସେ ବିଷୟରେ ସେ ଦଶ ମିନିଟ୍ ଉପଦେଶ ଦେଲେ। ତା'ପରଦିନ ମୋ ଝିଅ ସ୍କୁଟିରେ କଞ୍ଚା ଇଲିସି ମାଛର ଝୋଳ ନେଇ ତାଙ୍କ ମଧ୍ୟାହ୍ନ

ଭୋଜନ ସମୟରେ ପହଞ୍ଚିଲା। ସେ ବହୁତ ଖୁସିରେ ଖାଇଲେ। ଝିଅକୁ କହିଲେ ତୋ' ମାଆକୁ କହିବୁ, ମାଛ ଥିବା ପର୍ଯ୍ୟନ୍ତ ମୋ ମାଆର ରାନ୍ଧିବା ପ୍ରଣାଳୀରେ ରାନ୍ଧି ମୋ ପାଖକୁ ପଠାଇବ। ଏ ମାଛ ସରିଗଲେ ଆଉ ମଗାଇବା।

ମାର୍ଚ୍ଚ ମାସ ପାଞ୍ଚ ତାରିଖ ତାଙ୍କ ଜନ୍ମ ଦିନରେ ମୁଁ ମୋ ସ୍ୱାମୀ ଓ ପିଲାମାନଙ୍କ ସହିତ ତାଙ୍କ ଘରକୁ ଯାଇଥିଲି। ସେ ଉପର ଘର ବାରଣ୍ଡାରେ ବସିଥିଲେ। ମୋ ସ୍ୱାମୀ ଫୁଲ ତୋଡାଟିଏ ଦେଇ କହିଲେ, ବଜାରରେ ଫୁଲ ନାହିଁ, ତେଣୁ ତଳେ ଯେଉଁ ଫୁଲ ଗଦା ହୋଇପଡିଛି ସେଥିରୁ ଗୋଟିଏ ଉଠାଇ ଆଣିଲି। ସାଙ୍ଗେ ସାଙ୍ଗେ ମାମୁଁ କହିଲେ good management ମୁଁ କିଛି ବଡ ଚିଙ୍ଗୁଡି ରାନ୍ଧିକରି ନେଇଥିଲି। ସେ ଦେଖି କହିଲେ, ଏଇଟା ମୋ ଜନ୍ମଦିନର ସବୁଠୁ ଭଲ ଉପହାର। ମୋ ଝିଅର ଜନ୍ମଦିନ ମାର୍ଚ୍ଚ ନଅ ତାରିଖରେ ଥିଲା। ଝିଅର ସାଙ୍ଗ ଓ ଆମର କିଛି ଘନିଷ୍ଠ ବନ୍ଧୁ ଓ ସମ୍ପର୍କୀୟଙ୍କୁ ନେଇ ଏକ ଛୋଟ ଭୋଜିର ଆୟୋଜନ ଥିଲା। ମାମୁଁ ଶୁଣି କହିଲେ, ମୁଁ ନିଶ୍ଚୟ ଯିବି। ନଅ ତାରିଖ ସକାଳେ ତାଙ୍କ ଡ୍ରାଇଭର ଗୋଟିଏ ବଡ ଚିଙ୍ଗୁଡି ମାଛର ପେଟି ଆଣି କହିଲା, ସାର୍ ଏହାକୁ ସୋନପୁରରୁ ମଗାଇଛନ୍ତି ଓ ଝିଅର ଜନ୍ମଦିନ ପାଇଁ ପଠାଇଛନ୍ତି। ସଂଧ୍ୟାବେଳକୁ ମାମୁଁ ଆସିଲେ। ଆସୁ ଆସୁ ପଚାରିଲେ, ଚିଙ୍ଗୁଡି ରନ୍ଧା ସରିଲାଣି ? ବାହାରେ ଚୌକି ସବୁ ପଡିଥାଏ। ହଠାତ୍ ବିଦ୍ୟୁତ ଚାଲିଗଲା। ମାମୁଁ କହିଲେ, ବାହାରେ ବଢ଼ିଆ ଜହ୍ନ ଆଲୁଅ ପଡିଛି। ଜହ୍ନ ଆଲୁଅରେ ବସି ଚିଙ୍ଗୁଡି ତରକାରୀ ଖାଇବାର ମଜା ଅଲଗା ପ୍ରକାରର। ତିନିଥର ଚିଙ୍ଗୁଡି ଖାଇବା ପରେ କହିଲେ, ମୋର ଖାଇବା ସରିଗଲା। ମୁଁ ଏଥର ଯାଉଛି। ସେ ଯିବାବେଳକୁ ମୁଁ ଗେଟ୍ ପାଖରେ କହିଲି, ବଢ଼ିଆ ଖିରୀ ହୋଇଥିଲା। ସେ ମୋ ଆଡକୁ ଟିକିଏ ଚାହିଁଲେ ଓ ଫେରିକରି ଆସି ଖିରୀ ଖାଇଲେ।

କିଛିଦିନ ପରେ ମାଆଙ୍କୁ (ତାଙ୍କ ବଡଭଉଣୀ) ଦେଖିବାକୁ ଆସିଲେ। ମାଆ ରାନ୍ଧୁଥିଲେ। ରୋଷେଇ ଘରେ ମାମୁଁ ମାଆଙ୍କ ସହିତ ଗପୁଥାନ୍ତି ଓ ମାମୁଁ ତାଙ୍କ ଆଦେଶ ପାଳନ କରୁଥାନ୍ତି। କିଛି ସମୟ ପରେ ମାଆ ତାଙ୍କୁ କହିଲେ, ତରକାରୀଟା ଘାଣ୍ଟୁଥା ମୁଁ ଟିକିଏ ଆସୁଛି। ମୁଁ ତାଙ୍କ ପଛରେ ଠିଆ ହୋଇଥିଲି। ତାଙ୍କ ହାତରୁ ଚଟୁ ନେଇଗଲି। ମୋତେ ମାମୁଁ କହିଲେ, ଇଏ ମୋ ବାପାଙ୍କର ଗେହ୍ଲାଝିଅ । ସବୁବେଳେ ମୋତେ କହିବ ଘର ଝାଡୁ ମାର। ତା'ପରେ ମାଆ ଆସି କହିଲେ, ସେ ମୋ ନାଁରେ କ'ଣ କହୁଛି ? ମୁଁ ତା' କଥା କହୁଛି ଶୁଣ। ମୁଁ ଯେତେବେଳେ ବି.ଏ.ପାଶ୍ କଲି ମୋ ବାପା ମୋତେ ଟଙ୍କାଟିଏ ଦେଇଥିଲେ । ସଂଧ୍ୟାରେ ବିଜୁ ରସଗୋଲା ହାଣ୍ଡି ଧରି ଆସି କହିଲା, ମୋ ଭଉଣୀ ବି.ଏ. ପାଶ୍ କରିଛି ତ' ସେଥିପାଇଁ ଆଣିଛି। ସେ ପଇସା କେଉଁଠୁ ପାଇଲା ଭାବି ମୋର ସନ୍ଦେହ ହେଲା। ଖୋଜିଲାବେଳକୁ ମୋ ଟଙ୍କା ନାହିଁ। ଏବେ ମୁଖ୍ୟମନ୍ତ୍ରୀ ହୋଇ ବଡ ବଡ କଥା କହୁଛି।

ଏହାର କିଛି ମାସ ପରେ ମୋ ଶାଶୁଙ୍କର ଦେହାନ୍ତ ହେଲା। ସେତେବେଳକୁ ରାତି ତିନିଟା। ନିଜ ଲୋକମାନଙ୍କ ପାଖକୁ ଫୋନ୍ କରାହେଲା। ରାତି ଚାରିଟାରେ ମାମୁଁ ଆସି ପହଞ୍ଚିଲେ। ମୋ ସ୍ୱାମୀଙ୍କୁ କହିଲେ, ମୋର ଦୁଇ ଭାଇ ଆଉ ନାହାନ୍ତି। ଏଇ ଭଉଣୀଟି ଆଜି ଚାଲିଗଲା। ଏବେ ମୁଁ ଏକା ରହିଲି। ତୁ ସବୁ ଯୋଗାଡ କର। ଯେତେବେଳେ ଶ୍ମଶାନକୁ ଯିବ ମୋତେ ଫୋନ୍ କରିବୁ। ତା ମଧରେ ମୁଁ କିଛି ଜରୁରୀ କାମ ଶେଷ କରିଦେବି।

ଏହାର କିଛି ବର୍ଷ ପରେ ୧୯୯୬ ମସିହାବେଳକୁ ତାଙ୍କ ଦେହ ବହୁତ ଖରାପ ହେଲା। ମୋତେ କେବେ ପାଳୁଅ ତ' କେବେ ସାଗୁ ଖିରୀ କରି ପଠାଇବାକୁ ଆଦେଶ ହୁଏ। ଆମ ଫ୍ୟାକ୍ଟ୍ରିରୁ ନିୟମିତ ଭାବରେ ତାଙ୍କ ପାଇଁ ଅକ୍ସିଜେନ୍ ଯାଏ । କାରଣ ଫୁସ୍‌ଫୁସ୍ ସଂକ୍ରମଣ ଯୋଗୁଁ ତାଙ୍କୁ ନିଃଶ୍ୱାସ ନେବାରେ କଷ୍ଟ ହେଉଥିଲା। ଆମେ ବେଳେ ବେଳେ ତାଙ୍କ ପାଖକୁ ଯାଇ ଗପ କରୁ। ଦିନେ ମୁଁ ତାଙ୍କୁ କହିଲି ଆପଣଙ୍କ ପାଖରେ ଭଲ ଡାକ୍ତର, ବହୁସଂଖ୍ୟକ ସହକର୍ମୀ, ଚାରିଆଡେ ଶହ ଶହ ଲୋକ, ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ? ସେ କହିଲେ, ଅଛନ୍ତି ତ ଅନେକ, କିନ୍ତୁ ମୋ ନିଜର କିଏ ?

୧୯୯୭ ମସିହା ଫେବୃଆରୀ ମାସରେ ମୁଁ ତାଙ୍କୁ ଦେଖା କରିବାକୁ ଯାଇଥିଲି। ସେତେବେଳକୁ ତାଙ୍କ ଦେହ ବହୁତ ଖରାପ। ସେ ଖଟରେ ବିଶ୍ରାମ କରୁଥିଲେ। ମୁଁ ତାଙ୍କ ପାଖରେ ବସିଲି। ସେ ମତେ କହିଲେ, ମୁଁ ଅଳ୍ପଦିନ ଭିତରେ ଚିକିତ୍ସା ପାଇଁ ଦିଲ୍ଲୀ ଯିବି। ମୁଁ କହିଲି, ଆପଣ ଖୁବ୍ ଶୀଘ୍ର ଭଲ ହୋଇ ଫେରିବେ। ସେ କହିଲେ, ଖାଲି ଫେରିବି ନୁହେଁ, ତୋ ହାତ ରନ୍ଧା ଚିତଳ ମାଛ ତରକାରୀ ମଧ ଖାଇବି। ମୁଁ ଫେରି ଆସିଲି। ଏହାହିଁ ଥିଲା ତାଙ୍କ ସହିତ ମୋର ଶେଷ ଦେଖା।

◆◆◆

ଆଜି ମାମୁଁ ନାହାନ୍ତି। କିନ୍ତୁ ଏବେ ବି ମାଛ ରାନ୍ଧିବା ସମୟରେ ତାଙ୍କ କଥା ମନେପଡେ। ତାଙ୍କ ସ୍ନେହବୋଳା କଥା ସବୁଦିନ ପାଇଁ ଅଭୁଲା ସ୍ମୃତି ହୋଇ ରହିଥିବ। ତାଙ୍କୁ ଯିଏ ଯେଉଁ ରୂପରେ ଜାଣିଲେ ମଧ୍ୟ ଆମ ପରିବାରର ସେ ଜଣେ ସ୍ନେହଶୀଳ ମୁରବି। ତାଙ୍କ ସ୍ଥାନ ସର୍ବଦା ଅପୂରଣୀୟ। ତାଙ୍କ ସହିତ ବିତାଇଥିବା ଅନେକ ଘଟଣାର କିଛି ଅଂଶ ଆଜି ସ୍ୱତଃପ୍ରବୃତ୍ତ ଭାବରେ ଲେଖୁଛି। ଏହାହିଁ ତାଙ୍କର ଜନ୍ମ ଶତବାର୍ଷିକୀ ବର୍ଷ ଉପଲକ୍ଷେ ମୋର ଶ୍ରଦ୍ଧାଞ୍ଜଳି।

(ଏହା ଲେଖିକାଙ୍କ ନିଜସ୍ୱ ମତ)

୨୩୯, ଖାରବେଳ ନଗର, ଭୁବନେଶ୍ୱର

# ମୋ ପାଇଁ ମୋ ଭାଷା ମହାନ୍

**ବିମଳା ସିଂହ**

ଓଡ଼ିଶା ମାଟିର ସନ୍ତାନ ମୁଁ ଯେ
ଓଡ଼ିଶା ମାଟିର ସନ୍ତାନ
ମହୋଦଧି କୂଳେ ବିଜେ ଯା'ର ପ୍ରଭୁ
ଅଟନ୍ତି ପତିତ ପାବନ ।
ଗୋପବନ୍ଧୁ ମଧୁସୂଦନ ଯାହାର
କୋଳରେ ଜନମ ନେଇ
ଫକୀରମୋହନ ସଙ୍ଗରେ ମିଶିଣ
ଓଡ଼ିଆ ଭାଷାର ପାଇଁ
ରାମଚନ୍ଦ୍ର ଆଉ ସୁଢଳଦେବ ଯେ
ରଖିଲେ ଯା' ସ୍ୱାଭିମାନ ।
ଗଙ୍ଗାଧର ସଙ୍ଗେ ରାଧାନାଥ ଆଉ
ଏ ମାଟିର ଜୟଦେବ
ଉପଇନ୍ଦ୍ର ଭଞ୍ଜ ଓ ସାରଳା ଦାସ
କବିସୂର୍ଯ୍ୟ ବଳଦେବ
ତୋଷାମଦିଆଙ୍କ ଭାଙ୍ଗିଦେଇ ବଳ
ଥାପିଲେ କୀରତି ମାନ ।
ଅନନ୍ତ ଅଚ୍ୟୁତ ଯଶୋବନ୍ତ ଆଉ
ବଳରାମ ଜଗନ୍ନାଥ
ଭାଷା ସାହିତ୍ୟର ରସେ ପରିପୂର୍ଣ୍ଣ
ସୁବର୍ଣ୍ଣର ସେତୁ ସେତ
କୋଟି ଓଡ଼ିଆଙ୍କ ମଉଡ଼ମଣି ଯେ
ଏ ଜାତିର ସ୍ୱାଭିମାନ ।
ରବିନ୍ଦ୍ରନାଥଙ୍କ 'ସ୍ମରଣ' ସରି ଯେ
ଭଞ୍ଜଙ୍କ 'ନିର୍ମଳ ଚନ୍ଦ୍ର ମଣ୍ଡଳ'
ଗଳ୍ପ ଉପନ୍ୟାସ କବିତା ପ୍ରବନ୍ଧ
ବଢ଼ାଇ ଓଡ଼ିଆ ବଳ
ଶାସ୍ତ୍ରୀୟ ମାନ୍ୟତା ଦାବୀ ହାତେଇଲୁ
ଓଡ଼ିଆ ମହତ୍ ଜାଣ ।
ଆସ ମୋ ଭାଇ ଭଉଣୀ ଆସ
ଭାଷାର ମମତା ନେଇ
ରାଜଭାଷା ଦାବୀ ପୂରଣ କରିବା
ଏକତାର ମନ୍ତ୍ର ଗାଇ
କୋଟି କୋଟି କଣ୍ଠ ଝରୁ ଏକ କଣ୍ଠ
ମୋ ପାଇଁ ମୋ ଭାଷା ମହାନ୍ ।

ପ୍ଲଟ ନଂ- ୧୮୬୮, ଭକ୍ତମଧୁ ନଗର
ଗଣ୍ଡମୁଣ୍ଡା, ଖଣ୍ଡଗିରି, ଭୁବନେଶ୍ୱର- ୩୦

# ଭାରତରତ୍ନ ବାବାସାହେବ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର

ସ୍ୱାଧୀନୋତ୍ତର କାଳରେ ଯେଉଁ କେତେଜଣ ମନିଷୀ ନିଜର ସାଧନା, ନିଷ୍ଠା, ଅଧ୍ୟବସାୟ ଓ ଆଦର୍ଶ ବଳରେ ସାଂପ୍ରତିକ ସମାଜ ତଥା ରାଜନୈତିକ ଜୀବନକୁ ଗଭୀର ଭାବେ ପ୍ରଭାବିତ କରିଛନ୍ତି, ସେମାନଙ୍କ ମଧ୍ୟରେ ଭାରତରତ୍ନ ବାବା ସାହେବ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର ଥିଲେ ଅନ୍ୟତମ । ସେ ଦଳିତ, ନିଷ୍ପେସିତ ଜାତିର ଯୋଗ୍ୟ ପ୍ରତିନିଧି ଭାବେ ସୁପରିଚିତ । ଡକ୍ଟର ଆମ୍ବେଦକର ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର ଆମ୍ବାଦାବେ ଗ୍ରାମରେ ୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖରେ ଏକ ଦରିଦ୍ର ମାହାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ରାମଜୀ ସକ୍‌ପାଲ୍ ଓ ମାତାଙ୍କ ନାମ ଥିଲା ଭୀମାବାଈ । ସେ ଥିଲେ ପିତାମାତାଙ୍କର ଚତୁର୍ଦ୍ଦଶ ଓ ସର୍ବକନିଷ୍ଠ ସନ୍ତାନ । ତାଙ୍କୁ ୨ ବର୍ଷ ବୟସ ହେଲା ବେଳକୁ ତାଙ୍କ ପିତା ସକ୍‌ପାଲ ସୁବେଦାର ଚାକିରିରୁ ଅବସର ନେଇଥିଲେ ଏବଂ ତାଙ୍କୁ ୫ ବର୍ଷ ବୟସ ସମୟରେ ତାଙ୍କ ମାତାଙ୍କ ଦେହାନ୍ତ ହୋଇଥିଲା । ତେଣୁ ତାଙ୍କ ଲାଳନପାଳନ ଭାର ତାଙ୍କ ପିଉସୀ ମିରାବାଈଙ୍କ ଉପରେ ପଡ଼ିଥିଲା । ସେ ତାଙ୍କ ପିତାଙ୍କ ନିକଟରେ ପ୍ରାଥମିକ ଶିକ୍ଷା ଶେଷ କରି ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ ।



ସେ ଥିଲେ ଜଣେ ମେଧାବୀ ଛାତ୍ର । ସେତେବେଳେ ସମାଜରେ ଉଚ୍ଚନୀଚ ଭେଦଭାବ ତଥା ଅସ୍ପୃଶ୍ୟତା ଉତ୍କଟ ରୂପ ଧାରଣ କରିଥିଲା । ଲୋକେ ହରିଜନ ଓ ଆଦିବାସୀଙ୍କୁ ସ୍ପର୍ଶ କରୁନଥିଲେ । ଏପରିକି ସେମାନଙ୍କ ଛାଇ ମଧ୍ୟ ମାଡୁ ନଥିଲେ, ଶଗଡ଼ ଗାଡ଼ିରେ ଯିବା ପାଇଁ ସେମାନଙ୍କୁ ମନା ଥିଲା । ସର୍ବସାଧାରଣ କୂଅ ପୋଖରୀରୁ ସେମାନଙ୍କୁ ପାଣି ମିଳୁ ନଥିଲା, ଏପରିକି ଚାଟଶାଳୀରେ ସହପାଠୀମାନଙ୍କଠାରୁ ଦୂରରେ ଏକକୋଣରେ ବସିବାକୁ ପଡୁଥିଲା, ବିଦ୍ୟାଳୟରେ ଥିବା ପାଣିମାଠିଆରୁ ତାଙ୍କୁ ପାଣି ପିଇବାକୁ ଦିଆଯାଉନଥିଲା । ଅଥଚ ପିଅନ ଉପରୁ ପାଣି ଢାଳିଲେ ସେ ଦୁଇହାତ ଆଞ୍ଜୁଳା କରି ପାଣି ପିଉଥିଲେ । ଆମ୍ବେଦକର ସ୍କୁଲରୁ ତାଙ୍କ ପିତାରାଷ୍ଟିତ ବାସଭବନକୁ ଫେରୁଥିବା ସମୟରେ ବାଟରେ ପଡୁଥିବା ଗୋଟିଏ କୂଅରୁ ପାଣି କାଢ଼ି ପିଇଥିଲେ ବୋଲି ତାଙ୍କୁ କୁଭାଷାରେ ଗାଳିଗୁଲଜ ଶୁଣିବା ସହିତ ମାଡ଼ ମଧ୍ୟ ଖାଇବାକୁ ପଡ଼ିଥିଲା । ବାରିକମାନେ ମଧ୍ୟ ତାଙ୍କୁ ଖିଅର କରୁନଥିଲେ । ସେ ଭଲ ଭାବରେ ଜାଣିଥିଲେ ଯେ ସେ କୌଣସି ପାପ ବା ଅନ୍ୟାୟର ବଶବର୍ତ୍ତୀ ହୋଇନାହାନ୍ତି । ତାଙ୍କର ଏକମାତ୍ର ଦୋଷ ହେଲା ସେ ମାହାର ଜାତିରେ ଜନ୍ମ ଗ୍ରହଣ କରିଛନ୍ତି ।

ଜ୍ଞାନ ସଂଗ୍ରହ କରିବା ତାଙ୍କର ଏକମାତ୍ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା । ଦୁଃଖ, ଆର୍ଥିକ ଅନଟନ ଓ ସାମାଜିକ ଲାଞ୍ଛନା ଆଦି ବିଭିନ୍ନ ଅସୁବିଧା ସତ୍ତ୍ୱେ ତାଙ୍କ ପାଠପଢ଼ାରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହୋଇନଥିଲା । ସେ ୧୯୦୮ ମସିହାରେ ଏଲ୍‌ଫିନ୍‌ଷ୍ଟୋନ ହାଇସ୍କୁଲରୁ ମାଟ୍ରିକ୍ ପାଶ୍ କଲେ । ସେ ମାଟ୍ରିକ୍ ପାଶ୍ କରିବା ପରେ ବିବାହ କରିଥିଲେ । ଏହି ବିବାହ ବମ୍ବେର ବାଇକୁଲା ବଜାରଠାରେ ଗୋଟିଏ ଦୋକାନ ପିଣ୍ଡି ଉପରେ ବିନା ବାଜା, ବାଣ, ରୋଷଣୀରେ ନିରାଡମ୍ବର ସହକାରେ ଅନୁଷ୍ଠିତ ହୋଇଥିଲା । ଜୀବନସାରା ଆମ୍ବେଦକରଙ୍କୁ ସଂଗ୍ରାମ କରିବା ପାଇଁ ପ୍ରେରଣା ଓ ଉତ୍ସାହ ଯୋଗାଇ ଦେବା ସହିତ ପରିବାରର ସମସ୍ତ ଦାୟିତ୍ୱ ବହନ କରିଥିବା ଏହି ମହିୟସୀ ମହିଳାଙ୍କ ମୃତ୍ୟୁ ପରେ ସେ ସାରଦା କବିରଙ୍କୁ ଦ୍ୱିତୀୟ ପତ୍ନୀ ରୂପେ ଗ୍ରହଣ କରିଥିଲେ । ଅସ୍ପୃଶ୍ୟ ମାହାର ଜାତିର ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ସେ ଥିଲେ ପ୍ରଥମ ମାଟ୍ରିକ୍ୟୁଲେଟ୍ । ୧୯୧୨ ମସିହାରେ ସେ ବି.ଏ. ଡିଗ୍ରୀ ହାସଲ କଲେ । ୧୯୧୩ ମସିହାରେ ତାଙ୍କ ପିତାଙ୍କ ଦେହାନ୍ତ ହୋଇଥିଲା । ବରୋଦା ମହାରାଜା ସୟାଜୀରାଓ ଗାଏକ୍‌ୱାର୍ଡ଼ଙ୍କ ସାହାଯ୍ୟ ସହାନୁଭୂତି ତାଙ୍କ ପ୍ରତି ଏକ ଆଶୀର୍ବାଦ ସ୍ୱରୂପ ଥିଲା । ଏହି ସମୟରେ ମହାରାଜା କେତେକ ମେଧାବୀ ଛାତ୍ରମାନଙ୍କୁ ଏକ ସର୍ତ୍ତ ରଖି ଉଚ୍ଚଶିକ୍ଷା ନିମନ୍ତେ ବିଦେଶ ପଠାଉଥାନ୍ତି । ସର୍ତ୍ତ ଏହି ଯେ ଉଚ୍ଚଶିକ୍ଷା ପରେ ବିଲାତରୁ ଫେରି ବରୋଦା ରାଜ୍ୟର ଦେଓ୍ୱାନୀରେ କାର୍ଯ୍ୟ କରିବେ । ପୃଥିବୀ ପ୍ରସିଦ୍ଧ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ୧୯୧୬ ମସିହାରେ ଅର୍ଥନୀତିରେ ପି.ଏଚ୍.ଡି. ଡିଗ୍ରୀ ହାସଲ କରିବା ପାଇଁ ଯୋଗ୍ୟ ବିବେଚିତ ହେଲେ । ସର୍ତ୍ତ ମୁତାବକ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରି ଆମ୍ବେଦକର ମହାରାଜା ଗାଏକୱାର୍ଡ଼ଙ୍କ ଦେଓ୍ୱାନୀରେ ବରୋଦା ରାଜ୍ୟର ସାମରିକ ସଚିବ ଭାବେ ନିଯୁକ୍ତ ପାଇଲେ । କିନ୍ତୁ ବଡ଼ଦୁଃଖର ବିଷୟ ଏହି ଯେ ତାଙ୍କର ଉଚ୍ଚଶିକ୍ଷା ସତ୍ତ୍ୱେ ଅସ୍ପୃଶ୍ୟତା କଳଙ୍କରୁ ସେ ମୁକ୍ତି ପାଇପାରିନଥିଲେ । ବରୋଦାରେ ରହିବାକୁ ତାଙ୍କୁ ସ୍ଥାନ ମିଳିନଥିଲା । ରାଜକର୍ମଚାରୀଙ୍କର ଘୃଣ୍ୟ ବ୍ୟବହାର ଏପରିକି ପିଅନମାନେ ଦୂରରୁ ତାଙ୍କ ଟେବୁଲ ଉପରକୁ ଫାଇଲ୍ ଫୋପାଡ଼ିବାଠାରୁ ଆରମ୍ଭ କରି ପିଇବାକୁ କେହି ପାଣି ଗ୍ଲାସଟିଏ ମଧ୍ୟ ଦେଉନଥିଲେ । ସମାଜରେ ନ୍ୟାଯ୍ୟ ଅଧିକାର ଓ ସ୍ଥାନ ପାଇବା ପାଇଁ ଅସ୍ପୃଶ୍ୟମାନଙ୍କୁ ବିପ୍ଳବାତ୍ମକ ପନ୍ଥା ଗ୍ରହଣ କରିବାକୁ ପଡ଼ିବ ବୋଲି ସେ କାର୍ଯ୍ୟପନ୍ଥା ସ୍ଥିର କଲେ । ଅଳ୍ପଦିନ ମଧ୍ୟରେ ସେ ବରୋଦାରୁ ପଳାଇ ଆସି ବମ୍ବେର ସିଡ଼େନହାମ୍ ଇକୋନୋମିକ୍ସ ଏଣ୍ଡ୍ କମର୍ସ କଲେଜରେ ଅର୍ଥଶାସ୍ତ୍ର ଅଧ୍ୟାପକ ଭାବେ କିଛି ଦିନ ପାଇଁ କାର୍ଯ୍ୟ କରିଥିଲେ ।

୧୯୨୦ ମସିହାରେ ଆମ୍ବେଦକର ଅଧିକ ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଗଲେ । ସେଠାରେ ଥିବା ବ୍ରିଟିଶ୍ ମ୍ୟୁଜିୟମ୍ ଲାଇବ୍ରେରୀରେ ଅର୍ଥନୀତି, ଆଇନ୍, ବିଚାରଶାସ୍ତ୍ର, ରାଜନୀତି ବିଜ୍ଞାନ, ଇତିହାସ, ନୃତତ୍ତ୍ୱ ଓ ସମାଜ ବିଜ୍ଞାନ ଆଦି ବିଷୟରେ ଗଭୀର ଜ୍ଞାନ ଅର୍ଜନ କରି ୧୯୨୧ ମସିହାରେ ଅର୍ଥନୀତିରେ ଡିଗ୍ରୀ ହାସଲ ଓ ୧୯୨୨ ମସିହାରେ ବାରିଷ୍ଟର (ବାର ଆର୍ଟ 'ଲ') ତଥା ଡି.ଏସ୍.ସି. ଡିଗ୍ରୀରେ ଭୂଷିତ ହେଲେ । ପ୍ରକାଶ ଥାଉ କି ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସରେ ଡି.ଏସ୍.ସି. ଡିଗ୍ରୀ ପାଇଥିବା ମଧ୍ୟରେ ସେ ଥିଲେ ପ୍ରଥମ ଭାରତୀୟ ।

ପ୍ରଖ୍ୟାତ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ରହୁଥିବାବେଳେ ଡକ୍ଟର ଗୋଲଡେନ୍ ଜଜ୍‌ଙ୍କ ଦ୍ୱାରା ଆୟୋଜିତ ନୃତତ୍ତ୍ୱ ସମ୍ମିଳନୀରେ ''ଭାରତର ଜାତି ସମୂହ'' ବିଷୟବସ୍ତୁ ଉପରେ ଏକ ସନ୍ଦର୍ଭ ଉପସ୍ଥାପନ କରିଥିଲେ । ଏଥିରେ ଜାତିପ୍ରଥାର ଉତ୍ପତ୍ତି, କ୍ରମବିକାଶ ଓ ସାମାଜିକ ପରିସ୍ଥିତି ସମ୍ବନ୍ଧରେ ଗବେଷଣାତ୍ମକ ବିଜ୍ଞାନସମ୍ମତ ବାସ୍ତବ ତତ୍ତ୍ୱଗୁଡ଼ିକୁ ବିସ୍ତୃତ ଭାବେ ବର୍ଣ୍ଣନା କରିଥିଲେ । ପ୍ରଥମେ ସେ ବମ୍ବେ ହାଇକୋର୍ଟରେ ଓକିଲାତି ଆରମ୍ଭ କରିଥିଲେ । ନିଜର ବିଦ୍ୟା, ବୁଦ୍ଧି, ବିଚକ୍ଷଣତା ଓ ପ୍ରତିଭା ବଳରେ ଓକିଲ ମହଲରେ ସେ ଶୀର୍ଷ ସ୍ଥାନ ଅଧିକାର କରିଥିଲେ । କିନ୍ତୁ ଏଥିରେ ସେ ଶାନ୍ତି ପାଉ ନଥିଲେ । କାରଣ ଭାରତର ଲକ୍ଷ ଲକ୍ଷ ଅସ୍ପୃଶ୍ୟମାନଙ୍କର ଦୁଃଖ, ଦୈନ୍ୟ ଓ ଅଜ୍ଞତା ସର୍ବଦା ତାଙ୍କ ମନକୁ ଆନ୍ଦୋଳିତ କରୁଥିଲା । ସେମାନେ ଭୋଗୁଥିବା ନିର୍ଯ୍ୟାତନାକୁ ଲୋକଲୋଚନକୁ ଆଣିବା ସହିତ ସମାଜରେ ସମାନ ଅଧିକାର ପ୍ରତିଷ୍ଠା ପାଇଁ ତାଙ୍କ ମନ ଅସ୍ଥିର ହୋଇଉଠିଥିଲା । ଅସ୍ପୃଶ୍ୟମାନଙ୍କର ସାମାଜିକ, ସାଂସ୍କୃତିକ ଓ ଶିକ୍ଷାଗତ ବିକାଶ ପାଇଁ ୧୯୨୧ ମସିହାରେ ପୁନାଠାରେ ମନ୍ଦିର ପ୍ରବେଶ ଆନ୍ଦୋଳନ ଆରମ୍ଭ କରିଥିଲେ । ତନ୍ମଧ୍ୟରୁ ନାସିକର ବଳରାମ

ମନ୍ଦିର ପ୍ରବେଶ ଅଭିଯାନ ପ୍ରଧାନ । ଅସ୍ପୃଶ୍ୟମାନଙ୍କୁ ରାଜନୈତିକ ଅଧିକାର ଦେବା ସମ୍ବନ୍ଧରେ ତାଙ୍କର ଭୂମିକା ଅବିସ୍ମରଣୀୟ । ସେ ୧୯୨୪ ମସିହାରେ ''ବହିଷ୍କୃତ ହିତକାରିଣୀ'' ସଭା ଗଠନ କରିଥିଲେ ।

ଅସ୍ପୃଶ୍ୟମାନଙ୍କ ଦ୍ୱାରା କିପରି ଅବାଧରେ ପୁଷ୍କରିଣୀ ଜଳ ବ୍ୟବହାର ହୋଇପାରିବ ସେଥିପାଇଁ ସେ ଆନ୍ଦୋଳନ ଆରମ୍ଭ କରିଥିଲେ । କୋଲାବ ଜିଲ୍ଲାର ମାହାଡ଼ ମ୍ୟୁନିସିପାଲିଟି ଦ୍ୱାରା ଚୋଦାର ପୁଷ୍କରିଣୀ ଅସ୍ପୃଶ୍ୟମାନଙ୍କ ଦ୍ୱାରା ବ୍ୟବହାର ହୋଇପାରିବ ବୋଲି ଘୋଷଣା କରାଯାଇଥିଲା । କିନ୍ତୁ ଏହା କାର୍ଯ୍ୟକାରୀ ନହେବାରୁ ୧୯୨୭ ମସିହା ମାର୍ଚ୍ଚ ୨ ତାରିଖରେ ଆମ୍ବେଦକର ଏହି ପୁଷ୍କରିଣୀ ଜଳ ବ୍ୟବହାର କରି ସେଠାରେ ସାମାଜିକ ସାମ୍ୟବାଦର ପରିଚୟ ପ୍ରଦାନ କରିଥିଲେ । ୧୯୨୮ ମସିହାରେ ବମ୍ବେ 'ଲ' କଲେଜରେ ପ୍ରଫେସର ପଦବୀରେ ନିଯୁକ୍ତି ପାଇଲେ ଏବଂ ପରେ ସେ ଉକ୍ତ କଲେଜରେ ଅଧକ୍ଷ ରୂପେ ଅବସ୍ଥାପିତ ହୋଇଥିଲେ । ୧୯୩୦ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ 'ଗୋଲଟେବୁଲ ବୈଠକ'ରେ ଦଳିତ ଶ୍ରେଣୀଙ୍କ ତରଫରୁ ସର୍ବସମ୍ମତିକ୍ରମେ ପ୍ରତିନିଧିତ୍ୱ କରିଥିଲେ । ସେଠାରେ ତାଙ୍କର ଧୀଶକ୍ତି ଓ ଅକାଟ୍ୟ ଯୁକ୍ତି ଗାନ୍ଧୀଙ୍କୁ ପ୍ରଭାବିତ କରିଥିଲା । ଦଳିତ ଶ୍ରେଣୀଙ୍କ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ପ୍ରଥମେ ସ୍ୱତନ୍ତ୍ର ଭାରତରେ ଦଳିତ ଶ୍ରେଣୀଙ୍କର 'ରାଜନୈତିକ ଅଧିକାର', ଭାରତ ସମ୍ବିଧାନରେ 'ଦଳିତ ଶ୍ରେଣୀଙ୍କର ଶାସନ ଅଧିକାର' ଓ 'ସୈନ୍ୟ ବିଭାଗରେ ଦଳିତ ଶ୍ରେଣୀଙ୍କ ନିଯୁକ୍ତି' ଏବଂ ସେମାନଙ୍କ ପାଇଁ 'ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ' କରିବାକୁ ସେ ଦାବି କରିଥିଲେ । ଲଣ୍ଡନରୁ ଫେରି ସେ ସମସ୍ତ ଦଳିତ ଜାତିଙ୍କୁ ଏକତ୍ରିତ ହେବା ପାଇଁ ଡାକରା ଦେଲେ ।

୧୯୩୨ ମସିହା ସେପ୍ଟେମ୍ବର ୨୪ ତାରିଖ ଦିନ ଡକ୍ଟର ଆମ୍ବେଦକର ଓ ମହାତ୍ମା ଗାନ୍ଧୀଙ୍କ ତରଫରୁ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ମଧ୍ୟରେ ପୁନାଠାରେ ଏକ ଐତିହାସିକ ରାଜିନାମା ସ୍ୱାକ୍ଷରିତ ହୋଇଥିଲା । ଏହା 'ପୁନାପ୍ୟାକ୍ଟ' ନାମରେ ପରିଚିତ । ଏହି ରାଜିନାମା ଅନୁଯାୟୀ ଅସ୍ପୃଶ୍ୟମାନଙ୍କ ପାଇଁ ଅଲଗା ନିର୍ବାଚନ ମଣ୍ଡଳୀ ପରିବର୍ତ୍ତେ ଆନୁପାତିକ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ନିର୍ଦ୍ଧାରଣ କରାଗଲା । ସେ ୧୯୩୫ ମସିହା ଅକ୍ଟୋବର ୧୩ ତାରିଖରେ ମହାରାଷ୍ଟ୍ରର ନାସିକ ଜିଲ୍ଲା ଅନ୍ତର୍ଗତ ୟେଭଲାଠାରେ ଧର୍ମ ପରିବର୍ତ୍ତନ କରିବାର ଦୃଢ଼ ନିଷ୍ପତ୍ତି ନେଇଥିଲେ । ୧୯୩୬ ମେ' ମାସରେ ପଞ୍ଜାବର ଲାହୋରଠାରେ ହିନ୍ଦୁ ସାମାଜିକ କର୍ମକର୍ତ୍ତାଙ୍କୁ ନେଇ ଏକ 'ଜାତ-ପାତ-ତୋଡ଼କ ମଣ୍ଡଳ' ସମ୍ମିଳନୀ ଡକା ଯାଇଥିଲା । ଏହି ସମ୍ମିଳନୀରେ ଆମ୍ବେଦକର ସଭାପତିତ୍ୱ କରିଥିଲେ । ସେ ଜାତିପ୍ରଥା ଭଳି ମାରାତ୍ମକ ପରିଣତି ତଥା ସାମାଜିକ ବ୍ୟାଧିରୁ ମୁକ୍ତ ହୋଇ ସମତାଭିତ୍ତିକ ସମାଜବାଦ ପ୍ରତିଷ୍ଠା କରିବା ପାଇଁ ଯେଉଁ ପରିକଳ୍ପନା କରିଥିଲେ ତାହା ସମାଜ ସଂସ୍କାରକମାନଙ୍କ ଆଗରେ ଉପସ୍ଥାପନ କରିଥିଲେ ।

୧୯୪୨ରୁ ୧୯୪୬ ମସିହା ପର୍ଯ୍ୟନ୍ତ ଭାଇସ୍‌ରାୟଙ୍କ କାର୍ଯ୍ୟକାରିଣୀ ପରିଷଦର ସଦସ୍ୟ ଭାବେ ସେ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ଶ୍ରମିକମାନଙ୍କର ମଜୁରି ସମସ୍ୟା, ମାଲିକ ଓ ଶ୍ରମିକମାନଙ୍କ ମଧ୍ୟରେ ସମ୍ପର୍କ ତଥା କୃଷକମାନଙ୍କର ଆର୍ଥିକ ଉନ୍ନତି ପ୍ରତି ଧ୍ୟାନ ଦେଇଥିଲେ । ଭାରତ ସ୍ୱାଧୀନ ହେବା ପରେ ସମ୍ବିଧାନ ପ୍ରସ୍ତୁତ କରିବା ନିମନ୍ତେ ଡଃ ଆମ୍ବେଦକରଙ୍କୁ ଡ୍ରାଫ୍‌ଟିଙ୍ଗ କମିଟିର ଚେୟାରମ୍ୟାନ ରୂପେ ୧୯୪୭ ଅଗଷ୍ଟ ୨୯ ତାରିଖରେ ମନୋନୀତ କରାଗଲା । ଉକ୍ତ କମିଟିରେ ଡକ୍ଟର ବି.ଆର୍.ଆମ୍ବେଦକର, ଶ୍ରୀ କେ.ଏମ୍. ମୁନ୍‌ସୀ, ଶ୍ରୀ ଆୟାର, ଶ୍ରୀ ଏନ୍.ଜି. ଆୟାଙ୍ଗର୍, ଶ୍ରୀ ଡି.ପି. ଖୈତାନ୍, ଶ୍ରୀ ଏନ୍ ମାଧବ ରାଓ, ଶ୍ରୀ ଡି.ପି. ସଦ୍‌ଉଲା ପ୍ରମୁଖ ୭ ଜଣ ସଭ୍ୟ ଥିଲେ । କିନ୍ତୁ ବିଭିନ୍ନ କାରଣରୁ ବସ୍ତୁତଃ ଆମ୍ବେଦକରଙ୍କୁ ଏକୁଟିଆ ଭାରତ ସମ୍ବିଧାନ ପ୍ରସ୍ତୁତ କରିବାକୁ ପଡ଼ିଥିଲା ଏବଂ ଏହା ପ୍ରସ୍ତୁତ କରିବାରେ ତାଙ୍କୁ ୨ ବର୍ଷ ୧୧ ମାସ ୧୭ ଦିନ ସମୟ ଲାଗିଥିଲା । ଏହି ସମୟ ମଧ୍ୟରେ ଡକ୍ଟର ଆମ୍ବେଦକର ନିଜର ଆଇନ ଓ ବିଚାରଶାସ୍ତ୍ର ତଥା ପୃଥିବୀର ବିଭିନ୍ନ ଦେଶର ସମ୍ବିଧାନ ସମ୍ବନ୍ଧୀୟ ବିଭିନ୍ନ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମାଧ୍ୟମରେ ସୂଚାରୁରୂପେ ସମ୍ବିଧାନ ପ୍ରସ୍ତୁତି କାର୍ଯ୍ୟ ସମ୍ପନ୍ନ କରିଥିଲେ । ଡକ୍ଟର ଆମ୍ବେଦକର ଗଣତନ୍ତ୍ର ଓ ସମାଜବାଦର ଜଣେ ଦୃଢ଼ ପ୍ରବକ୍ତା ଥିଲେ । ସେ କେବଳ ମନୁଷ୍ୟମାନଙ୍କ ମଧ୍ୟରେ ସମାନତା ଚାହୁଁଥିଲେ ତା' ନୁହେଁ, ପୁରୁଷ ଓ ନାରୀଙ୍କ ମଧ୍ୟରେ ସମାନତା ରଖିବାକୁ ମଧ୍ୟ ଚାହୁଁଥିଲେ । ତାଙ୍କର 'ହିନ୍ଦୁ କୋଡ୍ ବିଲ୍' ଏହାର ଜ୍ୱଳନ୍ତ ଉଦାହରଣ ।

ଡକ୍ଟର ଆମ୍ବେଦକର ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଶିକ୍ଷା, ସମାଜ ସଂସ୍କାର ଓ ଭାରତୀୟ ରାଜନୀତିକୁ ତାଙ୍କର ଦାନ ଅତୁଳନୀୟ । ସେ ଭାରତ ବାହାରେ ଆମେରିକା, ଇଂଲଣ୍ଡ, ଓ ଜର୍ମାନୀ ଯାଇ ୧୬ଟି ଭାଷା ଓ ଅର୍ଥନୀତି ଦର୍ଶନ, ସଂସ୍କୃତ, ଇଂରାଜୀ, ଆଇନ୍, ରାଜନୀତି ଇତ୍ୟାଦି ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଅସ୍ପୃଶ୍ୟ ଛାତ୍ରମାନଙ୍କୁ ସଂସ୍କୃତି ସମ୍ପନ୍ନ ଓ ଆତ୍ମନିର୍ଭରଶୀଳ କରିବା ଉଦ୍ଦେଶ୍ୟରେ ଗୌତମବୁଦ୍ଧଙ୍କ ନାମାନୁସାରେ ସେ 'ସିଦ୍ଧାର୍ଥ କଳା ଓ ବିଜ୍ଞାନ କଲେଜ' ପ୍ରତିଷ୍ଠା କରିଥିଲେ, ଏହାର କିଛି ବର୍ଷ ପରେ ଔରଙ୍ଗାବାଦଠାରେ ସେଠାକାର ରାଜା ମିଳିନ୍ଦଙ୍କ ନାମାନୁସାରେ 'ମିଳିନ୍ଦ ମହାବିଦ୍ୟାଳୟ' ଖୋଲାଯାଇଥିଲା । ଆମର ସାମାଜିକ ସମସ୍ୟାର ନିରାକରଣ ପାଇଁ ଶିକ୍ଷା ହିଁ ଏକମାତ୍ର ମହୌଷଧି ବୋଲି ସେ ମତ ଦେଇଥିଲେ । ତାଙ୍କ ଜୀବନକାଳରେ ବମ୍ବେଠାରେ 'ସିଦ୍ଧାର୍ଥ ବାଣିଜ୍ୟ ଓ ଅର୍ଥନୀତି କଲେଜ' ଓ 'ସିଦ୍ଧାର୍ଥ ଆଇନ୍ କଲେଜ' ମଧ୍ୟ ପ୍ରତିଷ୍ଠା କରିଥିଲେ । ପଣ୍ଡିତ ଜବାହରଲାଲ ନେହରୁଙ୍କ ମନ୍ତ୍ରିମଣ୍ଡଳରେ ସେ ଭାରତର ପ୍ରଥମ ଆଇନମନ୍ତ୍ରୀ ଭାବେ ଅବସ୍ଥାପିତ ହୋଇଥିଲେ । କେନ୍ଦ୍ର ମନ୍ତ୍ରିମଣ୍ଡଳରେ କେତେକ ନୀତିଗତ ପାର୍ଥକ୍ୟ ସୃଷ୍ଟି ହେବା ଯୋଗୁଁ ୧୯୫୧ ମସିହାରେ ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ । ୧୯୫୨ ମସିହାରେ ସେ ଲୋକସଭାକୁ ନିର୍ବାଚିତ ହୋଇପାରିନଥିଲେ ମଧ୍ୟ ତାଙ୍କୁ ରାଜ୍ୟସଭାକୁ ମନୋନୀତ କରି ନିଆଯାଇଥିଲା । ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ନାଗପୁରଠାରେ ବୌଦ୍ଧଭିକ୍ଷୁ ଚନ୍ଦ୍ରମଣିଙ୍କଠାରୁ ତାଙ୍କର ସ୍ତ୍ରୀ ଓ ହଜାର ହଜାର ଅନୁଗାମୀଙ୍କ ସହ ସେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ତାଙ୍କର ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟାବଳୀକୁ ଅନୁଧ୍ୟାନ କରି ଆମେରିକାର ପଣ୍ଡିତମାନେ ତାଙ୍କୁ 'ଲିଙ୍କନ' ବୋଲି କହୁଥିଲେ ଏବଂ ତାଙ୍କର କ୍ରାନ୍ତିକାରୀ ସମାଜ ସଂସ୍କାରମୂଳକ ବିଚାରଧାରାକୁ ଦେଖି ତାଙ୍କୁ ମାର୍ଟିନ୍ ଲୁଥର୍‌ଙ୍କ ସହ ତୁଳନା କରୁଥିଲେ । ତାଙ୍କର ସଂଘର୍ଷ ଓ ସମତାକୁ ଦେଖି ବଡ଼ ବଡ଼ ଅର୍ଥନୀତିଜ୍ଞମାନେ ତାଙ୍କୁ ଭାରତୀୟ 'ମାର୍କସ' ବୋଲି ଆଖ୍ୟା ଦେଇଥିଲେ । ସେ ମଧ୍ୟ ହିନ୍ଦୁ ବିବାହ ଆଇନ୍, ହିନ୍ଦୁ ସକ୍‌ସେସନ୍ ଆକ୍ଟ, ହିନ୍ଦୁ ମାଇନରଟି ଆଣ୍ଡ ଗାର୍ଡ଼ିଆନ୍‌ସିପ୍ ଆକ୍ଟ ଏବଂ ହିନ୍ଦୁ ମେଣ୍ଟେନାନ୍ସ ଆକ୍ଟ ପ୍ରଭୃତିର ରୂପରେଖ ପ୍ରସ୍ତୁତ କରି ପାର୍ଲାମେଣ୍ଟରେ ଅନୁମୋଦନ କରାଇପାରିଥିଲେ । ଏଥିପାଇଁ ଗଜେନ୍ଦ୍ର ଗଡ଼କର ତାଙ୍କୁ 'ଆଧୁନିକ ମନୁ' ବୋଲି ସମ୍ବୋଧନ କରିଥିଲେ ଏବଂ ବୌଦ୍ଧଧର୍ମ ପ୍ରତି ଗଭୀର ଆଗ୍ରହ ଓ ନିଷ୍ଠା ଦେଖି ବିଦ୍ୱାନ ବୌଦ୍ଧ ଭିକ୍ଷୁ ମହାବୀରସ୍ଥମାନେ ତାଙ୍କୁ ବୋଧିସତ୍ତ୍ୱ ଉପାଧିରେ ଭୂଷିତ କରିଥିଲେ ।

ଏହି ମହାନ୍ ଯୋଗଜନ୍ମା ମହାପୁରୁଷଙ୍କ ଜୀବନର ପରିସମାପ୍ତି ଘଟିଲା ୧୯୫୬ ମସିହା ଡିସେମ୍ବର ୬ ତାରିଖରେ ଏବଂ ୭ ତାରିଖରେ ବମ୍ବେର 'ଦାଦର ଚୌପାଟି'ଠାରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହେଲା । ବର୍ତ୍ତମାନ ଏହା 'ଚୌତ୍ୟଭୂମି ଦାଦର' ଭାବେ ପରିଚିତ । ବାସ୍ତବିକ ସେ ଥିଲେ ଏକାଧାରରେ ଅର୍ଥନୀତିଜ୍ଞ, ଆଇନଜ୍ଞ, ସମାଜ ସଂସ୍କାରକ, ଗବେଷକ, ଦକ୍ଷ ପ୍ରଶାସକ, ଜନନେତା ଓ ରାଷ୍ଟ୍ରନାୟକ । ଜୀବନରେ ସେ ବହୁତ୍ୟାଗ ସ୍ୱୀକାର କରିଛନ୍ତି । ଶୈଶବ ଓ ଛାତ୍ର ଜୀବନରେ ବହୁ ବାଧାବିଘ୍ନ ଓ ଅଭାବ ଅସୁବିଧା ଦେଇ ଗତି କରିଥିଲେ ମଧ୍ୟ ତାଙ୍କର ତ୍ୟାଗ ଓ ନିଷ୍ଠା ଦ୍ୱାରା ସେ ଯଶସ୍ୱୀ ହୋଇପାରିଛନ୍ତି । ତାଙ୍କର ରଚିତ ସମ୍ବିଧାନ ପୃଥିବୀର ସର୍ବଶ୍ରେଷ୍ଠ ସମ୍ବିଧାନ ବୋଲି ଗଣନା କରାଯାଉଛି । ତାଙ୍କ ମହାପ୍ରୟାଣର ୩୩ ବର୍ଷ ପରେ ଅର୍ଥାତ୍ ୧୯୯୦ ମସିହାରେ ଭାରତ ସରକାର ତାଙ୍କୁ ମରଣୋତ୍ତର 'ଭାରତ ରତ୍ନ' ଉପାଧିରେ ଭୂଷିତ କରିଛନ୍ତି । ତାଙ୍କର ମହାନୀୟତା ଓ ଆଦର୍ଶ ପ୍ରତି ଏହା ରାଷ୍ଟ୍ରୀୟ ସମ୍ମାନ । ସେ ଆଜି ନାହାନ୍ତି ସତ ତାଙ୍କର ଅମର କୀର୍ତ୍ତି ଚିରଦିନ ପାଇଁ ମାନବ ସମାଜକୁ ପ୍ରେରଣା ଓ ଦିଗ୍‌ଦର୍ଶନ ଯୋଗାଇ ଆସୁଥିବ ।

ସୂଚନା ଓ ଲୋକସମ୍ପର୍କ ବିଭାଗ
ଭୁବନେଶ୍ୱର



# ପ୍ରାତଃ ସ୍ମରଣୀୟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ

ନମିତା ଦାଶ

ପ୍ରାତଃ ସ୍ମରଣୀୟ ସ୍ୱାଧୀନଚେତା, ଦେଶପ୍ରେମୀ, ପ୍ରଜାବତ୍ସଳ ରାଜା ହରିହର ମର୍ଦ୍ଦରାଜ ଏବଂ ନାରୀ ମୁକ୍ତି କାମୀ, ଧର୍ମପ୍ରାଣା, ସମାଜ ସଂସ୍କାରୀ, ପ୍ରଜାବତ୍ସଳା ପୂଜ୍ୟା ମହାରାଣୀ କନକ ମଞ୍ଜରୀଙ୍କ ସୁଯୋଗ୍ୟ ଦାୟାଦ, ପୁତ୍ର ରାମଚନ୍ଦ୍ର ୧୩.୦୧.୧୯୦୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ରାଜକୁମାର ରାମଚନ୍ଦ୍ରଙ୍କ ଦ୍ୱିତୀୟ ଜନ୍ମ ବାର୍ଷିକୀ ଉତ୍ସବ ଅବସରରେ ରାଜା ହରିହର ମର୍ଦ୍ଦରାଜ ଅନେକ ଜନନାୟକ, ଦେଶ ହିତୈଷୀ ତଥା ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରି ସେଠାରେ 'ଗଞ୍ଜାମ ସମ୍ମେଳନ'ର ଅୟମାରମ୍ଭ କରିଥିଲେ । ଓଡ଼ିଆ ସାହିତ୍ୟର କର୍ଣ୍ଣଧାର ମଧୁସୂଦନ ଦାସ, ଫକୀରମୋହନ ସେନାପତି ତଥା ମହାରାଜ ରାମଚନ୍ଦ୍ର ଭଂଜ ପ୍ରମୁଖ ଯୋଗ ଦେଇଥିଲେ ।

ଏହି ସମୟରୁ ହିଁ 'ଜୟ ଉତ୍କଳର ଜୟ' ଧ୍ୱନୀରେ ଚତୁର୍ଦ୍ଦିଗ ଫାଟି ପଡ଼ିଥିଲା ଏବଂ 'ପ୍ରଜାବଂଧୁ' ପତ୍ରିକାଟି ମଧ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସଂଯୋଜନାରେ ପ୍ରକାଶ ପାଇଲା । ଓଡ଼ିଆ ଜାତିର, ଓଡ଼ିଆ ଭାଷାର ଉନ୍ନତି ତଥା ସୁରକ୍ଷା ନିମନ୍ତେ ଏଇ ପତ୍ରିକା ମାଧ୍ୟମରେ ବହୁ ପ୍ରଚେଷ୍ଟା ଆରମ୍ଭ ହୋଇଯାଇଥିଲା ।

କହିବା ବାହୁଲ୍ୟ, ପିଲାଟି ଦିନରୁ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ନିଜ ପରିବାର, ଦେଶ ପ୍ରତି, ଜାତି ପ୍ରତି, ଭାଷା ପ୍ରତି ନିଜକୁ ସଂପୂର୍ଣ୍ଣ ନିୟୋଜିତ କରିଥିଲେ । ସୁଖ, ସ୍ୱାଚ୍ଛନ୍ଦ୍ୟକୁ ତୁଚ୍ଛ କରି ମାତ୍ର ୯ ବର୍ଷରେ ପିତୃ ବିୟୋଗାନ୍ତ ଦୁଃଖକୁ ଭୁଲି ବିଦ୍ୟା ଶିକ୍ଷା ପରେ ରାଜ ସିଂହାସନ ଆରୋହଣ କରି, ସେହି ଦିନରୁ ଦେଶ ମିଶ୍ରଣ କଥା ଭାଷା ସୁରକ୍ଷାରେ ଆପ୍ରାଣ ଉଦ୍ୟମ ଆରମ୍ଭ କରିଦେଇଥିଲେ । ସର୍ବପ୍ରଥମେ ରାଜ୍ୟର ସବୁ ଅଞ୍ଚଳକୁ ନିଜେ ବୁଲି ଦେଖିଲେ । ରାଜା ବିହୀନ ପ୍ରଜାଙ୍କ ଦୁର୍ଦ୍ଦଶା ଅନୁଭବ କଲେ । ପ୍ରାୟତଃ କର୍ମଚାରୀମାନେ ଅଣଓଡ଼ିଆ ଥିଲେ । ଏଣୁ ଓଡ଼ିଆଙ୍କୁ ଭାଷାଗତ, ଜାତିଗତ ସମସ୍ୟାର ସମ୍ମୁଖୀନ ତଥା ଅତ୍ୟାଚାରିତ ହେବାକୁ ପଡୁଥିଲା ।

ରାଜା ରାମଚନ୍ଦ୍ର ପ୍ରଜା ମାରଣନୀତି ସବୁ ଗାଁ ଗାଁ ବୁଲି ଦେଖି ଏ ପ୍ରୟାସକୁ ଉଚ୍ଛେଦ କରି ଜନସାଧାରଣଙ୍କୁ ସହାୟତା ପ୍ରଦାନ କରିଥିଲେ । ପିତା ହରିହର ମର୍ଦ୍ଦରାଜଙ୍କ ପ୍ରତିଷ୍ଠିତ ବ୍ରହ୍ମପୁରର ଖଲ୍ଲିକୋଟ କଲେଜର ପରିଚାଳନା କମିଟିରେ ସଭାପତି ରୂପେ କଲେକ୍ଟର ହିଁ ରହି ଆସୁଥିଲାବେଳେ ୧୯୨୦ ମସିହାଠାରୁ ରାମଚନ୍ଦ୍ର ମର୍ଦ୍ଦରାଜ ସଭାପତି ରୂପେ କାର୍ଯ୍ୟ ତୁଲାଇଲେ । ୧୯୨୨ରୁ ଗଂଜାମ ଜିଲ୍ଲା ବୋର୍ଡ଼ର ସଭାପତି ରୂପେ ସରକାରଙ୍କ ଦ୍ୱାରା ମନୋନୀତ ହେବା ପରେ ୧୯୩୭ ମସିହା ପର୍ଯ୍ୟନ୍ତ ଏହି ଦାୟିତ୍ୱ ତୁଲାଇଥିଲେ । ଏ ପ୍ରେକ୍ଷାପଟ୍ଟରେ ସେ ଅନେକ ଉନ୍ନତିମୂଳକ ଓ ଉଲ୍ଲେଖନୀୟ କାର୍ଯ୍ୟ ମଧ୍ୟ ସମ୍ପାଦନ କରିଥିଲେ । ଋଷିକୂଲ୍ୟା, ଘୋଡ଼ାହାଡ଼, ବାହୁଦା, ବଡ଼ନଦୀ, ବଂଶଧାରା, ମହେନ୍ଦ୍ର ତନୟା

ଆଦି ନଦୀରେ ଯାତାୟାତର ସୁବିଧା ନିମନ୍ତେ ପୋଲ ନିର୍ମାଣ କରାଇ ସ୍ଥାୟୀ ଜୀବନଯାତ୍ରାର ସ୍ୱାଦ ଚଖାଇଥିଲେ । ତେଣୁ ଜନସାଧାରଣ ତାଙ୍କୁ କୁଆଡ଼େ 'ସେତୁ ସଭାପତି' ବୋଲି ଆଖ୍ୟା ଦେଇଥିଲେ ।

୧୯୧୮ ମସିହାରେ ବୃଷ୍ଟିର ଘୋର ଅଭାବ ହେତୁ ୧୯୧୯ ବେଳକୁ ଦୁର୍ଭିକ୍ଷ ପଡ଼ିଲା । ଯୁବରାଜ ରାମଚନ୍ଦ୍ର ମାନ୍ଦ୍ରାଜ ସରକାରଙ୍କୁ ଏଇ ଦୁର୍ଦ୍ଦଶା ନେଇ ଅବଗତ କରାଇବା ଫଳରେ ଖଲ୍ଲିକୋଟ ତଥା ଆଠଗଡ଼ ଆଦି ଅଞ୍ଚଳରେ ଅନେକ କୂପ, ପୋଖରୀ ଖନନ କରାଯାଇଥିଲା । ବୃଦ୍ଧ, ବାଳକ, ଅକର୍ମଣ୍ୟ, ରୁଗ୍ଣମାନେ କିପରି ମାଗଣାରେ ଖାଇବାକୁ ପାଇବେ ସେ ବ୍ୟବସ୍ଥା ବି କରାଇଥିଲେ । ଏତାଦୃଶ୍ୟ କାର୍ଯ୍ୟ ଲୋକଲୋଚନକୁ ଆସିବା ପରେ ମାନ୍ଦ୍ରାଜ୍ ଲାଟ୍ ଲର୍ଡ଼ ୱିଲିଙ୍ଗଡ଼ନ୍ ଆସି ଜିଲ୍ଲା ଅବସ୍ଥା ତନଖି ରାଜକୁମାରଙ୍କ ପ୍ରଚେଷ୍ଟା, ଉଦ୍ୟମର ଭୂୟସୀ ପ୍ରଶଂସା କରି ଜିଲ୍ଲାକୁ ମରୁଡ଼ି ପ୍ରପୀଡ଼ିତ ଜିଲ୍ଲା ଭାବେ ଘୋଷଣା କଲେ । ଫଳରେ ବର୍ମାରୁ ଚାଉଳ ଅଣାଯାଇ କମ୍ ଦାମ୍‌ରେ ଜନସାଧାରଣଙ୍କୁ ଦିଆଗଲା । ରାଜକୁମାର ଏ ସମୟରେ ରାଜକୋଷରୁ ଅର୍ଥ ବିନିମୟରେ ଅନ୍ନ-ବସ୍ତ୍ରର ବ୍ୟବସ୍ଥା ବି କରାଇଥିଲେ । ଦୁର୍ଭିକ୍ଷ ଦୌରାତ୍ମ୍ୟ ହାର୍ ମାନିଥିଲା ରାଜା ରାମଚନ୍ଦ୍ରଙ୍କ ପ୍ରଜାବତ୍ସଳ କାର୍ଯ୍ୟ ଦେଖି ।

୧୯୨୩ ମସିହାରେ ରାମଚନ୍ଦ୍ର ମର୍ଦ୍ଦରାଜ ମାନ୍ଦ୍ରାଜ ଲାଟ୍‌ସଭାର ସଦସ୍ୟ ହେଲେ ଏବଂ ଅବହେଳିତ ଓଡ଼ିଆଙ୍କ ଅନେକ ହିତ ସାଧନ କଲେ । ରୟତମାନଙ୍କଠାରୁ ରାଜସ୍ୱ ଆଦାୟ ବେଳେ ଚାରି ଅଣାଯାଏ ଛାଡ଼ ପାଇବା ବ୍ୟବସ୍ଥା କରାଇଥିଲେ ।

ଇତ୍ୟବସରରେ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନ ହେଲା । ସେତେବେଳକୁ ରୟତ ଆନ୍ଦୋଳନ ମୁଖ୍ୟ ସ୍ରୋତରେ ଥିଲା । ଏହି ଆନ୍ଦୋଳନକୁ ସମର୍ଥନ କରି ମହାତ୍ମା ଗାନ୍ଧୀ ତାଙ୍କ ଅନୁଚରଙ୍କ ସହ ଆସି ରାଜାଙ୍କ ଅତିଥି ହେଲେ ଏବଂ ରମ୍ଭା ପ୍ରାସାଦଠାରେ ଅବସ୍ଥାନ କଲେ । ଏଠାରେ ସେ ବିଦେଶୀ ବର୍ଜନ, ଖଦଡ଼ ବ୍ୟବହାର, ଗ୍ରାମପଞ୍ଚାୟତରେ ଉପଯୁକ୍ତ କାର୍ଯ୍ୟକାରିତା ସମ୍ବନ୍ଧରେ ଅନେକ ଆବଶ୍ୟକୀୟ ତଥ୍ୟ ବୁଝାଇଥିଲେ । ବ୍ରିଟିଶ୍ ସରକାରଙ୍କ ଶତ୍ରୁ ମନେକରି ମହାତ୍ମା ଗାନ୍ଧୀଙ୍କୁ କୌଣସି ରାଜା ଅତିଥି ରୂପେ ଗ୍ରହଣ କରିବାକୁ ସାହସ କରୁନଥିଲାବେଳେ ରାମଚନ୍ଦ୍ର ମର୍ଦ୍ଦରାଜ ତାଙ୍କୁ ଆତିଥ୍ୟ ପ୍ରଦାନ କରି ଶ୍ରଦ୍ଧା, ବହୁଦର୍ଶିତା ତଥା ସାହସିକତାର ପ୍ରମାଣ ଦେଇଥିଲେ ।

ମହାତ୍ମା ଗାନ୍ଧୀଙ୍କ ପ୍ରତ୍ୟାବର୍ତ୍ତନ ପରେ ସ୍ୱଦେଶ ଆନ୍ଦୋଳନ ତେଜି ଉଠିଲା । ସତ୍ୟାଗ୍ରହ ଆନ୍ଦୋଳନ ଉଲ୍ଲେଖଯୋଗ୍ୟ । ଏହି ଆନ୍ଦୋଳନରେ ଅନେକ ଯୁବ ବର୍ଗ ସକ୍ରିୟ ଅଂଶ ଗ୍ରହଣ କରି କାରାବରଣ କରିଥିଲେ । ଜେଲ୍ ଗଲେ ଜାତି ଯାଏ ପୁଣି ମୁକୁଳିବା ପରେ ଜାତିରେ ମିଶାଇବାକୁ ହେଉଥିଲା । ଏହି ପ୍ରଥାକୁ ରାମଚନ୍ଦ୍ର ମର୍ଦ୍ଦରାଜ ସଂପୂର୍ଣ୍ଣ ଉଚ୍ଛେଦ କଲେ । ସେମାନେ ସ୍ୱଇଚ୍ଛାରେ ଚିଲିକାରୁ ଲୁଣ ସଂଗ୍ରହ ବି କଲେ ବିନା ଦ୍ୱିଧାରେ ରାଜାଙ୍କ ଉପସ୍ଥିତିରେ ।

୧୯୩୦ ମସିହାରେ ସ୍ୱରାଜ ଦାବୀ ଆନ୍ଦୋଳନର ବିଚାର ପାଇଁ ଲଣ୍ଡନରେ ବ୍ରିଟିଶ ସରକାର ଏକ ବୈଠକ ଅନୁଷ୍ଠିତ କଲେ ଯେଉଁଥିରେ ଭାରତୀୟ ନେତାମାନଙ୍କ ସହ ଆଲୋଚନା କରିଥିଲେ । ଏହି ବୈଠକରେ ଦକ୍ଷିଣ ଭାରତ ଜମିଦାରମାନଙ୍କ ତରଫରୁ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଯୋଗ ଦେଇ ଓଡ଼ିଆଙ୍କ ଅନେକ ପ୍ରମୁଖ ଦାବୀ ସବୁ ଯୁକ୍ତିଯୁକ୍ତ ଭାବେ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ଉପସ୍ଥାପନ କଲେ । ଫଳରେ ଭାରତ ସରକାର ସାର୍ ସାମୁଏଲ୍ ଓଡ଼ନେଲ୍‌ଙ୍କ ଅଧ୍ୟକ୍ଷତାରେ ଯେଉଁ କମିଟି ଗଠନ କରାଗଲା, ସେଥିରେ ଓଡ଼ିଶାର ସୀମା ନିର୍ଦ୍ଧାରିତ କରାଯିବାର ପ୍ରସ୍ତାବ ଆଲୋଚନାର ପରିସରକୁ ଆସିଲା । ଏହି କମିଟିରେ ରାମ ଫୁକେନ୍ ଏବଂ ଆର୍.ଏନ୍.ମେହେଟ୍ଟା ସଭ୍ୟ ରହିଲେ । ଗଂଜାମ ଜିଲ୍ଲା ଓ ବିଶାଖାପାଟଣା ଜିଲ୍ଲାର ସବୁ ଓଡ଼ିଶା ଜମିଦାରୀ ଓଡ଼ିଶାରେ ରହିବା ବିଧେୟ ବୋଲି ରାମଚନ୍ଦ୍ର ମର୍ଦ୍ଦରାଜ ଯୁକ୍ତି ବାଢ଼ିଥିଲେ । ଦୃଢ଼ତାର ମତ ପ୍ରଦାନ କରିବା ସତ୍ତ୍ୱେ ବି ଜୟପୁର ଓ ପାରଳାଖେମୁଣ୍ଡି ଓଡ଼ିଶାରେ ମିଶିବା ବିରୁଦ୍ଧରେ ମତ ଦେଇ ଓଡ଼ନେଲ୍ ସାହେବ ରାଜା ସାହେବଙ୍କ ମତକୁ ଅଗ୍ରାହ୍ୟ କଲେ । ଯାହାଫଳରେ ପ୍ରତିବାଦର ସ୍ୱର ଚତୁର୍ଦ୍ଦିଗରେ କୁହୁଳିଲା ।

ମାନ୍ଦ୍ରାଜ କାଉନ୍‌ସିଲ୍‌ରେ ବି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ବିଭିନ୍ନ ପ୍ରକାର ବାଧାକୁ ଅନ୍ତରାୟ ମାନି ରାମଚନ୍ଦ୍ର ମର୍ଦ୍ଦରାଜ ଖୁବ୍ ମର୍ମସ୍ପର୍ଶୀ ତଥା ଆଲୋଡ଼ନାତ୍ମକ ଅଭିଭାଷଣ ରଖିଥିଲେ । ଓଡ଼ିଆ ଜମିଦାରଙ୍କ ଦ୍ୱାରା ପ୍ରତିପାଳିତ ଏବଂ ପ୍ରତିଷ୍ଠିତ ହୋଇଥିଲେ ମାନ୍ଦ୍ରାଜୀମାନେ । ଓଡ଼ିଆଙ୍କ ପ୍ରତି ଅକୃତଜ୍ଞ

ମନୋଭାବ ରଖୁଥିଲେ । ଏଣୁ ଓଡ଼ିଆ ଅଞ୍ଚଳଗୁଡ଼ିକୁ ସ୍ୱତନ୍ତ୍ରତା ପ୍ରଦାନ କରିବାକୁ ଅନୁରୋଧ ଜଣାଇଥିଲେ ରାଜା ରାମଚନ୍ଦ୍ର ।

ତୃତୀୟ ଗୋଲ୍‌ଟେବୁଲ୍ ବୈଠକରେ ଦକ୍ଷିଣ ଭାରତର ଜମିଦାରଙ୍କ ପ୍ରତିନିଧି ରୂପେ ଯୋଗ ଦେବାପାଇଁ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଲଣ୍ଡନ ଯାତ୍ରା କଲେ । ସମସ୍ତ ଦାବୀକୁ ଦୃଢ଼ ତଥା ପୁଙ୍ଖାନୁପୁଙ୍ଖ ଭାବେ ଉପସ୍ଥାପନ କଲେ । ଯୁକ୍ତିଯୁକ୍ତ ଦାବୀ ସହ ଓଡ଼ିଆଙ୍କ ସୁଦୀର୍ଘ ଐତିହ୍ୟ କିପରି ଆର୍ଥିକ, ସାଂସ୍କୃତିକ ତଥା ସାହିତ୍ୟ କ୍ଷେତ୍ରରେ ଅବହେଳିତ ହୋଇ ରହିଛି, ତା'ର ପ୍ରତ୍ୟକ୍ଷ ବ୍ୟାଖ୍ୟାନ କରି ଶୀଘ୍ର ସ୍ୱତନ୍ତ୍ର ପ୍ରଦେଶ ଗଠନର ଆବଶ୍ୟକତା ବିଷୟରେ ସଚେତନ କରାଇଲେ ।

ଫଳସ୍ୱରୂପ ୨୪–୧୨–୧୯୩୨ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଭାବେ ସ୍ୱୀକୃତି ପାଇବାର ଘୋଷଣା କରାଗଲା । ଏଥିପାଇଁ ସେ ନିଜେ ଓଡ଼ିଆଙ୍କ ପାଇଁ ଚିର ସ୍ମରଣୀୟ । ଉଭୟେ ଭାରତ ସରକାର ଏବଂ ଗ୍ରେଟ୍‌ବ୍ରିଟେନ୍ ଏକମତ ହେଲେ ଯେ ସିନ୍ଧୁ ଏବଂ ଓଡ଼ିଶାକୁ ନିଶ୍ଚୟ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠନ କରାଯିବ ।

ଏହି ଐତିହାସିକ ଘୋଷଣାରେ ଓଡ଼ିଆଙ୍କ ଆନନ୍ଦ କହିଲେ ନ ସରେ । ବହୁ ନେତୃସ୍ଥାନୀୟ ବ୍ୟକ୍ତି ଶହ ଶହ ଶୁଭେଚ୍ଛା ତଥା ଅଭିନନ୍ଦନ ବାର୍ତ୍ତା ପଠାଇଲେ ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ନିକଟକୁ । ସମ୍ବାଦପତ୍ରମାନଙ୍କରେ ମଧ୍ୟ ଅନେକ ଉଚ୍ଛ୍ୱସିତ ପ୍ରଶଂସାମାନ ପ୍ରକାଶ ପାଇଲା ।

ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଏପରି ଅନେକ ସକ୍ରିୟ ତଥା ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ଖଲ୍ଲିକୋଟ ତଥା ସାରା ରାଜ୍ୟରେ ପ୍ରାତଃ ସ୍ମରଣୀୟ ହୋଇପାରିଛନ୍ତି ।

ଗଜପତି ନଗର
୩ୟ ଧାଡ଼ି, ବ୍ରହ୍ମପୁର

# ଦେଖ ପ୍ରଭୁ ଆଜି

**ହଂସନାଥ ମୁଦୁଲି**

ଦେଖ ପ୍ରଭୁ ଆଜି ତୁମ ମନ୍ଦିରରେ
ଠିଆ ହୋଇଛି ମୁଁ ନଡିଆ ନେଇ
ଦାସିଆ ପାଇଁକି ଯାହା କରିଥିଲ
ସେତିକି କରନ୍ତ
ମୋ' ହାତରୁ ଏ ନଡିଆ ଉଠେଇ ।
ଦେଖ ପ୍ରଭୁ ଆଜି ବାଲିରଥ କରି
ହାତ ଯୋଡିଛି ମୁଁ ଭକତି ଦେଇ
ବଳରାମ ପାଇଁ ଯାହା କରିଥିଲ
ସେତିକି କରନ୍ତ
ମୋର ଏଇ ରଥେ ପାଦ ପକେଇ ।

ଦେଖ ପ୍ରଭୁ ଆଜି ବିନତି କରୁଛି
ପ୍ରସାଦରୁ ଟିକେ ପାଇବା ପାଇଁ
ବନ୍ଧୁ ପାଇଁ ଯାହା ତୁମେ କରିଥିଲ
ସେତିକି କରନ୍ତ
ମୋ ପାଇଁ ଥାଳିଏ ଭୋଗ ପଠେଇ ।

ଦେଖ ପ୍ରଭୁ ଆଜି ଦୂରୁ ଧାଇଁଅଛି
ବଡଦାଣ୍ଡେ ରଥ ଦେଖିବା ପାଇଁ
ସାଲବେଗ ପାଇଁ ଯାହା କରିଥିଲ
ସେତିକି କରନ୍ତ
ରଥ ଚକ ଟିକେ ଦେଇ ମଠେଇ ।

ଖଣ୍ଡଗିରି (ଡୁମ୍‌ଡୁମା–କ), ଭୁବନେଶ୍ୱର–୩୦

# ପବିତ୍ର ପ୍ରାଚୀନଦୀ ପରିକ୍ରମାର ପ୍ରାଚୀନତା

**ପ୍ରଫୁଲ୍ଲ ନାୟକ**

ପୁରାଣ ବର୍ଣ୍ଣିତ ପବିତ୍ର ପ୍ରାଚୀନଦୀଙ୍କ ଦ୍ୱାଦଶ ନାମ ମଧ୍ୟରେ ପ୍ରମୁଖ ନାମ ହେଉଛି ଶିବାଗ୍ନି ଶାନ୍ତକାରିଣୀ । ସମୁଦ୍ର ମନ୍ଥନରୁ ନିର୍ଗତ ହଳାହଳ ବିଷପାନ ପ୍ରଭାବରେ ସଦାଶିବଙ୍କ ଶରୀର ନୀଳବର୍ଣ୍ଣ ପଡିଯିବା ସହ ଶିବାଗ୍ନି ଉଦ୍‌ଗିରଣ ହେବାକୁ ଲାଗିଲା । ଶଙ୍କରଙ୍କୁ ଶାନ୍ତ କରିବା ପାଇଁ ବ୍ରହ୍ମଦେବଙ୍କ ନିର୍ଦ୍ଦେଶରେ ଅନ୍ତସଶିଳା ଶସସ୍ୱତୀ କପିଳ ମୁନୀଙ୍କ ଯଜ୍ଞରୁ ନିର୍ଗତା ହୋଇ ପ୍ରାଚୀ ଧାରାରେ ମିଶି ପ୍ରାଚୀ ସରସ୍ୱତୀ ନାମରେ ସାଗର ମନ୍ଥନ କ୍ଷେତ୍ରକୁ ଗମନ କରି ଶିବାଗ୍ନି ଶାନ୍ତ କରାଇଲେ । ଏ ତଥ୍ୟ ସୂଚାଇ ଦିଏ ଯେ ପ୍ରାଚୀ ସାଗର ସଂଗମ ତୀର୍ଥ ହିଁ ପୁରାଣ ବର୍ଣ୍ଣିତ ସାଗରମନ୍ଥନ ତୀର୍ଥ । ମୋହିନୀ ରୂପରେ ଭଗବାନ ବିଷ୍ଣୁ ଏଠାରେ ଗୁପ୍ତରେ ରଖିଥିବା ଅମୃତ କଳସ ଆସ୍ଥାନ ହିଁ ପ୍ରାଚୀତଟର ଅନ୍ତିମ ମାଧବ (ଗୋମୁଖି କେଶବ) ଅଟନ୍ତି । ପ୍ରାଚୀତଟର ଦ୍ୱାଦଶ ମାଧବ, ଦ୍ୱାଦଶ ଶମ୍ଭୁ, ଦ୍ୱାଦଶ ଶକ୍ତି ପୀଠ, ଅଷ୍ଟାଦଶ ଋଷି ଆଶ୍ରମ ପ୍ରାଚୀତୀର୍ଥର ପ୍ରାଚୀନତାର ପ୍ରମାଣ ଦିଏ । ଆର୍ଯ୍ୟଋଷିମାନେ ପ୍ରାଚୀତଟକୁ ତପସାଧନାର ଶ୍ରେଷ୍ଠ ସ୍ଥାନଭାବେ ବାଛିଥିଲେ ଓ ପ୍ରାଚୀତୀର୍ଥ ପରିକ୍ରମା କରି ଆତ୍ମତୃପ୍ତି ପ୍ରାପ୍ତ ହୋଇଥିଲେ । ବୈଦିକ ଶାସ୍ତ୍ର ପୁରାଣରୁ ପବିତ୍ର ପ୍ରାଚୀ ସରସ୍ୱତୀଙ୍କ ମହିମା ଜାଣି ନିଜେ ଭଗବାନ ଶ୍ରୀରାମ, ଶ୍ରୀକୃଷ୍ଣ, ପଞ୍ଚୁପାଣ୍ଡବ, ଶ୍ରୀଚୈତନ୍ୟ ଦେବ, ଶ୍ରୀ ଶଙ୍କର ଦେବ, ଶ୍ରୀ ରାଧାରମଣ ଦେବଙ୍କ ଭଳି ଅଗଣିତ ସାଧୁସନ୍ଥ ସନ୍ୟାସୀ ଶ୍ରଦ୍ଧାଳୁ ଏ ତୀର୍ଥ ସ୍ଥଳୀ ପରିକ୍ରମାରେ ମନ ବଳାଇ ଥିଲେ । ଅଦ୍ୟାବଧି ସେସବୁର ସ୍ମାରକୀ ଏଠାରେ ଦେଖିବାକୁ ମିଳେ । ଭକ୍ତ ଜୟଦେବଙ୍କ ଆରାଧ୍ୟ ମାଧବ ଗ୍ରାମର ଶ୍ରୀ ମାଧବାନନ୍ଦ ଜୀଉ ପ୍ରଥମେ ଲଙ୍କା ପତି ରାବଣ ଓ ବିଭୀଷଣଙ୍କ ଆରାଧ୍ୟ ଥିଲେ । ପରେ ପୂଜକ ଦାନବ ଅରିରିଶ ସ୍ୱପ୍ନାଦେଶ ପାଇ ମାଧବାନନ୍ଦ ଜୀଉଙ୍କୁ ପ୍ରାଚୀଜଳରେ ଲୁଚାଇ ରଖି ଗୁପ୍ତ ପୂଜନରେ ଲିପ୍ତ ଥିଲା । ପଞ୍ଚପାଣ୍ଡବଙ୍କ ବନବାସ ସମୟରେ ପ୍ରାଚୀତୀର୍ଥ ପରିକ୍ରମା ଅବସରରେ ଶ୍ରୀକୃଷ୍ଣ ଏ ବିଷୟ ଜଣାଇ ଭୀମଙ୍କ ଦ୍ୱାରା ଅରିରିଶଙ୍କଠାରୁ ମାଧବାନନ୍ଦ ଜୀଉଙ୍କ ମଣିବିଗ୍ରହ ଉଦ୍ଧାର କରି ମାଘଶୁକ୍ଳ ଏକାଦଶୀ ଦିନ ମାଧବ ଗ୍ରାମରେ ପ୍ରତିଷ୍ଠା କରାଇ ନିତ୍ୟପୂଜାର ବିଧିବିଧାନ ଖଞ୍ଜି ଥିଲେ । ଏଥିପାଇଁ ମାଧବାନନ୍ଦ ଜୀଉଙ୍କୁ ଅରିରିଶ ମାଧବ, ଯୁଜେଷ୍ଟି ମାଧବ, ପ୍ରାଚୀମାଧବ ନାମରେ ସମ୍ବୋଧନ କରାଯାଏ ଓ ତାଙ୍କ ପ୍ରତିଷ୍ଠା ଦିବସ ମାଘଶୁକ୍ଳ ଏକାଦଶୀ ଦିନକୁ ଏଠାରେ ମାଧବ ଏକାଦଶୀଭାବେ ପାଳନ କରାଯାଏ । ଏବେ ମଧ୍ୟ ଏ ଦିବସରେ ମାଧବାନନ୍ଦ ଜୀଉଙ୍କ ଦର୍ଶନ ପାଇଁ ଅଗଣିତ ଶ୍ରଦ୍ଧାଳୁଙ୍କ ସମାବେଶ ଏଠାରେ ଦେଖିବାକୁ ମିଳେ ।

ପୁରାଣ ତଥ୍ୟରୁ ଜଣାପଡେ ବନବାସ ସମୟରେ ପ୍ରାଚୀତୀର୍ଥ ପରିକ୍ରମାରେ ଲିପ୍ତଥିବା ଭଗବାନ ଶ୍ରୀରାମଙ୍କୁ ଦେବର୍ଷି ନାରଦ ଜଣାଇ ଦେଲେ ଯେ ତାଙ୍କ ପିତା ସ୍ୱର୍ଗତ ଦଶରଥ ଋଷି ଅଭିଶାପରୁ ସ୍ୱର୍ଗଗମନ ସମ୍ଭବ ହେଉନାହିଁ । ଏଥିପାଇଁ ପବିତ୍ର ବୈଶାଖ ପୂର୍ଣ୍ଣିମା ଦିନ ପ୍ରାଚୀସ୍ନାନ ତର୍ପଣ ପୂର୍ବକ ପ୍ରାଚୀ ତଟେ ଶମ୍ଭୁ ସ୍ଥାପନର ପୁଣ୍ୟ ପିତାଙ୍କୁ ଅର୍ପଣ କରିବା ଅପରିହାର୍ଯ୍ୟ । ଏପରି କରନ୍ତେ ପିତା ଦଶରଥ ବିଷ୍ଣୁରଥ ଆରୂଢ଼ା ହୋଇ ଶ୍ରୀରାମଙ୍କୁ କଲ୍ୟାଣ କରି ବୈକୁଣ୍ଠ ଗମନ କଲେ । ଏବେ ମଧ୍ୟ ପ୍ରାଚୀତଟ ରାମେଶ୍ୱର ଶଂକୁପୀଠରେ ବୈଶାଖ ପୂର୍ଣ୍ଣିମା ବଣବୁଡ ପାଇଁ ଅଗଣିତ ଶ୍ରଦ୍ଧାଳୁଙ୍କ ସମାଗମ ଦେଖିବାକୁ ମିଳେ । ବୌଦ୍ଧଭିକ୍ଷୁମାନଙ୍କ ତପସ୍ଥଳୀ ପ୍ରାଚୀତଟ ହୋଇଥିବାରୁ

ବୁଦ୍ଧ ପୂର୍ଣ୍ଣିମାରେ ଏଠାରେ ପବିତ୍ର ପ୍ରାଚୀସ୍ନାନ, ତର୍ପଣ ଓ ପରିକ୍ରମଣକୁ ବୌଦ୍ଧ ଗ୍ରନ୍ଥରେ ମଧ୍ୟ ସ୍ୱତନ୍ତ୍ର ମାନ୍ୟତା ଦିଆଯାଇଛି । ଏବେ ମଧ୍ୟ ଏହି ପାବନ ସ୍ନାନ ଘାଟରେ ଚଣ୍ଡାଶୋକରୁ ଧର୍ମାଶୋକ କରାଇଥିବା କଳିଙ୍ଗ ବୌଦ୍ଧ ଭିକ୍ଷୁ ଉପଗୁପ୍ତଙ୍କ ଆଶ୍ରମ ଅନ୍ତିମ ସ୍ପର୍ଶ ନେଉଛି । ଏ ଆଶ୍ରମର ଅନ୍ତିମ କଳିଙ୍ଗ ବୌଦ୍ଧଭିକ୍ଷୁ ବୀର ସିଂହ ମହାପୁରୁଷ ଅଚ୍ୟୁତାନନ୍ଦଙ୍କୁ ଶୂନ୍ୟ ବିଦ୍ୟାର ସାଧନା ଶିଖାଇଥିବା ବୀରସିଂହ ଚଉତିଶା ବର୍ଣ୍ଣନାରୁ ଜଣାପଡେ ।

ପ୍ରାଚୀତଟର ଅପୁତ୍ରିକ ବ୍ରାହ୍ମଣ ଦମ୍ପତି ଜୟଦେବଙ୍କୁ ପୁତ୍ର ରୂପେ ପାଇବା ପାଇଁ ପବିତ୍ର ପ୍ରାଚୀତୀର୍ଥ ପରିକ୍ରମା ସହ ପବିତ୍ର ଅକ୍ଷୟ ତୃତୀୟାଦିନ ଗୋତୀର୍ଥ ସ୍ନାନ ସାରି ଅମେରେଶ୍ୱର ଶମ୍ଭୁ ପୂଜନ କରିଥିଲେ । ଫଳରେ ଠିକ୍ ପରବର୍ଷ ଅକ୍ଷୟ ତୃତୀୟାରେ ଶ୍ରୀଜୟଦେବ ଜନ୍ମ ନେଇଥିଲେ ଓ ବିଶ୍ୱ ପ୍ରସିଦ୍ଧ ଭକ୍ତିଭାବ ଭରା ଗ୍ରନ୍ଥ ଶ୍ରୀଗୀତଗୋବିନ୍ଦ ରଚନା କରିବାରେ ସମର୍ଥ ହୋଇଥିଲେ । ନିଜେ ଶ୍ରୀଜଗନ୍ନାଥ ନିତ୍ୟ ଶ୍ରୀଗୀତଗୋବିନ୍ଦ ଶ୍ରବଣ ପାଇଁ ନିଜସେବା ମଧ୍ୟରେ ଏହାକୁ ଶ୍ରେଷ୍ଠ ସେବାର ମାନ୍ୟତା ପ୍ରଦାନ କରିଥିଲେ । ଆଜି ମଧ୍ୟ ପ୍ରାଚୀତଟ ମଠ, ମନ୍ଦିର, ଦେବାଳୟ, ଶ୍ରଦ୍ଧାଳୁଙ୍କ ଦେବ ଆସ୍ଥାନରେ ଶ୍ରୀଗୀତଗୋବିନ୍ଦ ଗାୟନକୁ ଗୁରୁତ୍ୱ ଦିଆଯାଏ । ଓଡ଼ିଶା ରାଜ୍ୟ ସରକାର ମଧ୍ୟ ଅକ୍ଷୟ ତୃତୀୟା ଅବସରରେ ତ୍ରିଦିବସୀୟ ଶ୍ରୀଜୟଦେବ ଜୟନ୍ତୀ ସଂକୀର୍ତ୍ତନ ଯାତ୍ରା ୧୯୯୨ ମସିହାରୁ ପରିଚାଳନା କରିଆସୁଛନ୍ତି । ଶ୍ରୀଚୈତନ୍ୟ ଦେବଙ୍କ ପରେ ୫୦୦ ବର୍ଷଧରି ସୁପ୍ତଥିବା ପ୍ରାଚୀତୀର୍ଥ ପରିକ୍ରମାକୁ ନୂତନ ଜୀବନ ମିଳିଗଲା । ଉତ୍କଳର ଗଜପତିମାନେ ପବିତ୍ର ପ୍ରାଚୀ ପରିକ୍ରମାକୁ ଗୁରୁତ୍ୱ ଦେଇ ପ୍ରାଚୀପୀଠ, ଘାଟ, ମଠ ବିକାଶ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବା ସହ ସପ୍ତ ଦିବସୀୟ ପ୍ରାଚୀ ପରିକ୍ରମାକାରୀଙ୍କ ପାଇଁ ସବୁ ସାଧନ ଯୋଗାଇ ଦେଉଥିଲେ । ଏ ଦିଗରେ କଳିଙ୍ଗ ଗଜପତିଙ୍କ ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ସେହି ସମୟର ନବକଳେବର ପରିଚାଳନାର ପ୍ରତ୍ୟେକ ଦାୟିତ୍ୱ ନେଇ ବନଯାଗ ତପସ୍ଥଳୀ ଦେଉଳି ମଠରେ ଭବ୍ୟ ସାତ ଶେଣିଆ ପ୍ରସସ୍ଥ ଭବନ ଗଢାଇ ଥିଲେ । ଏବେ ମଧ୍ୟ ଏ ଭବନ ସମ୍ମୁଖରେ ଥିବା ସିଂହ ମୂର୍ତ୍ତିଦ୍ୱୟ ଏହାର ସ୍ମାରକୀ ବହନ କରେ । ଅନ୍ୟ ସମୟରେ ଏ ସ୍ଥାନଟି ଗଜପତିଙ୍କ ତଟସୁରକ୍ଷା ବାହିନୀ ପାଇକ ସମାବେଶ ପାଇଁ ବ୍ୟବହୃତ ହେଉଥିଲା । ପ୍ରାଚୀ ତଟ ଗୋଲରାଗଡ ସାମନ୍ତ ବଂଶାନୁକ୍ରମେ ଗଜପତିଙ୍କ ତଟ ସୁରକ୍ଷା ପାଇକ ବାହିନୀର ସେନାପତି ପଦ ତୁଲାଉ ଥିଲେ । ଏ ମହାନ ଐତିହ୍ୟକୁ ସ୍ମରଣ କରି ପ୍ରାଚୀତଟ ଗ୍ରାମବାସୀ ପ୍ରାଚୀ ପରିକ୍ରମାକାରୀଙ୍କ ସେବାରେ ତ୍ରୁଟି ରଖୁ ନାହାନ୍ତି । ପ୍ରତିବର୍ଷ ଫାଲଗୁନ କୃଷ୍ଣ ପକ୍ଷ ପଞ୍ଚମୀଠାରୁ ଏକାଦଶୀ (ପଙ୍କୋଦ୍ଧାର ଏକାଦଶୀ) ପର୍ଯ୍ୟନ୍ତ ସପ୍ତଦିବସ ବ୍ୟାପୀ ପରିଚାଳିତ ପବିତ୍ର ପ୍ରାଚୀ ପରିକ୍ରମା ଅବସରରେ ପରିକ୍ରମା ପଦଯାତ୍ରାରେ ଆଗତ ସାଧୁସନ୍ଥ ଶ୍ରଦ୍ଧାଳୁମାନଙ୍କ ଦର୍ଶନ ପୂଜନ ସତ୍‌ସଙ୍ଗ ସୌଭାଗ୍ୟ ପ୍ରାପ୍ତି ପାଇଁ ପ୍ରାଚୀତଟବାସୀଙ୍କୁ ଉତ୍କଣ୍ଠାର ସହ ଏକ ବର୍ଷ ଧରି ଅପେକ୍ଷା କରିବାକୁ ପଡୁଛି । ଏହା ଆମର ଓ ଆମ ଭବିଷ୍ୟତ ପିଢିଙ୍କର ଆଧ୍ୟାତ୍ମିକ ଉନ୍ମେଷର ଏକ ପ୍ରମୁଖ କାରଣ ମନେ କରାଯାଏ ।

ଆଡଭୋକେଟ
କାକଟପୁର, ପୁରୀ



# ଭାଷା ଓ ଭାଷାତତ୍ତ୍ୱ

**ଅଧ୍ୟାପିକା ସୌଦାମିନୀ ବେହେରା**

ଭାଷାର ବ୍ୟବହାର ଅନୁସାରେ ପରିଚୟର ସ୍ୱରୂପ ନିର୍ଣ୍ଣିତ ହୁଏ । ମନର ଲୁକ୍କାୟିତ ଭାବନାକୁ ଅନ୍ୟ ଆଗରେ ପରିପ୍ରକାଶ କରିହୁଏ ଭାଷା ମାଧ୍ୟମରେ । ପୁରାତନ ଯୁଗରେ ବିଭିନ୍ନ ସାଂକେତିକ ଚିହ୍ନ ଦ୍ୱାରା ଜଣେ ଆଉ ଜଣକୁ ନିଜର ମନର କଥାକୁ ବ୍ୟକ୍ତ କରୁଥିଲା । କିନ୍ତୁ ଏହି ମାଧ୍ୟମ ଯଥେଷ୍ଟ ନ ଥିଲା । ଧୀରେ ଧୀରେ ଭାଷାର ଜନ୍ମଲାଭ ହେଲା । ସ୍ୱାଭିମାନ ଓ ରୁଚି ସମ୍ପନ୍ନର ଏକ ସମୃଦ୍ଧଶାଳୀ ଦେଶ ଅଟେ ଭାରତ । କେଉଁ ଆବହମାନ କାଳରୁ ଏ ଦେଶର ମାଟି, ପାଣି, ପବନରେ ଭରି ରହିଛି ପବିତ୍ରତାର ମହକ । ମୁନିଋଷି, ପଣ୍ଡିତଗଣ ଓ ସ୍ୱୟଂ ଈଶ୍ୱରଙ୍କ ଆବାସସ୍ଥଳୀ ଏହି ଭାରତ ଭୂମି ।

ଯୁଗ ପରେ ଯୁଗ ଚାଲିଛି ସମୟର ଇସାରାରେ । ସମୟ ସହିତ ତାଳ ଦେଇ ଆଗକୁ ଚାଲିଛି ମନୁଷ୍ୟଜାତି । ନିଜର ବିକାଶ ସହିତ ସମାଜର କ୍ରମବିକାଶ ଘଟିଥାଏ । ପ୍ରାକ୍ ଐତିହାସିକ ଯୁଗରେ ଭାରତର ଚିନ୍ତା, ଚେତନା, ଶକ୍ତିର ମୁଖ୍ୟ ଉତ୍ସରୁ ଭାଷାର ଉଦ୍‌ଭାବନ ହେଲା । ଭାରତର ଭୌଗଳିକ ଚିତ୍ରରେ ଅନେକ ଧର୍ମ, ଭାଷା, ଗୋଷ୍ଠୀ, ସଂସ୍କୃତି, ଐତିହ୍ୟର ମିଳନ ଥାଏ । ବିଭିନ୍ନତା ମଧ୍ୟରେ ଏକତା ହେଉଛି ଭାରତର ମୂଳମନ୍ତ୍ର । ଏକତାର ବଳ ହିଁ ଏ ଜାତିକୁ ସୁଦୃଢ଼ କରିପାରିଛି । ଭାଷାରୁ ଜାଣିହୁଏ ଭାରତର ମାନଚିତ୍ର । ଏହାର ପାଣି, ପବନ, ଗଛଲତାରେ ଭରିରହିଛି ଭାଷା ଓ ସାହିତ୍ୟର ବିଭିନ୍ନ ବିଭବ ।

ଭାରତୀୟ ଭାଷାଗୁଡ଼ିକ ମୁଖ୍ୟତଃ ୩ ଭାଗରେ ବିଭକ୍ତ କରାଯାଇଛି । ଯଥା : ଦ୍ରାବିଡଭାଷା, ଅଷ୍ଟ୍ରିକଭାଷା ଓ ଆର୍ଯ୍ୟଭାଷା ।

ପୁରା କାଳରେ ମନୁଷ୍ୟର ବିକାଶଶୈଳୀ ଆଦୌ ସଭ୍ୟ ନଥିଲା । ଧୀରେ ଧୀରେ ମସ୍ତିଷ୍କର ଚେତନାରେ ଶକ୍ତିର ଉଦ୍ରେକ ଘଟିଲା । କାଳକ୍ରମେ ଏହା ଏକ ସଭ୍ୟତାର ରୂପ ନେଲା । ଗୋଟିଏ ସଭ୍ୟତା କେତେ ସଭ୍ୟ, ତା'ର ସଂସ୍କାର, ଶିକ୍ଷା ଓ ଭାଷାରୁ ଜଣାଯାଏ ।

୧. ଦ୍ରାବିଡ ଭାଷାରେ ରହିଛି ତାମିଲ, ତେଲୁଗୁ, ମାଲାୟାଲମ ଓ କନ୍ନଡୀ ।

୨. ଅଷ୍ଟ୍ରିକ ଭାଷାତତ୍ତ୍ୱବିତ୍‌ମାନେ କନ୍ଧ, କୋହ୍ଲ, ଶବର, ସାନ୍ତାଳ, ମୁଣ୍ଡା, ଗଣ୍ଡ ପ୍ରଭୃତି ଆଦିମ ଅଧିବାସୀମାନଙ୍କୁ ଅଷ୍ଟ୍ରିକ ଭାଷାରେ ଅନ୍ତର୍ଭୁକ୍ତ କରିଛନ୍ତି ।

୩. ଭାରତୀୟ ଆର୍ଯ୍ୟଭାଷା – ଏହା ୩ ଭାଗରେ ବିଭକ୍ତ କରାଯାଇଛି । ଯଥା–

କ) ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷା (ଖ୍ରୀ.ପୂ. ୧୫୦୦ – ଖ୍ରୀ.ପୂ. ୫୦୦)

ଖ) ମଧ୍ୟ ଭାରତୀୟ ଆର୍ଯ୍ୟଭାଷା ଖ୍ରୀ.ପୂ. ୫୦୦ – ଖ୍ରୀ. ୧୦୦୦)

ଗ) ଆଧୁନିକ ଭାରତୀୟ ଆର୍ଯ୍ୟଭାଷା (ଖ୍ରୀ. ୧୦୦୦ରୁ ଏ ପର୍ଯ୍ୟନ୍ତ)

୪. କ) ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷାକୁ ୨ ଟି ପର୍ଯ୍ୟାୟରେ ଭାଗ କରାଯାଇଛି –

୧. ବୈଦିକ ସଂସ୍କୃତ (ଖ୍ରୀ.ପୂ. ୧୫୦୦– ଖ୍ରୀ.ପୂ. ୮୦୦)

୨. ଲୌକିକ ସଂସ୍କୃତ (ଖ୍ରୀ.ପୂ. ୮୦୦ - ଖ୍ରୀ.ପୂ. ୫୦୦)

ଖ) ମଧ୍ୟ ଭାରତୀୟ ଆର୍ଯ୍ୟଭାଷା - (ଖ୍ରୀ.ପୂ. ୫୦୦ - ଖ୍ରୀ.ପୂ. ୧୦୦୦) ଏହାର ୩ଟି ସ୍ତର ରହିଛି।

୧. ପ୍ରଥମ ସ୍ତର : ପାଲି (ଖ୍ରୀ.ପୂ. ୫୦୦ - ଖ୍ରୀ.ପୂ. ୨୦୦)

୨. ଦ୍ୱିତୀୟ ସ୍ତର : ପ୍ରାକୃତ (ଖ୍ରୀ.ପୂ. ୨୦୦ - ଖ୍ରୀ. ୫୦୦)

୩. ତୃତୀୟ ସ୍ତର : ଅପଭ୍ରଂଶ (ଖ୍ରୀ. ୫୦୦ - ଖ୍ରୀ. ୧୦୦୦)

Dr. Walsorଙ୍କ ମତରେ 'ପାଲି' ଶବ୍ଦଟି ପାଟଳି ଶବ୍ଦରୁ ଆସିଅଛି। 'ପାଲି' ପାଟଳି ପୁତ୍ରର ଭାଷା। ପ୍ରାକୃତ ଭାଷାକୁ ୫ ଭାଗରେ ବିଭକ୍ତ କରାଯାଇଛି ସେଗୁଡିକ ହେଲା–

ମହାରାଷ୍ଟ୍ରୀ, ଶୌରସେନୀ, ମାଗଧୀ, ପୈଶାଚୀ ଓ ଅର୍ଦ୍ଧମାଗଧୀ। ପ୍ରାକୃତ ଭାଷାରୁ ଅପଭ୍ରଂଶ ଭାଷାର ସୃଷ୍ଟି। ତେଣୁ ପୂର୍ବୋକ୍ତ ୫ ଟି ପ୍ରାକୃତରୁ ୫ ଗୋଟି ଅପ୍ରଭଂଶ ଭାଷା ବିକଶିତ ହୋଇଥିଲା। ଯଥା :

ମହାରାଷ୍ଟ୍ରୀ ପ୍ରାକୃତ - ମହାରାଷ୍ଟ୍ରୀ ଅପଭ୍ରଂଶ
ଶୌରସେନୀ ପ୍ରାକୃତ - ଶୌରସେନୀ ଅପଭ୍ରଂଶ
ମାଗଧୀ ପ୍ରାକୃତ - ମାଗଧୀ ଅପଭ୍ରଂଶ
ପୈଶାଚୀ ପ୍ରାକୃତ - ପୈଶାଚ ଅପଭ୍ରଂଶ
ଅର୍ଦ୍ଧମାଗଧୀ ପ୍ରାକୃତ - ଅର୍ଦ୍ଧମାଗଧୀ ଅପଭ୍ରଂଶ

ଓଡ଼ିଆ ଭାଷାର ବିକାଶକ୍ରମକୁ ୪ଗୋଟି ପର୍ଯ୍ୟାୟରେ ଭାଗ କରାଯାଇଛି।

୧. ପ୍ରନ୍ ଓଡ଼ିଆ (ଖ୍ରୀ. ୧୦୦୦- ଖ୍ରୀ. ୧୪୦୦)

୨. ପ୍ରାଚୀନ ଓଡ଼ିଆ (ଖ୍ରୀ. ୧୪୦୦- ଖ୍ରୀ. ୧୬୦୦)

୩. ମଧ୍ୟ ଓଡ଼ିଆ (ଖ୍ରୀ. ୧୬୦୦ - ଖ୍ରୀ. ୧୮୫୦)

୪. ଆଧୁନିକ ଓଡ଼ିଆ (ଖ୍ରୀ. ୧୮୫୦ ରୁ ଆଜି ପର୍ଯ୍ୟନ୍ତ)

୧. ପ୍ରନ୍ ଓଡ଼ିଆ ଭାଷାର ସନ୍ଧାନ ମିଳିଥାଏ, ଭୌମକର ଓ ଗଙ୍ଗବଂଶୀ ରାଜାମାନଙ୍କ ଖୋଦିତ ଅଭିଲେଖଗୁଡ଼ିକରେ । ଓ ୨୩ ଜଣ ସିଦ୍ଧାଚାର୍ଯ୍ୟଙ୍କ ଦ୍ୱାରା ଲିଖିତ ୮୪ ଗୋଟିଏ ଚର୍ଯ୍ୟାଗୀତିକାରେ।

୨. ପ୍ରାଚୀନ ଓଡ଼ିଆ ସାରଳା ଦାସଙ୍କ ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଓ ପଞ୍ଚସଖା ସାହିତ୍ୟରେ ଦେଖିବାକୁ ମିଳେ।

୩. ମଧ୍ୟ ଓଡ଼ିଆର ପ୍ରସିଦ୍ଧ କୃତୀ ହେଉଛି ମାଦଳାପାଞ୍ଜି । ଏଥିରେ ଯାବନିକ ଶବ୍ଦର ବ୍ୟବହାର ଦେଖିବାକୁ ମିଳେ।

୪. ଓଡ଼ିଆ ଭାଷା ଆଧୁନିକ ଯୁଗରେ ବିଭିନ୍ନ ବୈଦେଶିକ ଭାଷା ସଂସ୍ପର୍ଶରେ ଆସି ଆହୁରି ସମୃଦ୍ଧ ଓ ପରିପୁଷ୍ଟ ହୋଇଛି। ଭାରତକୁ ପର୍ତ୍ତୁଗୀଜ୍, ଫରାସୀ, ଓଲନ୍ଦାଜ, ଇଂରେଜ ଜାତିର ଆଗମନରେ ବିଦେଶୀ ଭାଷା ବିଭବ ଓଡ଼ିଆ ଭାଷା ଭଣ୍ଡାରକୁ ସମୃଦ୍ଧ କରିପାରିଛି।

ଚର୍ଯ୍ୟାପଦ - ଓଡ଼ିଆ ସାହିତ୍ୟର ପ୍ରାଥମିକ ନିଦର୍ଶନ ରୂପେ ଯେଉଁ ଲିଖିତ ସାହିତ୍ୟ ପରିଦୃଷ୍ଟ ହୁଏ ତାହା ହେଉଛି ଚର୍ଯ୍ୟାପଦ। ଏହାକୁ ଚର୍ଯ୍ୟାଗୀତିକା ମଧ୍ୟ କୁହାଯାଏ। ଲୁଇପାଦ, କାହ୍ନୁପାଦ, ଶବରୀପାଦ ପ୍ରଭୃତି ସିଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ରଚିତ ଗୀତିକାଗୁଡ଼ିକୁ ଚର୍ଯ୍ୟାଗୀତିକା କୁହାଯାଏ। ଚର୍ଯ୍ୟାର ଅର୍ଥ ଆଚରଣ। ଏହା ଖ୍ରୀଷ୍ଟାବ୍ଦ ୭୦୦ ରୁ ଖ୍ରୀ. ୧୨୦୦ ମଧ୍ୟରେ ନିର୍ଣ୍ଣୟ କରାଯାଇଛି। ଚର୍ଯ୍ୟାପଦର ଭାଷାକୁ ସାନ୍ଧ୍ୟଭାଷା କୁହାଯାଏ। ଶ୍ରୀ ହରପ୍ରସାଦ ଶାସ୍ତ୍ରୀ ଲେଖିଛନ୍ତି 'ସାନ୍ଧ୍ୟଭାଷା ଅର୍ଥ ଆଲୋ ଆଁଧାରେ ଭାଷା।' ଏହି ଚର୍ଯ୍ୟାଗୀତିକାରେ ଅନେକ ପ୍ରାଚୀନ ଓଡ଼ିଆ ଶବ୍ଦର ସନ୍ଧାନ ମିଳିଥାଏ। ଯଥା–ଅଦ୍ଭୂଅ (ଅଦ୍ଭୂତ) ଆଳେ (ଆଳରେ) ଏକେଲି (ଏକେଲା) କିମ୍ପି (କିମ୍ପା) ଗୁହାଡି (ଗୁହାରି) ପାଣ୍ଡିଆ (ପଣ୍ଡିତ) ଇତ୍ୟାଦି।

ଲିପି ଭାଷା ଓ ସାହିତ୍ୟକୁ ବଞ୍ଚାଇ ରଖେ। ବାଚିକ ଧ୍ୱନିକୁ ଯାହା ସାହାଯ୍ୟରେ ରୂପ ପ୍ରଦାନ କରାଯାଏ ତାହାକୁ ଲିପି କୁହାଯାଏ। ମନୁଷ୍ୟର ଯାହା ମନ ମଧ୍ୟରେ ଥାଏ ତାହାକୁ ଭାଷା ମାଧ୍ୟମରେ ବ୍ୟକ୍ତ କରିଥାଏ। ଏହି କଥିତ ଭାବ, ଚିନ୍ତା ଓ ଚେତନା ଲିପିଦ୍ୱାରା ହିଁ ଲିଖିତ ହୋଇଥାଏ। ଲିପି କହିଲେ ବର୍ଣ୍ଣ ବା ଅକ୍ଷରକୁ ବୁଝାଏ।

ଓଡ଼ିଆ ଲିପି ଯେଉଁସବୁ ସ୍ତର ଦେଇ ଉନ୍ନତ ହୋଇଅଛି ତାହା ୬ ପ୍ରକାରର ହୋଇଥାଏ -

୧. ବ୍ରାହ୍ମୀଲିପି (ଖ୍ରୀ. ପୂ. ୩ୟରୁ ଖ୍ରୀ. ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ)

୨. ଗୁପ୍ତଲିପି (ଖ୍ରୀ. ତୃତୀୟରୁ ୬ଷ୍ଠ ପର୍ଯ୍ୟନ୍ତ)

୩. ସୂକ୍ଷ୍ମକୋଣ ଲିପି (ଖ୍ରୀ. ୬ଷ୍ଠରୁ ଏକାଦଶ ପର୍ଯ୍ୟନ୍ତ)
୪. ମାଗଧୀ ଲିପି (ଖ୍ରୀ. ଏକାଦଶ – ଚତୁର୍ଦ୍ଦଶ)
୫. ପ୍ରାଚୀନ ଓଡ଼ିଆ ଲିପି (ଖ୍ରୀ. ଚତୁର୍ଦ୍ଦଶ – ଷୋଡଶ)
୬. ଆଧୁନିକ ଓଡ଼ିଆ ଲିପି (ଖ୍ରୀ. ଷୋଡଶରୁ ଏ ପର୍ଯ୍ୟନ୍ତ)

ଓଡ଼ିଆ ଭାଷାର ବହୁ ଉତ୍‌ଥାନ ଓ ପତନ ପରେ ଓଡ଼ିଆ ଭାଷାକୁ ଏକ ସମୃଦ୍ଧଶାଳୀ ଭାଷାର ମର୍ଯ୍ୟାଦା ସାରା ଭାରତରେ ମିଳିଅଛି। ଓଡ଼ିଆ ଭାଷା ବିଧିବଦ୍ଧ ଭାବରେ ଶାସ୍ତ୍ରୀୟ ମାନ୍ୟତା ଲାଭ କରିଅଛି। ଓଡ଼ିଶା ଇତିହାସରେ ଏହି ସୁଖଦ ଘଟଣାଟି ଏକ ଅବିସ୍ମରଣୀୟ ଦିବସ ହୋଇ ଚିରକାଳ ରହିବ। ସମ୍ବିଧାନ ହେଉଛି ଭାରତର ଆତ୍ମା। ସମ୍ବିଧାନରେ ମଧ ଭାଷା ବିଷୟରେ ଲେଖାଯାଇଛି ଭାଗ ୧୭ରେ, ଧାରା ୩୪୩ରୁ ୩୫୧ ଯାଏଁ।

ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତାର ସ୍ୱାଦ ପାଇବା ପାଇଁ କେତେ ଯେ କଷ୍ଟ ସ୍ୱୀକାର କରିବାକୁ ପଡିଛି ଓ ଓଡ଼ିଆ ଭାଷାର ଗବେଷଣାଗାରରେ କେତେ ବିଦୁଷୀ ଓ ପଣ୍ଡିତ, ସାହିତ୍ୟିକ ତଥା କବିମାନେ ସାହିତ୍ୟ କ୍ଷେତ୍ରରେ ଉତ୍ସର୍ଗୀକୃତ ହୋଇଥିଲେ। ସେମାନଙ୍କର ଓଡ଼ିଆବାସୀଙ୍କୁ ବିରାଟ ଅବଦାନର ଏହା ନିଛକ ଚିତ୍ର। ସେମାନେ ସର୍ବଦା ଆମ ପାଇଁ ନମସ୍ୟ।

୧୯୩୬ ମସିହା ଅପ୍ରେଲ୍ ପହିଲା ଦିନ ଭାଷାଭିତ୍ତିରେ ଓଡ଼ିଶା ସମଗ୍ର ଭାରତରେ ସ୍ୱତନ୍ତ୍ର ପ୍ରଦେଶ ଭାବରେ ମାନ୍ୟତା ପାଇଥିଲା। ଏହି ସଫଳତା ପଛରେ ଉତ୍କଳ ସମ୍ମିଳନୀ (୧୯୦୩) ଅନୁଷ୍ଠାନର ପ୍ରଧାନ ଭୂମିକା ଥିଲା। ଫକୀର ମୋହନ ସେନାପତି ଓ ଗୌରୀ ଶଙ୍କରଙ୍କ ଉଦ୍ୟମରେ ପ୍ରଥମେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଉଦ୍ୟମ ଚାଲିଥିଲା। ବିଂଶ ଶତାବ୍ଦୀର ଆରମ୍ଭରେ ଉତ୍କଳଗୌରବ ମଧୁସୂଦନଙ୍କ ଅଧିନାୟକତ୍ୱରେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରି ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ ମୂଳରେ ନିହିତ ଥିଲା ଓଡ଼ିଆ ଜାତିର ଅସ୍ମିତାର ଉନ୍ମେଷ। ବିଶିଷ୍ଟ ଭାଷାତତ୍ତ୍ୱବିତ୍‌ଗଣ ଓଡ଼ିଆଭାଷାର ପ୍ରାଚୀନତା, ମୌଳିକତା ଓ ବୈଶିଷ୍ଟ୍ୟ ବିଭିନ୍ନ ସମୟରେ ଆଲୋଚନା କରିଛନ୍ତି।

ଓଡ଼ିଆ ଭାଷା ଅଧିକ ଋଦ୍ଧିମନ୍ତ ହୋଇଅଛି ଓଡ଼ିଆ ସାହିତ୍ୟ ମାଧ୍ୟମରେ । ସମାଜର ସାଧାରଣ ଲୋକଙ୍କର କଥିତଭାଷା ହେଉଛି ସାହିତ୍ୟ। ଯେକୌଣସି ସାହିତ୍ୟର ପ୍ରାରମ୍ଭିକ ରୂପ ହେଉଛି ଲୋକସାହିତ୍ୟ। ଲୋକସାହିତ୍ୟ ସମାଜର ସମ୍ପତ୍ତି। ଲୋକ ଜୀବନର ଆଭିମୁଖ୍ୟ ପ୍ରତିବିମ୍ବିତ ହୋଇଥାଏ ସାହିତ୍ୟରେ । ଓଡ଼ିଆରେ ବହୁ ଢ଼ଗଢ଼ମାଳି ପ୍ରଚଳିତ। ପ୍ରାୟ ଗାଁମାନଙ୍କରେ ଏହାର ପ୍ରଚଳନ ଅଧିକ ଥାଏ। ଏହି ଢ଼ଗଢ଼ମାଳିରେ ଆପଣାପଣ, ନିଛକ ସମାଜର ଚିତ୍ର ଓ ଘଟଣା ସହିତ ଖାପଖୁଆଉଥିବା ବିଷୟର ଉପାଦାନଗୁଡ଼ିକ ଭରପୂର ହୋଇ ରହିଥାଏ। ଉଦାହରଣ –

‘ହାତୀ ବନସ୍ତରେ ବୁଲୁଥିଲେ ବି ରାଜାଙ୍କର।’
‘ବସି ଖାଇଲେ ନଈ ବାଲି ସରେ।’
‘ଆପଣା ସୁନା ଭେଣ୍ଡି’ ଇତ୍ୟାଦି।

କାନ୍ଦଣାଗୀତ, ଚାଷୀଗୀତ, ହଳୁଆଗୀତ ଆଦିର ଆଦର ଏବେ ପର୍ଯ୍ୟନ୍ତ ରହିଅଛି। ଦେଶୁଆ ଓ ଗାଉଁଲି ଶବ୍ଦର ବ୍ୟବହାର ଏହି ଗୀତମାନଙ୍କରେ ହୋଇଥାଏ। ଏହିପରି ଶବ୍ଦମାନଙ୍କର ଯେପରି ବିଲୋପ ନଘଟୁ ଏହା ସାହିତ୍ୟିକଗଣ ଦୃଷ୍ଟି ଦେବା ଉଚିତ୍। ଯେଉଁ ବ୍ୟକ୍ତିର ଭାଷା ଯେତେ ମାର୍ଜିତ, ସେହି ବ୍ୟକ୍ତିର ବ୍ୟକ୍ତିତ୍ୱର ପରିଚୟ ଉତ୍ତମ ବୋଲି ତାହା ସମାଜରୁ ମିଳିଥାଏ। ଭାଷା ହେଉଛି ଗହନ ବନର ଅସରନ୍ତି ଭଣ୍ଡାର। ଭାଷାତତ୍ତ୍ୱ ବିତ୍, ସାହିତ୍ୟିକ, କବି, ଲେଖକ, ପ୍ରାବନ୍ଧିକ, ସମାଲୋଚକଗଣ ଉଚିତ୍ ଭାଷା ପ୍ରୟୋଗ କରି ଅନେକ ଶିକ୍ଷଣୀୟ ବିଷୟ ଏ ସମାଜକୁ ଭେଟି ଦେଇଛନ୍ତି ।

ଶେଷରେ ଏତିକି କୁହାଯାଇପାରେ, ଦୀର୍ଘ ବର୍ଷର ଭାଷାସୁରକ୍ଷା ଓ ଭାଷା ଆନ୍ଦୋଳନର ଦୀର୍ଘସୂତ୍ରୀ ସଂଗ୍ରାମର ଅନ୍ତ ଘଟିଛି। ଏବେ ସମୟ ଆସିଛି ନିଜେ ନିଜେ ଆମେ ସଚେତନ ହେବା। ଓଡ଼ିଆ ଭାଷା ଆଜି କି କାଲିର ଭାଷା ନୁହେଁ। ଏହା ଦୀର୍ଘ ବର୍ଷ ପୂର୍ବର ଗୋଟିଏ ମର୍ଯ୍ୟାଦାପୂର୍ଣ୍ଣ ଭାଷା ଅଟେ। ସେଥିପାଇଁ ସାହିତ୍ୟିକ, କବିବୃନ୍ଦ ଓଡ଼ିଆ ଭାଷା ଓ ସାହିତ୍ୟର ଗନ୍ତାଘରକୁ ଉଜ୍ଜୀବିତ କରିଛନ୍ତି, ସେମାନେ ହେଲେ ନବଜାଗରଣ ପର୍ବର ସାହିତ୍ୟ ସାଧକଗଣ, ସମକାଳୀନ ସାହିତ୍ୟ ସାଧକଗଣ, ସତ୍ୟବାଦୀ ଲେଖକ ଗୋଷ୍ଠୀ, ସମକାଳୀନ ଲେଖକ ଗୋଷ୍ଠୀ, ସବୁଜ ଲେଖକ ଗୋଷ୍ଠୀ, ସମସାମୟିକ ସାହିତ୍ୟଗଣ, ଓଡ଼ିଆ ଔପନ୍ୟାସିକଗଣ, ଓଡ଼ିଆ ଗାଳ୍ପିକଗଣ, ସ୍ୱାଧୀନତା ପରବର୍ତ୍ତୀ

ଓଡ଼ିଆ ଗୀତି କବିତା ଓ ସାଂପ୍ରତିକ ଓଡ଼ିଆ ଗୀତି କବି ଗଣ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ।

ଏହି ପବିତ୍ର ମାଟି ସମସ୍ତଙ୍କୁ ଛୁଇଁ ପାରିଛି। ଏହାର ପ୍ରକୃତିଭରା ସୌନ୍ଦର୍ଯ୍ୟ, ଉଚ୍ଚ ସଂସ୍କାର, ସଂସ୍କୃତି, ଭାଷା, ଜାତିକୁ ସମ୍ମାନ ଜଣାଇବା ଆମ ଓଡ଼ିଆବାସୀଙ୍କ କର୍ତ୍ତବ୍ୟ। ଭାଷା ଓ ସାହିତ୍ୟକୁ ବଞ୍ଚାଇବାକୁ ହେଲେ ପ୍ରତ୍ୟେକ ଓଡ଼ିଆଙ୍କ ଘରେ ଓଡ଼ିଆ ଭାଗବତ ରାମାୟଣ, ଗୀତା, ଲକ୍ଷ୍ମୀପୁରାଣ ପ୍ରଭୃତି ଧର୍ମପୁସ୍ତକଗୁଡ଼ିକ ପଠନ କରିବା ନିହାତି ଆବଶ୍ୟକ। ଫଳରେ ଓଡ଼ିଆ ଭାଷା ବଞ୍ଚି ରହିବା ସହିତ ମନରେ ସଦା ଆଧାତ୍ମିକ ଭାବନା ସୃଷ୍ଟି ହେବାରେ ଏହା ସହାୟକ ହେବ। ଆମେ ନିଜର ଭାଷା ବଞ୍ଚାଇବା ସହିତ ଅନ୍ୟମାନଙ୍କର ଭାଷା, ସଂସ୍କୃତି, ଧର୍ମକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିବା। ଫଳରେ ଅନ୍ୟମାନଙ୍କର ଭାଷା ଓ ସଂସ୍କୃତିର ସୁରକ୍ଷା ସହିତ ଆମ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ସଂସ୍କାର ଚିରକାଳ ପାଇଁ ଦେଶ ବିଦେଶରେ ଅମ୍ଳାନ ହୋଇରହିବ।

ରାଜନୀତି ବିଜ୍ଞାନ ବିଭାଗ
ରାଜାବଜାର, ଖୁଣ୍ଟିଆଗଳି
ମୟୂରଭିଲ୍ଲା, ଜଟଣୀ, ଖୋର୍ଦ୍ଧା

# ସ୍ୱତନ୍ତ୍ର ଓଡ଼ିଶା

**ସରୋଜ ରଞ୍ଜନ ପଟ୍ଟନାୟକ**

ଅନେଇ ରହିଛି ଅପ୍ରେଲ ପହିଲା
ଖୁସିରେ ଓଡ଼ିଆ ଉଠୁଛି ମାତି
ଛତିଶରୁ ଆମେ ସ୍ୱତନ୍ତ୍ର ହୋଇଛେ
ପରିଚୟ ଆମ ଓଡ଼ିଆ ଜାତି ।
ଭାଷା ପାଇଅଛି ଶାସ୍ତ୍ରୀୟ ମାନ୍ୟତା
ଗରବେ ଆମେ ଫୁଲେଇ ଛାତି
ଅତୀତ କଥାକୁ ବଖାଣି ବସିଲେ
ବାରି ପଡିଯାଏ ଅନେକ ସ୍ମୃତି ।
ଓଡ଼ିଆ ପାଇକ ନାଁ ଶୁଣିଦେଲେ
ଭୟରେ ଶତ୍ରୁର ଥରୁଥିଲା ଛାତି
ସାଧବ ପୁଅ ବୋଇତ ମେଲାଇ
ଯାଉଥିଲା ଦିନେ ବିଦେଶ ମାଟି ।

ଧନରତ୍ନ ସବୁ ବୋହି ଆଣୁଥିଲା
ଦେଶର ପ୍ରଗତି ହେଉଥିଲା
ଜାଭା, ସୁମିତ୍ରାକୁ ବୋଇତ ଧରି
ବେପାର ବଣିଜ କରୁଥିଲା ।
ଭଗ୍ନ କୋଣାରକ ରହିଛି ସାକ୍ଷୀ
ଜୀବନ୍ତ କରିଛି ପଥର ମୂର୍ତ୍ତିକୁ
ଦେଖୁ ଦେଖୁ ଆଖି ଯାଉଛି ଲାଖି
ଆଗକୁ ବଢିବା ବଳିଦାନ ଦେବା
ଜାତି ପାଇଁ ଆମେ ଫୁଲେଇ ଛାତି ।

ଘର ନଂ–୨ଆର୍ ଏଫ୍–୪/୧
କୋ–ଅପରେଟିଭ ହାଉସିଂ କଲୋନୀ
ୟୁନିଟ୍–୩, ଭୁବନେଶ୍ୱର–୧



# ମାନକ ଭାଷା ଏବଂ ଓଡ଼ିଆ

ଆଦିତ୍ୟ କୁମାର ପଣ୍ଡା

'ମାନକ ଭାଷା' ଶବ୍ଦଟି ଶୁଣିଲା ମାତ୍ରକେ ଲାଗିବ ଏ କେଉଁ ଭାଷା ? ପ୍ରକାଶିତ କୌଣସି ଓଡ଼ିଆ ଅଭିଧାନରେ ଏହାର ଅର୍ଥ ମିଳିବନି । ମାନ ଶବ୍ଦଟି ଓଡ଼ିଆରେ ରହିଛି ଏବଂ ଭାଷା ଶବ୍ଦଟି ମଧ୍ୟ, ଏହି ଦୁଇ ଶବ୍ଦରୁ ଏହାର ଅର୍ଥ ଆମେ ଜାଣିପାରିବା । ମାନକ ଭାଷାରେ ଭାଷାର ଏକ ମାନ ପ୍ରସ୍ତୁତ କରାଯାଏ । ଭାଷା ବିଜ୍ଞାନ ବିଷୟରେ ରଚିତ ପୁସ୍ତକ ଏବଂ ଭାଷା ବିଜ୍ଞାନ ସମ୍ବନ୍ଧୀୟ ଅଭିଧାନରେ ଏହାର ଅର୍ଥ ଜାଣିହୁଏ । ଇଂରାଜୀରେ ଏହାର ସମତୁଲ୍ୟ ଶବ୍ଦ ହେଉଛି 'ଷ୍ଟାଣ୍ଡାର୍ଡ ଲାଙ୍ଗୁଏଜ୍' । ଇଂରାଜୀରେ ରଚିତ ଭାଷାବିଜ୍ଞାନ ଅଭିଧାନରେ ଷ୍ଟାଣ୍ଡାର୍ଡ ଏବଂ ଷ୍ଟାଣ୍ଡାର୍ଡାଇଜେସନ୍ ଶବ୍ଦଗୁଡିକର ଅର୍ଥ ରହିଛି । ଉଦାହରଣ ସ୍ୱରୂପ, ଅକ୍ସଫୋର୍ଡ ଡିକ୍ସନେରୀ ଅଫ୍ ଲିଙ୍ଗୁଇଷ୍ଟିକ୍ସ (ଓୟୁପି, ୨୦୦୭)ରେ ଷ୍ଟାଣ୍ଡାର୍ଡ ଶବ୍ଦର ଅର୍ଥରେ ଲେଖାଅଛି, 'ଏହା ଭାଷାର ସେଇ ରୂପ, ଯାହା ଶିକ୍ଷା ଦ୍ୱାରା ମିଳେ ଏବଂ ଭାଷାର ଅନ୍ୟରୂପ ସବୁ ବ୍ୟବହାର କରୁଥିବା ସବୁ ଗୋଷ୍ଠୀର ଲୋକମାନଙ୍କ ଦ୍ୱାରା ସଠିକ୍ ରୂପେ ଗୃହୀତ ହୁଏ' ।

ଏହି ସଂଜ୍ଞାରୁ ମାନକ ଭାଷା ବିଷୟରେ ଜାଣିବାକୁ ପାଉ ଯେ, ଏହା ଶିକ୍ଷାଦ୍ୱାରା ଲବ୍ଧ ଏବଂ ଭାଷାର ଅନ୍ୟରୂପ ସବୁ ବ୍ୟବହାର କରୁଥିବା ଲୋକମାନଙ୍କ ଦ୍ୱାରା ଭାଷାର ଏହି ରୂପକୁ ସଠିକ୍ ଭାବେ ଗ୍ରହଣ କରାଯାଏ । ସମଗ୍ର ଓଡ଼ିଶାରେ ସଠିକ୍ ଭାବରେ ଶିକ୍ଷାଦ୍ୱାରା ଲବ୍ଧ ଏବଂ ଓଡ଼ିଶାର ସବୁ ଗୋଷ୍ଠୀର ଲୋକଙ୍କ ଦ୍ୱାରା ଗୃହୀତ ହୋଇଥିବା ଭାଷାକୁ ମାନକ ଭାଷା କୁହାଯାଏ । ଏହାର ଅର୍ଥ ଏହି ଭାଷାଟି ଓଡ଼ିଶାର କୌଣସି ଗୋଟିଏ ଅଞ୍ଚଳର ଭାଷା ନୁହେଁ, ଏହା ଓଡ଼ିଶାର ସବୁ ଅଞ୍ଚଳରେ ସମାନ ଭାବରେ ସ୍ୱୀକୃତି ପାଇଥିବା ଏକ ଭାଷା । ସେ କଟକ, ଭୁବନେଶ୍ୱର, ବ୍ରହ୍ମପୁର, ସମ୍ବଲପୁର, ବାଲେଶ୍ୱର ନୁହେଁ, ସେ କୌଣସି ଗୋଟିଏ ଅଞ୍ଚଳର ନୁହେଁ, ସେ ଓଡ଼ିଶାର ସବୁ ଅଞ୍ଚଳର ଭାଷା । ଯେଉଁ ପ୍ରକ୍ରିୟାରେ ମାନକ ଭାଷା ତିଆରି ହୁଏ, ତାହା ଯୋଜନାବଦ୍ଧ ଔପଚାରିକ ଭାବେ ହୁଏ । ମାନକ ଭାଷା ତିଆରି ହେବାର ପ୍ରକ୍ରିୟା ଅଳ୍ପ ବହୁତେ କୃତ୍ରିମ, କିନ୍ତୁ ମାନକ ଭାଷା କୃତ୍ରିମ ନୁହେଁ । କେଉଁଠି କେଉଁଠି ରାଜ୍ୟର ପ୍ରଭାବଶାଳୀ ନଗର ବା ସହରରେ ବ୍ୟବହୃତ ଭାଷାକୁ ମାନକ ଭାଷା ରୂପେ ଗ୍ରହଣ କରାଯାଏ, ଯେମିତି ଫ୍ଲୋରେନ୍ସ ସହରରେ ବ୍ୟବହୃତ ଇଟାଲୀୟ ଭାଷାକୁ ଇଟାଲୀର ମାନକ ଭାଷା ଏବଂ ଚୀନ୍‌ର ବେଜିଂ ସହରରେ ବ୍ୟବହୃତ ମାଣ୍ଡାରିନ୍‌କୁ ଚୀନ୍‌ର ମାନକ ଭାଷା, ଫ୍ରାନ୍ସର ପ୍ୟାରିସ ସହରରେ ବ୍ୟବହୃତ ଫରାସୀ ଭାଷାକୁ ମାନକ ଫରାସୀ ରୂପେ ଗ୍ରହଣ କରାଯାଏ ।

ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ପରିଚୟ ମିଳେ, ୧୯୩୬ ମସିହା ଓଡ଼ିଶା ପ୍ରଦେଶ ଗଠନ ବେଳେ । ଏହି ଭାଷାଭିତ୍ତିକ ପ୍ରଦେଶ ଗଠନ ଏକ ରାଜନୈତିକ ପଦକ୍ଷେପ, ଯାହା ଔପଚାରିକ ଭାବେ ଆନୁଷ୍ଠାନିକଭାବେ ମାନକ ଭାଷାର ବୃଦ୍ଧି ଏବଂ ବିକାଶ କଲା । ମୋଗଲବନ୍ଦୀ ଓଡ଼ିଆରେ ଅନେକ ସାହିତ୍ୟକୃତି ସୃଷ୍ଟି ହୋଇଥିବାରୁ ବିଦ୍ୱାନମାନେ ଏହାକୁ ଓଡ଼ିଆର ମାନକ ଭାଷା ବୋଲି ଗ୍ରହଣ କରନ୍ତି । ଓଡ଼ିଶା ପ୍ରଦେଶ ଗଠିତ ହେବା ପୂର୍ବରୁ ସେଇ ଅଞ୍ଚଳରେ ଏକ ସମୃଦ୍ଧ ଉଚ୍ଚକୋଟୀର ଲିଖିତ ଭାଷାର ଏକ ପରମ୍ପରା ଚଳିଆସୁଥିଲା । ପ୍ରଦେଶ ଗଠନ ହେବା ପରବର୍ତ୍ତୀ ପଦକ୍ଷେପ ସବୁର ଏହି ପରମ୍ପରା ସହ ସମ୍ବନ୍ଧ ଥିଲା । ସମଗ୍ର ଓଡ଼ିଶାରେ ବିଭିନ୍ନ ସରକାରୀ ଅନୁଷ୍ଠାନ ଯଥା ବିଦ୍ୟାଳୟ, ମହାବିଦ୍ୟାଳୟ ଏବଂ ବିଭିନ୍ନ ସରକାରୀ ପ୍ରଶାସନିକ କାର୍ଯ୍ୟାଳୟ,

ଅନେକଗୁଡିଏ ସମ୍ବାଦପତ୍ରର ପ୍ରଚଳନ ଅନ୍ୟ ଭାଷାରୁ ଓଡ଼ିଆ ଭାଷାକୁ ଅନୁବାଦ, ଓଡ଼ିଆ ଭାଷାରେ ପୁସ୍ତକ ରଚନା ଇତ୍ୟାଦି ଓଡ଼ିଶାରେ ମାନକ ଓଡ଼ିଆକୁ ପ୍ରତିଷ୍ଠିତ କରିବାରେ ସାହାଯ୍ୟ କଲା । ମାନକ ଭାଷା ଲିଖିତ ଭାଷା ସହ ବେଶୀ ପରିମାଣରେ ସମ୍ପୃକ୍ତ ହୋଇଥାଏ । ଲିଖିତ ଭାଷା ହିଁ ଭାଷାର ବ୍ୟବହାରରେ ସ୍ଥିର ଅନୁରୂପତା ଆଣିଥାଏ । କଥିତ ଭାଷା ଲିଖିତ ଭାଷା ତୁଳନାରେ ଅଧିକ ପରିବର୍ତ୍ତନଶୀଳ । ସମଗ୍ର ଓଡ଼ିଶାରେ ଗୋଟିଏ ଭାଷାରେ ପାଠ୍ୟପୁସ୍ତକ ପ୍ରଣୟନ ମାନକ ଭାଷାକୁ ବେଶୀ ପରିମାଣରେ ପ୍ରତିଷ୍ଠିତ କରିଛି । ଓଡ଼ିଶାର ସବୁ ଅଞ୍ଚଳରେ, ସେ ପୂର୍ବାଞ୍ଚଳ ହେଉ, ପଶ୍ଚିମାଞ୍ଚଳ ହେଉ, ଦକ୍ଷିଣାଞ୍ଚଳ ବା ଉତ୍ତରାଞ୍ଚଳ ହେଉ, ସବୁଠି ମାନକ ଓଡ଼ିଆ ଭାଷା ହିଁ ପଠନ ଲିଖନ ଶିକ୍ଷଣର ମାଧ୍ୟମ ରୂପେ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ସ୍ତରରେ ବ୍ୟବହୃତ ହୁଏ । ସରକାରୀ ସ୍ୱୀକୃତି, ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ଏବଂ ଅନ୍ୟ ଶିକ୍ଷାନୁଷ୍ଠାନ, ଗଣମାଧ୍ୟମ, ପୁସ୍ତକ ପ୍ରକାଶନ, ପ୍ରଶାସନିକ କାର୍ଯ୍ୟ ଆଦି ମାନକ ଭାଷାର ପ୍ରତିନିଧିମାନେ । ଏଇ ପ୍ରତିନିଧିମାନଙ୍କ ବ୍ୟତୀତ, ଆଉ ଏକ ସବୁଠୁ ବଡ ମାନକ ଭାଷା ନିୟନ୍ତ୍ରକ ଏବଂ ପରିଚାଳକ ହେଉଛି ଓଡ଼ିଆ ଭାଷାରେ ଶବ୍ଦକୋଷ ବା ଅଭିଧାନର ପ୍ରସ୍ତୁତି । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମୋହନ ପ୍ରସାଦ ଠାକୁର, ଏ.ସଟନ୍ ଆଦି ବିଦ୍ୱାନମାନଙ୍କ ପ୍ରଚେଷ୍ଟାରେ ଇଂରାଜୀ ଓଡ଼ିଆ ଶବ୍ଦକୋଷ ପୁସ୍ତକ ଆକାରରେ ମୁଦ୍ରିତ ହେଲା ଏବଂ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ଶବ୍ଦତତ୍ତ୍ୱ ଅଭିଧାନ ଏବଂ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ମାନକ ଓଡ଼ିଆ ଭାଷାକୁ ପ୍ରତିଷ୍ଠା କରିବାରେ ମୁଖ୍ୟ ଭୂମିକା ଗ୍ରହଣ କଲା । ସାମ୍ପ୍ରତିକ ସମୟରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟମାନ୍ୟତା ମିଳିବା, ଓଡ଼ିଆ ମାନକ ଭାଷାକୁ ଆଉ ଏକ ଉଚ୍ଚସ୍ତରକୁ ନେଇଯାଇଛି । ଏନସାଇକ୍ଲୋପେଡିଆ, ବ୍ରିଟାନିକା, ମାନକ ଭାଷା ଉପରେ କହେ: ମାନକ ଭାଷା ସେତେବେଳେ ସୃଷ୍ଟି ହୁଏ, ଯେତେବେଳେ ଭାଷାର କୌଣସି ଏକ ଉପଭାଷା ଲିଖିତ ଭାଷା ଭାବରେ ସୁଦୂରପ୍ରସାରୀ ଅଞ୍ଚଳରେ ବ୍ୟବହୃତ ହୁଏ, ଯେଉଁ ଭାବରେ ପ୍ରଶାସନିକ କ୍ଷେତ୍ରରେ, ସାହିତ୍ୟରେ ଏବଂ ଅର୍ଥନୈତିକ ଜୀବନରେ ଗୋଟିଏ ଭାଷା ବ୍ୟବହୃତ ହୁଏ ଏବଂ ଭାଷାଗତ ବିଭିନ୍ନତାକୁ ହ୍ରାସକରି ଏକରୂପତା ଆଣିଥାଏ ।

ଓଡ଼ିଆ ମାନକ ଭାଷା ଏକ ଉପଭାଷା, ଯାହା ଓଡ଼ିଆ ଭାଷାର ବିଭିନ୍ନ ଆଞ୍ଚଳିକ ଉପଭାଷାରୁ ସୃଷ୍ଟ । କିନ୍ତୁ ସମସ୍ତ ଆଞ୍ଚଳିକ ଉପଭାଷାରୁ ସମାନ ପରିମାଣରେ ଭାଷାଭିତ୍ତିକ ଗୁଣ ଗ୍ରହଣ କରିନଥାଏ, କେଉଁ ଉପଭାଷାର ଅଧିକ ଗୁଣ ଏବଂ କାହାର କମ୍ ଗୁଣ ଆହରଣ କରିଥାଏ । ଓଡ଼ିଆ ମାନକ ଭାଷାରେ ସମ୍ବଲପୁରୀ ଆଞ୍ଚଳିକ ଉପଭାଷାର ଲକ୍ଷଣ କମ୍ ଦେଖିବାକୁ ମିଳେ ଏବଂ ଉପକୂଳବର୍ତ୍ତୀ ଓଡ଼ିଆ ଆଞ୍ଚଳିକ ଉପଭାଷାର ଲକ୍ଷଣ ବେଶୀ ପରିମାଣରେ ପରିଲକ୍ଷିତ ହୁଏ ।

ଗୋଟିଏ ଭାଷାରେ ରହିଥିବା ଉପଭାଷାଗୁଡ଼ିକ ହିଁ ସେଇ ଭାଷାର ପ୍ରକୃତ ସମ୍ପଦ ଏବଂ ସେମାନଙ୍କ ଭିତରେ କିଛି ନା କିଛି ବିଭିନ୍ନତା ରହିଥିବାରୁ ସେମାନେ ସେଇ ଭାଷାର ଉପଭାଷା । ଏଇ ବିଭିନ୍ନତାର ପରିମାଣ ପ୍ରାୟ ଶତପ୍ରତିଶତ ହେଲେ, ଭାଷାବିଜ୍ଞାନୀମାନେ ତାକୁ ଏକ ସ୍ୱତନ୍ତ୍ର ଭାଷା ରୂପରେ ଗ୍ରହଣ କରିଥାନ୍ତି । ମାନକ ଭାଷା ପ୍ରସଙ୍ଗରେ ଡେଭିଡ୍ କ୍ରିଷ୍ଟାଲ୍ ତାଙ୍କର ଡିକ୍ସନାରୀ ଅଫ୍ ଲିଙ୍ଗୁଇଷ୍ଟିକ୍ସ ଆଣ୍ଡ ଫନେଟିକ୍ସରେ ଲେଖନ୍ତି ଯେ ମାନକ ଭାଷା ହେଉଛି ଗୋଟିଏ ଭାଷାର ସେଇ ରୂପ ଯାହା ଭାଷାର ବିଭିନ୍ନ ଆଞ୍ଚଳିକ ବୈଷମ୍ୟତାକୁ ଏଡେଇ ଦେଇ ସମ୍ମିଳିତ ଯୋଗାଯୋଗର ମାଧ୍ୟମ ହୁଏ, ଏହିରୂପେ ଔପଚାରିକଭାବେ ଗଣମାଧ୍ୟମରେ ଅନ୍ୟମାନଙ୍କୁ ଭାଷା ଶିକ୍ଷା ଦେବାରେ ବ୍ୟବହୃତ ହୁଏ ।

ସେ ମାନକ ଭାଷା ଯାହା ବି ହେଉ, ମାନକ ଭାଷା ପ୍ରତି ଲୋକଙ୍କ ଯେଉଁ ଦୃଷ୍ଟିକୋଣ, ତାହା ଏଠି ନିଶ୍ଚୟ ଉଲ୍ଲେଖନୀୟ । ଓଡ଼ିଶାର ସରକାରୀ ଶିକ୍ଷାନୁଷ୍ଠାନରେ ଓଡ଼ିଆ ମାନକ ଭାଷା ହିଁ ଶିକ୍ଷାର ମାଧ୍ୟମ, କିନ୍ତୁ ଏବେକାର ମା'ବାପାମାନେ ସରକାରୀ ଶିକ୍ଷାନୁଷ୍ଠାନ ଅପେକ୍ଷା ବେସରକାରୀ ଇଂରାଜୀ ମାଧ୍ୟମ ଶିକ୍ଷାନୁଷ୍ଠାନକୁ ନିଜର ପିଲାମାନଙ୍କୁ ପଢିବା ପାଇଁ ପଠାଉଛନ୍ତି, ଯଦିଓ ସେମାନେ ଏବଂ ସେମାନଙ୍କ ପିଲାମାନେ ଘରେ ଓ ବାହାରେ ଓଡ଼ିଆ ଭାଷା କହୁଛନ୍ତି, ଯାହା ମାନକ ଓଡ଼ିଆ ନୁହେଁ । ଯେତେବେଳେ ଆମେ କହୁଛୁ ଓଡ଼ିଆ ଭାଷାର ଚାହିଦା କମିଯାଉଛି, ଆମକୁ ଦେଖିବାକୁ ହେବ କେଉଁ ଓଡ଼ିଆ ଭାଷାର ଚାହିଦା କମିଯାଉଛି, ଘରେ ବାହାରେ ତ ଆମେ ଓଡ଼ିଆ ଭାଷା କହୁଛୁ, ତା'ହେଲେ ସେଇ ଶିକ୍ଷାନୁଷ୍ଠାନରେ ପ୍ରଚଳିତ ମାନକ ଓଡ଼ିଆ ଭାଷାର ଚାହିଦା କମି କମି ଯାଉଛି ।

ଶିକ୍ଷାନୁଷ୍ଠାନରେ ମାନକ ଭାଷା କମି କମି ଯାଉଛି କିନ୍ତୁ ଗଣମାଧ୍ୟମରେ ଏହି ଭାଷା ଗଭୀରଭାବେ ପ୍ରଭାବ ପକାଇଛି । ଓଡ଼ିଆ ସମ୍ବାଦପତ୍ର, ଓଡ଼ିଆ ଚଳଚ୍ଚିତ୍ର, ଓଡ଼ିଆ ବିଜ୍ଞାପନ ପ୍ରତିଦିନ ହଜାର ହଜାର ଓଡ଼ିଆ ଭାଷୀ ଲୋକ ବ୍ୟବହାର କରୁଛନ୍ତି । ପୁସ୍ତକ ପ୍ରକାଶନ, ଓଡ଼ିଆରେ ଅନୁବାଦ ମାନକ ଓଡ଼ିଆ ଭାଷାରେ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ମାନକ ଭାଷା ଶବ୍ଦ ଦୁଇଟି ଉଚ୍ଚାରଣ କଲାମାତ୍ରକେ ଏକ ପ୍ରକାର ସଠିକତା ଏକ ପ୍ରକାରର ଶୁଦ୍ଧ ଭାଷାର ଭାବନା ମନକୁ ଆସେ, ଯଦିଓ ଭାଷାରେ ଶୁଦ୍ଧ ବା ଅଶୁଦ୍ଧ ବୋଲି କିଛି ନାହିଁ । ଏଠି ପ୍ରଶ୍ନ ଉଠେ ଏମିତି ଭାବନା କେଉଁଠୁ ଆସିଲା ଏବଂ କେମିତି ଆସିଲା ? ଏଠି ଶୁଦ୍ଧ କହିଲେ ଧାର୍ମିକ ଶୁଦ୍ଧତା ବା ଶାରୀରିକ ଶୁଦ୍ଧତାକୁ ବୁଝାଏ ନାହିଁ, ଏହା ଓଡ଼ିଆ ମାନକ ଭାଷାର ମାନ ନିର୍ଦ୍ଧାରିତ ସଠିକ୍ ଓଡ଼ିଆ ଭାଷାକୁ ବୁଝାଏ । ଭାଷାର ଏମିତି ମାନ ନିର୍ଦ୍ଧାରଣ ନିରପେକ୍ଷ ହୋଇପାରେ ନାହିଁ, ଗୋଟିଏରୁ ଅଧିକ ଉପଭାଷା ଥିବା ଭାଷା କ୍ଷେତ୍ରରେ ମାନକ ଭାଷାର ନିର୍ଦ୍ଧାରଣ ବେଳେ ରାଜନୀତିକୁ ବାଦ୍ ଦିଆଯାଇ ନପାରେ ।

ସେ ଯାହା ବି ହେଉ, ଓଡ଼ିଆ ମାନକ ଭାଷାର ବ୍ୟବହାର କମି ନାହିଁ, କେତେଗୁଡିଏ କ୍ଷେତ୍ରରେ ହ୍ରାସପାଇଛି । ମାନକ ଭାଷାର ବ୍ୟବହାର ହ୍ରାସ ପାଇଥିବା କ୍ଷେତ୍ର ମଧ୍ୟରୁ ଶିକ୍ଷା କ୍ଷେତ୍ର ଗୋଟିଏ । ଯେମିତି ତାମିଲନାଡୁ ସରକାର ତାମିଲ ଭାଷାର ପ୍ରସାର ପ୍ରଚାର ପାଇଁ, ବିଶ୍ୱବିଦ୍ୟାଳୟ ଯାଏଁ ଶିକ୍ଷାର ମାଧ୍ୟମ ରୂପେ ତାମିଲକୁ ବ୍ୟବହାର କରିବା ପାଇଁ ବିଭିନ୍ନ ପଦକ୍ଷେପ ନେଇଛନ୍ତି ସେମିତି ବିଶ୍ୱବିଦ୍ୟାଳୟ ଯାଏଁ ଓଡ଼ିଆ ମାନକ ଭାଷାକୁ ଶିକ୍ଷାର ମାଧ୍ୟମ ରୂପେ ଗ୍ରହଣ କରିବା ପାଇଁ ସରକାରୀ ପ୍ରଚେଷ୍ଟା ନିତାନ୍ତ ଜରୁରୀ । ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ଓଡ଼ିଆ ମାନକ ଭାଷାକୁ ଆହୁରି ବଳିଷ୍ଠ କରିବ ଏବଂ ତା'ରି ବ୍ୟବହାରର ପରିସରକୁ ବଢାଇବ ବୋଲି ଆଶା କରାଯାଏ ।

**ସହାୟକ ଗ୍ରନ୍ଥସୂଚୀ**


ମ୍ୟାଥିଉ, ପିଟର ହୁଗୋ. ଦ କନସାଇଜ୍ ଅକ୍ସଫୋର୍ଡ ଡିକ୍ସନାରୀ ଅଫ୍ ଲିଙ୍ଗୁଇଷ୍ଟିକ୍ସ. ଅକ୍ସଫୋର୍ଡ ୟୁନିଭରସିଟି ପ୍ରେସ୍. ୨୦୦୭

ଏନସାଇକ୍ଲୋପେଡିଆ ବ୍ରିଟାନିକା. ଏନସାଇକ୍ଲୋପେଡିଆ ବ୍ରିଟାନିକା ଆଇଏନସି ୨୦୧୫

କ୍ରିଷ୍ଟାଲ୍. ଡେଭିଡ୍. ଡିକ୍ସନାରୀ ଅଫ୍ ଲିଙ୍ଗୁଇଷ୍ଟିକ୍ସ ଆଣ୍ଡ ଫନେଟିକ୍ସ. ବ୍ଲାକୱେଲ୍ ପବ୍ଲିସିଙ୍ଗ୍, ୨୦୦୮

ମିଲରଏ, ଜେ. ଦ ଆଇଡୋଲୋଜି ଅଫ୍ ଷ୍ଟାଣ୍ଡାର୍ଡ ଲାଙ୍ଗୁଏଜ୍. ଇନ୍ ସି. ଲାମାସ୍. ଏଲ୍ ମୁଲାନୀ ଆଣ୍ଡ ପି.ଷ୍ଟକୱେଲ୍ (ଇଡିଏସ୍) ଦ ରୁଥଲେଜ୍ କମ୍ପେନିଅନ୍ ଟୁ ସୋସିଓଲିଙ୍ଗୁଇଷ୍ଟିକ୍ସ (ପିପି ୧୩୩-୯), ଲଣ୍ଡନ: ରୁଥଲେଜ୍, ୨୦୦୭

ଫିଲ୍ଡ ଫ୍ରେଡରିକ୍ ଡବ୍ଲୁ କି କନସେପ୍ଟ ଇନ୍ ବାଇଲିଙ୍ଗୁଏଲିଜମ୍ ପାଲଗ୍ରେଭ ମ୍ୟାକମିଲାନ, ୨୦୧୧

ସ୍ୱାନ୍, ଜୋଆନ୍, ଏଟ୍ ଅଲ୍, ଏ ଡିକ୍ସନାରୀ ଅଫ୍ ସୋସିଓଲିଙ୍ଗୁଇଷ୍ଟିକ୍ସ. ଏଡିନବର୍ଗ ୟୁନିଭରସିଟି ପ୍ରେସ୍, ୨୦୦୪



ଭାରତୀୟ ଭାଷା ସଂସ୍ଥା

ମହୀଶୂର- ୫୭୦୦୦୬




# ସ୍ୱତନ୍ତ୍ର ଉତ୍କଳ: ଏକ ଅଧ୍ୟୟନ

**ଗିରିଜା ଶଙ୍କର ତରାସିଆ**

ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଆ ଜାତି ତା'ର ବୀରତ୍ୱର ପରାକାଷ୍ଠା ବାର ବାର ଇତିହାସ ପୃଷ୍ଠାରେ ଅଂକିତ କରି ଆସିଛି । ଶାସକର ଗୋଲାମୀଗିରି କରି ଭୋଗ ବିଳାସରେ ନରହି ଦୁଃଖ ଯନ୍ତ୍ରଣା ଭିତରେ ସ୍ୱାଧୀନତାର ମଧୁ ଚାଖିବା ପାଇଁ ଏହି ଜାତି ବେଶ୍ ପସନ୍ଦ କରି ଆସିଛି । ସେଥିପାଇଁ ହୋଇଛି କେତେ ସଂଗ୍ରାମ ଆଉ ରକ୍ତପାତ । ଅଗଣିତ ଓଡ଼ିଆ ରମଣୀର ମଥାରୁ ସିନ୍ଦୂର ପୋଛିଯାଇ ଯୁଦ୍ଧଭୂମିର ସବୁଜ ପ୍ରାନ୍ତର ଲାଲରକ୍ତରେ ରଙ୍ଗୀନ ହୋଇ ଉଠିଛି । ତଥାପି ଓଡ଼ିଆ ଜାତି ଆତ୍ମ ମର୍ଯ୍ୟାଦା ହରାଇ ଆତ୍ମସମର୍ପଣ କରିନାହିଁ । କଳିଙ୍ଗ ଯୁଦ୍ଧରେ ସମ୍ରାଟ ଅଶୋକଙ୍କର ଆପାତତଃ ବିଜୟ ଘଟିଥିଲେ ମଧ୍ୟ ସେ ଓଡ଼ିଆ ପୁଅର ବୀରତ୍ୱକୁ ନିରବରେ ସ୍ୱୀକାର କରିଥିଲେ ।

ଭାରତୀୟ ଇତିହାସକୁ ପୁଷ୍ପିତ କରିବାରେ ଓଡ଼ିଆ ଜାତିର ଅବଦାନ କିଛି କମ୍ ନୁହେଁ । ସମଗ୍ର ଭାରତବର୍ଷରେ ଇଂରେଜ ଶାସନର ଜାଲ ବିଛାଯିବାର ଅନେକ ବର୍ଷ ପରେ ଓଡ଼ିଶାକୁ ଦଖଲ କରିବାକୁ ଇଂରେଜ ବାହିନୀ ସକ୍ଷମ ହୋଇ ପାରିଥିଲେ

୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଦଖଲ କରିବାର ମାତ୍ର ତିନିଟା ବର୍ଷ ପରେ ଅର୍ଥାତ୍ ୧୮୦୬ ଖ୍ରୀଷ୍ଟାବ୍ଦରେ ଖୋରଧା ବୀର ବକ୍ସିଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କ ନେତୃତ୍ୱରେ ଇଂରେଜମାନଙ୍କ ବିରୁଦ୍ଧରେ ଗଢ଼ି ଉଠିଥିଲା ସଶସ୍ତ୍ର ବିଦ୍ରୋହ । ପାଇକ ବିଦ୍ରୋହ ନାମରେ ନାମିତ ଏହି ବିଦ୍ରୋହ ଖୋରଧା ମଧ୍ୟରେ ସୀମିତ ନରହି ବାଙ୍କୀ, କୁଜଙ୍ଗ, କଟକ, ଅନୁଗୁଳ ଆଦି ଇଲାକାକୁ ବ୍ୟାପୀ ଯାଇଥିଲା । ବିଦ୍ରୋହର ପ୍ରଧାନ ନେତା ଭାବେ ପରିଗଣିତ ହେଉଥିବା ଜୟୀ ରାଜଗୁରୁଙ୍କୁ ପ୍ରକାଶ୍ୟରେ ଫାଶୀ ଦିଆଯିବା ଘଟଣା ମନ ଭିତରେ ଓଡ଼ିଆ ପୁଅର ଅତୀତର ମହାନ୍ ତ୍ୟାଗକୁ ସଂଜୀବିତ କରାଇଥାଏ ।

ଖୋରଧାର ପାଇକ ବିଦ୍ରୋହ ପରେ ଓଡ଼ିଆ ଜାତି ସ୍ୱାଧୀନତା ସଂଗ୍ରାମରୁ ବିରତ ନଥିଲା । ୧୮୨୪ ଖ୍ରୀଷ୍ଟାବ୍ଦରୁ ୧୮୬୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦୀର୍ଘ ଚାରିଦଶକ ଧରି ପଶ୍ଚିମ ଓଡ଼ିଶାରେ ବୀର ସୁରେନ୍ଦ୍ର ସାଏ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ସଂଗ୍ରାମ ଚଳାଇ ରଖିଥିଲେ, ତାହା ବାସ୍ତବରେ ଅତ୍ୟନ୍ତ ବିସ୍ମୟଜନକ । ବାଲେଶ୍ୱରରେ ବିପ୍ଳବୀ ବାଘାଯତୀନ, ମୟୂରଭଞ୍ଜ ଅଞ୍ଚଳରେ ସ୍ୱର୍ଗୀୟ ମୁର୍ମୁ, କେନ୍ଦୁଝର ଅଞ୍ଚଳରେ ଧରଣୀଧର ଭୂୟାଁ, ସୁନ୍ଦରଗଡ଼ ଅଞ୍ଚଳରେ ବିର୍ସା ମୁଣ୍ଡାଙ୍କ ନେତୃତ୍ୱରେ ସଂଗଠିତ ହୋଇଥିବା ବିପ୍ଳବର ରଣହୁଂକାରରେ ଇଂରେଜ ସରକାର ଆତଙ୍କିତ ହୋଇ ପଡ଼ିଥିଲେ ।

ଓଡ଼ିଶାର ଭୌଗୋଳିକ ଏବଂ ସାଂସ୍କୃତିକ ଏକତାକୁ ଚୂରମାର କରି ଓଡ଼ିଶାରେ ସଂଗଠିତ ହେଉଥିବା ବିପ୍ଳବ ଆଦିକୁ ପ୍ରତିହତ କରିବା ପାଇଁ ଇଂରେଜ ସରକାର ଅଭିନବ କୌଶଳ ଅବଲମ୍ବନ କରି ଓଡ଼ିଶାର ଅବୟବକୁ ଖଣ୍ଡବିଖଣ୍ଡିତ କରାଇ ମଧ୍ୟପ୍ରଦେଶ, ମାନ୍ଦ୍ରାଜ, ବଙ୍ଗପ୍ରଦେଶ ଆଦି ରାଜ୍ୟମାନଙ୍କରେ ମିଶାଇ ଦେଲେ । ଓଡ଼ିଶାର ସ୍ୱତନ୍ତ୍ରତା ଲୋପ ପାଇଲା । ଏପରି ବିଖଣ୍ଡିତ ଅବସ୍ଥାରେ ରହିବାର କିଛିଦିନ ପରେ ବିଭିନ୍ନ ଶାସକମାନଙ୍କ ଅଧୀନରେ ଶାସିତ ଓଡ଼ିଆ ଭାଷୀ ଅଞ୍ଚଳକୁ ଭାଷା ସୂତ୍ରରେ ଏକତ୍ର କରି ଏକ ଶାସନାଧୀନ କରିବା ପାଇଁ ଓଡ଼ିଶାର କେତେକ ତୁଙ୍ଗ ନାଗରିକ ବିଚାର କଲେ । ବାଲେଶ୍ୱରରୁ ରାଜା ଶ୍ୟାମାନନ୍ଦ ଦେ ପ୍ରମୁଖ ଏ ଦିଗରେ ପ୍ରଥମେ ସ୍ୱର ଉତ୍ତୋଳନ

କଲେ । ତାଙ୍କ ପରେ ତାଙ୍କ ପୁତ୍ର ରାଜା ବୈକୁଣ୍ଠନାଥ ଦେ ୧୮୭୪ ଖ୍ରୀଷ୍ଟାବ୍ଦରେ ବଙ୍ଗର ଛୋଟଲାଟ ସାର୍ ରିଚାର୍ଡ଼ ଟେମ୍ପଲ୍‌ଙ୍କୁ ଏହି ମର୍ମରେ ଏକ ଆବଦେନପତ୍ର ଦେଇଥିଲେ । ଏହାର କିଛି ବର୍ଷ ପରେ ରାଜ ବୈକୁଣ୍ଠ ନାଥ ଦେ ୧୯୦୨ ଖ୍ରୀଷ୍ଟାବ୍ଦରେ କବିବର ରାଧାନାଥ ରାୟଙ୍କ ଦ୍ୱାରା ଏକ ଆବେଦନପତ୍ର ପ୍ରସ୍ତୁତ କରାଇ ତତ୍‌କାଳୀନ ବଡ଼ଲାଟ୍ ଲର୍ଡ଼ କର୍ଜନଙ୍କୁ ଅର୍ପଣ କରିଥିଲେ । ଏହି ଆବେଦନ ପତ୍ରର ଶିରୋନାମ ଥିଲା Memorial for uniting the Oriya Speaking lands under different administration into one administration. ସ୍ୱତନ୍ତ୍ର ଓଡ଼ିଶା ଗଠନର ଆବଶ୍ୟକତାକୁ ଅନୁଭବ କରି ଜନଜାଗରଣ ଧୀରେ ଧୀରେ ପ୍ରକାଶ ପାଇବାକୁ ଲାଗିଲା । ୧୮୭୦ ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ଘୁମୁସରଠାରେ ଅନୁଷ୍ଠିତ ସାଧାରଣ ସଭା ଓଡ଼ିଶା ମିଶ୍ରଣ ଦାବି ପରିପ୍ରେକ୍ଷୀରେ ରାଜନୈତିକ ଦୃଷ୍ଟି କୋଣରୁ ପ୍ରଥମ ଗୁରୁତ୍ୱପୂର୍ଣ୍ଣ ସଭା ଥିଲା ।

ଏହି ସଭା ଅନୁଷ୍ଠିତ ହେବାର ପ୍ରାୟ ୩୦ ବର୍ଷ ପରେ ଦକ୍ଷିଣ ଓଡ଼ିଶାକୁ ମାନ୍ଦ୍ରାଜ ପ୍ରେସିଡ଼େନ୍ସିଠାରୁ ବିଚ୍ଛିନ୍ନ କରି ଓଡ଼ିଶା ସହିତ ସଂଯୁକ୍ତ କରିବା ଦାବି କରି ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ୧୯୦୧ ମସିହା ଜୁଲାଇ ମାସରେ ରମ୍ଭାଠାରେ ଏକ ବିରାଟ ସାଧାରଣସଭାର ଆୟୋଜନ କରିଥିଲେ । ଏହି ସଭାକୁ ଉତ୍କଳ ସମ୍ମିଳନୀ ଗଠନର ବୀଜବପନ ବୋଲି ଅଭିହିତ କରାଯାଇପାରେ ।

ଏହାପରେ ୧୯୦୨ ମସିହାରେ ଗଞ୍ଜାମ ଜାତୀୟ ସମିତି ଆତ୍ମପ୍ରକାଶ କଲା । ଗଞ୍ଜାମ ଜାତୀୟ ସମିତିର ପ୍ରଥମ ଅଧିବେଶନ ବ୍ରହ୍ମପୁରଠାରେ ୧୯୦୨ ମସିହା ଏପ୍ରିଲ ମାସ ୧୧ ତାରିଖ ଏବଂ ୧୨ ତାରିଖ ଦୁଇଦିନ ଧରି ଅନୁଷ୍ଠିତ ହୋଇଥିଲା । ଏହାପରେ ୧୯୦୩ରେ ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହେଲା । ଲର୍ଡ଼ ହାଡ଼ିଞ୍ଜ ଭାରତର ଭାଇସରାୟ ଥିବା ସମୟରେ ବଙ୍ଗଳା ପ୍ରେସିଡ଼େନ୍ସିକୁ ଭାଙ୍ଗି ବିହାର-ଓଡ଼ିଶା ପ୍ରଦେଶ ଗଠନ କରିଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନର ଦାବିକୁ ଉତ୍କଳ ସମ୍ମିଳନୀର ନେତୃମଣ୍ଡଳୀ ବ୍ୟାପକତର କରାଇବାରେ ଲାଗିଲେ । ୧୯୨୭ ମସିହା ନଭେମ୍ବର ୮ ତାରିଖ ଦିନ ପାଟନାଠାରେ ସାଇମନ କମିଶନକୁ ଉତ୍କଳଗୌରବ ମଧୁସୂଦନ, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରମୁଖ ସାକ୍ଷାତ କରି ଓଡ଼ିଶାର ଦାବି ଉପସ୍ଥାପିତ କରିଥିଲେ । କମିଶନ ତାଙ୍କ ରିପୋର୍ଟରେ ଟିପ୍ପଣୀ ଦେଇ ଦର୍ଶାଇଥିଲେ କି, The province of Bihar and Orissa which was constituted in 1912 is the most artificial unit of all Indian provinces. କମିଶନ ଓଡ଼ିଶା ପ୍ରଶ୍ନର ବିଚାର ନିମନ୍ତେ ମେଜର ଅଟଲିଙ୍କ ଅଧ୍ୟକ୍ଷତାରେ ଏକ ସବ୍ କମିଟି ଗଠନ କଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଉତ୍କଳ ସମ୍ମିଳନୀ ନେତୃମଣ୍ଡଳୀ ମନ୍ଥରଗତିରେ କାର୍ଯ୍ୟକ୍ରମମାନ ଗ୍ରହଣ କରୁଥିବା ବେଳେ ମୁସଲିମ ଲିଗ ପକ୍ଷରୁ ସ୍ୱତନ୍ତ୍ର ସିନ୍ଧୁପ୍ରଦେଶ ଗଠନ ଦାବି ୧୯୨୮ରେ ଉତ୍‌ଥାପିତ ଘଟଣା ଉତ୍କଳ ସମ୍ମିଳନୀ ନେତୃବର୍ଗଙ୍କ ମନରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଦାବିକୁ ବିଲାତରେ ଉତ୍‌ଥାପିତ କରିବା ପାଇଁ ପ୍ରେରଣା ଦେଲା ।

୧୯୩୦ ମସିହା ନଭେମ୍ବର ମାସ ୧୨ ତାରିଖରୁ ୧୯୩୧ ମସିହା ଜାନୁଆରୀ ୧୯ ତାରିଖ ପର୍ଯ୍ୟନ୍ତ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲଟେବୁଲ ବୈଠକରେ ପ୍ରସ୍ତୁତ ଚିଠା ପ୍ରସ୍ତାବରେ ମୁସଲିମ ଲିଗ ପକ୍ଷରୁ ସ୍ୱତନ୍ତ୍ର ସିନ୍ଧୁପ୍ରଦେଶ ଗଠନ ସଂପର୍କରେ ଦରଜ କରାଯାଇଥିବା ବେଳେ ସ୍ୱତନ୍ତ୍ର ଓଡ଼ିଶା ଗଠନ ସମ୍ପର୍କୀୟ କୌଣସି ପ୍ରସ୍ତାବ ନଥିବାରୁ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି କିଂ କର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଲେ । ତାଙ୍କର ବଳିଷ୍ଠ ନେତୃତ୍ୱ, ଆପ୍ରାଣ ଉଦ୍ୟମ ତଥା ଅସାଧାରଣ ବ୍ୟକ୍ତିତ୍ୱ ଯୋଗୁଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କୀୟ ଆଲୋଚନା ନିମନ୍ତେ ଚିଠା ପ୍ରସ୍ତାବରେ ସ୍ଥାନ ପାଇପାରିଥିଲା । କେବଳ ସେତିକି ନୁହେଁ ମହାରାଜଙ୍କ ପ୍ରଦତ୍ତ ଭାଷଣ ତତ୍କାଳୀନ ବ୍ରିଟିଶ ବୈଦେଶିକ ମନ୍ତ୍ରୀ ସାମୁଏଲ ହୋରେଙ୍କ ମନକୁ ପ୍ରଭାବିତ କରିପାରିଥିଲା । ପ୍ରଥମ ଗୋଲଟେବୁଲ୍ ବୈଠକ ପରେ ଭାରତ ସରକାରଙ୍କର ଏଫ୍ ୧୨/ଭି.ଆ.ଇ/୩୧ ନମ୍ବର ପ୍ରସ୍ତାବ ଅନୁଯାୟୀ ୧୯୩୧ ମସିହା ସେପ୍ଟେମ୍ବର ୧୮ ତାରିଖରେ ଓଡ଼ିଶା କମିଟି ଗଠନ କରାଗଲା । ଏହି କମିଟି ଗଠନ ପରିପ୍ରେକ୍ଷୀରେ ଓଡ଼ିଶାର ଆର୍ଥିକ ସମ୍ବଳ, ପାରିପାର୍ଶ୍ୱିକ ଅବସ୍ଥା, ପ୍ରଶାସନିକ ସ୍ଥିତି ସମ୍ପର୍କରେ ଅନୁଧ୍ୟାନ, ଅନୁଶୀଳନ କରି ସୀମାରେଖା ନିର୍ଣ୍ଣୟ କରିବାକୁ ନିୟମ ଧାର୍ଯ୍ୟ କରାଗଲା ।

କମିଟିରେ ଏସ୍.ପି. ଓଡ଼ନେଲ ଅଧ୍ୟକ୍ଷ ଭାବେ ନିଯୁକ୍ତି ପାଇବା ସଙ୍ଗେ ସଙ୍ଗେ ଶ୍ରୀ ଟି.ଆର୍. ଫୁକନ ଏବଂ ଏଚ.ଏମ୍ ମେହେଟ୍ଟା ଅନ୍ୟତମ ସଦସ୍ୟ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶାରୁ ସହଯୋଗୀ ସଭ୍ୟ ଭାବେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ମିଷ୍ଟର ସଚ୍ଚିଦାନନ୍ଦ ସିହ୍ନା ବାର ଏଟ୍.ଲ. ଏବଂ ରାୟବାହାଦୁର ସି.ଭି.ଏସ୍. ନରସିଂହ ରାଜଗୁରୁ ପ୍ରମୁଖ ବରେଣ୍ୟ ବ୍ୟକ୍ତିମାନେ ନିଯୁକ୍ତି ପାଇଥିଲେ ।

ଉତ୍କଳ ସମ୍ମିଳନୀର ନେତୃମଣ୍ଡଳୀଙ୍କର ନିରବଚ୍ଛିନ୍ନ ସଂଗ୍ରାମ ଫଳରେ ୧୯୩୬ ମସିହା ଏପ୍ରିଲ୍ ମାସ ୧ ତାରିଖ ଦିନ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ପରି ୬ଟି ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ସ୍ୱତନ୍ତ୍ର ଉତ୍କଳ ଗଠନ ସମୟରେ ଓଡ଼ିଶାର ଲୋକସଂଖ୍ୟା ୮୦ ଲକ୍ଷ ୪୩ ହଜାର ୬୮୧ ଜଣ ଥିଲେ ଏବଂ ଏହାର ଭୌଗଳିକ ଆୟତନ ୩୨ ହଜାର ୬୯୫ ବର୍ଗ ମାଇଲ୍ ରହିଥିଲା ।

ଆମ ଦେଶ ସ୍ୱାଧୀନ ହେବା ପରେ ଲୌହମାନବ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱରେ ବିଭିନ୍ନ ଦେଶୀୟ ରାଜ୍ୟମାନେ ଭାରତବର୍ଷ ସହିତ ସାମିଲ ହୋଇଥିଲେ । ୧୯୪୭ ମସିହା ଡ଼ିସେମ୍ବର ମାସ ୧୪ ତାରିଖ ଦିନ ଓଡ଼ିଶାର ୨୫ ଗୋଟି ଦେଶୀୟ ରାଜ୍ୟ ଓଡ଼ିଶା ସହିତ ମିଶିଥିଲେ ଏବଂ ଏହାର ଏକ ବର୍ଷ ପରେ ୧୯୪୯ ମସିହା ଜାନୁଆରୀ ପହିଲା ଦିନ ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ଘଟିଥିଲା । ୧୯୪୮ ମସିହା ଜାନୁଆରୀ ପହିଲା ଦିନ ଷଢ଼େଇକଳା ଏବଂ ଖରସୁଆଁ ଓଡ଼ିଶାରେ ମିଶିଥିଲେ ମଧ୍ୟ ୧୯୪୮ ମସିହା ମେ'ମାସ ୧୬ ତାରିଖ ଦିନ ସେହି ଦୁଇଟି ଓଡ଼ିଆ ଭାଷୀ ଅଞ୍ଚଳକୁ ଓଡ଼ିଶାରୁ ଛଡ଼ାଇ ନିଆଯାଇ ବିହାରରେ ମିଶାଇ ଦିଆଯାଇଥିଲା । ୧୯୫୩ ମସିହାରେ ରାଜ୍ୟ ପୁନର୍ଗଠନ ଆୟୋଗ ଗଠିତ ହେବା କାଳରେ ଓଡ଼ିଶା ତା'ର ନ୍ୟାଯ୍ୟ ଦାବି ହାସଲ କରିପାରିବ ବୋଲି ଆଶା କରାଯାଉଥିଲା କିନ୍ତୁ ୧୯୫୬ ମସିହାରେ ସୀମା କମିଶନ ଦେଇଥିବା ରିପୋର୍ଟରେ ଷଢ଼େଇକଳା ଖରସୁଆଁ ଓଡ଼ିଶାକୁ ଫେରାଇ ଦିଆଯିବା ସମ୍ପର୍କରେ ନିରବ ରହିବାର ପ୍ରତିବାଦ କରି ଛାତ୍ର ଯୁବକମାନେ ହରତାଳ ଆଦି ସଂଗଠିତ କରିବାକୁ ଲାଗିଲେ । ସୀମା ବିବାଦୀୟ ହରତାଳମାନ ଚାଲିଥିବା ବେଳେ ସୁନୀଲ ଦେ ଏବଂ ବେଙ୍ଗ ପାଣିଆ ନାମରେ ଦୁଇଜଣ ଯୁବକ ପୋଲିସ ଗୁଳିର ଶିକାର ହୋଇ ସହିଦ୍ ହୋଇଥିଲେ ।

ଉତ୍କଳ ଦିବସ ପାଳନ ନାମରେ ବର୍ଣ୍ଣାଢ଼୍ୟ ସଭାସମିତି କରି କିମ୍ବା ଆତସବାଜି ଆଦି ଫୁଟାଇ ଦେଲେ ଏହାର ମର୍ଯ୍ୟାଦା ବୃଦ୍ଧି ପାଇଯିବ ନାହିଁ । ଅତୀତର ଘଟଣାବଳୀକୁ ପର୍ଯ୍ୟାଲୋଚନା କରି ଓଡ଼ିଶାର ଦାବି ହାସଲ ପାଇଁ ଆନ୍ତରିକ ରାଜନୈତିକ ଇଚ୍ଛାଶକ୍ତି ଆବଶ୍ୟକ । କାରଣ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନର ମୂଳ ଲକ୍ଷ୍ୟ ଥିଲା ଓଡ଼ିଆ ଭାଷାର ସୁରକ୍ଷା ଓ ଓଡ଼ିଆ ଭାଷା-ଭାଷୀ ଅଞ୍ଚଳର ଭୌଗୋଳିକ ଏକତ୍ରୀକରଣ ।

ଆଡ଼ଭୋକେଟ
ସା/ପୋ: ଖଣ୍ଡପଡ଼ା,
ଜି- ନୟାଗଡ଼



# କାକଟପୁରର ମା' ମଙ୍ଗଳା

**ଦେବପ୍ରସାଦ ମିଶ୍ର**

ଇତିହାସ ପ୍ରସିଦ୍ଧ ପୁଣ୍ୟତୋୟା ପ୍ରାଚୀ ନଦୀ ଅବବାହିକାରେ ପ୍ରତିଷ୍ଠିତା ମଙ୍ଗଳାପୀଠ ଓଡ଼ିଶାରେ ଶକ୍ତି ଉପାସନାର ଏକ ବଳିଷ୍ଠ ନିଦର୍ଶନ । ଆମରାଜ୍ୟରେ ଶକ୍ତି ଉପାସନାର ଇତିହାସ ବହୁ ପ୍ରାଚୀନ । ଗୁପ୍ତ ବଂଶ ରାଜତ୍ୱ କାଳରେ ଲିଖିତ ବାୟୁପୁରାଣ ଶକ୍ତି ଉପାସନାର ପ୍ରାଚୀନତା ପ୍ରମାଣ କରେ । ବାୟୁ ପୁରାଣ ଅନୁଯାୟୀ ଦକ୍ଷ ଯଜ୍ଞରେ ଶିବଙ୍କୁ ନିମନ୍ତ୍ରଣ କରାଯାଇନଥିଲା । ଏଥିପାଇଁ ସତୀ ଅତ୍ୟନ୍ତ କ୍ଷୁବ୍ଧା ହୋଇ ସ୍ୱେଚ୍ଛାରେ ପିତା ଦକ୍ଷଙ୍କ ଯଜ୍ଞରେ ଯୋଗଦାନ କଲେ । କିନ୍ତୁ ପିତାଙ୍କଠାରୁ ଉପଯୁକ୍ତ ସମ୍ଭାଷଣ ନ ପାଇ ଯଜ୍ଞାନଳରେ ସେ ଆତ୍ମ ବିସର୍ଜନ କଲେ । ଉକ୍ତ ସମ୍ବାଦ ପାଇ ଶିବ ଅତ୍ୟନ୍ତ କ୍ରୋଧୀ ହୋଇ ଉଠିଲେ, ତାଙ୍କ କୋପାନଳରୁ ପୃଥିବୀକୁ ରକ୍ଷା କରିବାକୁ ଯାଇ ବିଷ୍ଣୁ ଶକ୍ତିଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରିଦେଲେ । ଶକ୍ତିଙ୍କର ଶରୀର ଖଣ୍ଡ ଖଣ୍ଡ ହୋଇ ଯେଉଁ ସ୍ଥାନରେ ନିପତିତ ହେଲା, ତାହା ଶକ୍ତି ପୀଠ ରୂପେ ପରିଗଣିତ ହେଲା । ଓଡ଼ିଶାରେ ଶକ୍ତି ମହିଷ ମର୍ଦ୍ଦିନୀ ଦୁର୍ଗା, ପାର୍ବତୀ, ଚଣ୍ଡୀ, ସପ୍ତମାତୃକା, ଚାମୁଣ୍ଡା, ବାରାହୀ, କାଳୀ, ମଙ୍ଗଳା ପ୍ରଭୃତି ନାମରେ ପୂଜିତ ହୁଅନ୍ତି । ଆମ ରାଜ୍ୟର ପ୍ରତ୍ୟେକ ପୁରପଲ୍ଲୀରେ ଗୃହଦେବତୀ ବା ଗ୍ରାମଦେବତୀ ପୂଜାରୁ ଶକ୍ତି ଉପାସନାର ବ୍ୟାପକତା ପ୍ରମାଣିତ ହୁଏ ।

କାକଟପୁର ମଙ୍ଗଳା କ୍ଷେତ୍ରର ପ୍ରତିଷ୍ଠା ସଂପର୍କରେ ନାନା ପ୍ରକାରର କିମ୍ବଦନ୍ତୀ ଶୁଣିବାକୁ ମିଳେ । ବିଗ୍ରହଟିକୁ ସର୍ବାଙ୍ଗ ସୁନ୍ଦର କରିବାକୁ ଶିଳ୍ପୀମାନଙ୍କର କଠିନ ଶ୍ରମର ପରିଣତି ମଙ୍ଗଳା ବିଗ୍ରହ ଓଡ଼ିଶୀ ଶିଳ୍ପ କଳାର ଏକ ଦୁର୍ଲ୍ଲଭ ନିଦର୍ଶନ । ପ୍ରସ୍ଫୁଟିତ ପଦ୍ମ ଉପରେ ଲଳିତ ଆସନରେ ଦେବୀ ବିରାଜିତା । ଦେବୀଙ୍କ ବାମ ପାଦ ଦକ୍ଷିଣ ଜାନୁ ଉପରେ ଥାପିତ । ଏହା ଚତୁଷ୍କୋଣ ବିଶିଷ୍ଟ କଳା ମୁଗୁନି ପଥରରେ ଖୋଦିତ ଦେବୀ ବିଗ୍ରହର ଉପର ଭାଗର ଦୁଇ ଦିଗରେ ପରୀଦ୍ୱୟ ହସ୍ତରେ ପୁଷ୍ପମାଳା ଧାରଣ କରିଛନ୍ତି । ଉପର ଦକ୍ଷିଣ ହସ୍ତ ପୂର୍ଣ୍ଣଚାନ୍ଦ, ନିମ୍ନ ଦକ୍ଷିଣ ହସ୍ତ ଜପମାଳା, ବାମ ଉପରହସ୍ତ ପଦ୍ମକଳିକା ଓ ବାମତଳ ହସ୍ତ ଜପ ମୁଦ୍ରାଙ୍କନରେ ଶୋଭିତ । ପ୍ରସନ୍ନ ଗୋଲାକାର ମୁଖମଣ୍ଡଳ ବିଗ୍ରହର ପାର୍ଶ୍ୱବର୍ତ୍ତୀ ସ୍ଥାନ ପୁଷ୍ପଲତା ଶୋଭିତ ଖୋଦିତ । ଯୋଗେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କ ଅନୁଯାୟୀ ଦେବୀଙ୍କ ଧ୍ୟାନ ନିମନ୍ତେ ନିମ୍ନମତେ ବର୍ଣ୍ଣିତ ହୋଇଛି – ''ପ୍ରାଚୀ ପୂର୍ବତଟେ ପୟୋଧି ନିକଟେ, ପଥୋଜ ପୁଷ୍ପେସ୍ଥିତାଂ । ମାଳା ସଂଖ୍ୟା ପୂର୍ଣ୍ଣ ଶଶାଙ୍କ ପଦ୍ମକଳିକା ନକ୍ଷତ ମାଳା ଧରାଂ । ଭୁଜୋବାହୁଚତୁଷ୍ଟୟେନ, ସଂହିତା ନାନା ବିଭୂତଶୋଜଜ୍ୱଳାଂ । ଶାନ୍ତା ସର୍ବବର ପ୍ରଦା ଓ କୁଶଳା ଧ୍ୟାୟେତ ସଦା ମଙ୍ଗଳା ।''

ଶ୍ରୀଜଗନ୍ନାଥଙ୍କର ନବକଳେବର ସମୟରେ ଶ୍ରୀମନ୍ଦିରର ସେବକମାନେ ମଙ୍ଗଳା ପୀଠକୁ ଶୁଭଯାତ୍ରା କରନ୍ତି । ଦେବୀଙ୍କ ନିକଟକରେ ବନଯଜ୍ଞାଦି ସମାପନ କରିବା ପରେ ସେବକମାନେ ଶ୍ରୀବିଗ୍ରହ ନିମନ୍ତେ ଦାରୁ ଅନ୍ୱେଷଣରେ ବହିର୍ଗତ ହୁଅନ୍ତି । ଲୋକମୁଖରୁ ଶୁଣାଯାଏ ଯେ, ଏକଦା ଶ୍ରୀମନ୍ଦିର ସେବକମାନେ ଦାରୁ ଅନ୍ୱେଷଣରେ ମଙ୍ଗଳାଙ୍କ ନିକଟକୁ ଆସି ଦେଖିଲେ ଯେ, ମନ୍ଦିରରୁ ଦେବୀ ବିଗ୍ରହ ଅନ୍ତର୍ହିତ । ବଟ ଓ ହଟ ନାମକ ଦୁଇଜଣ ସେବକଙ୍କ ଭକ୍ତିପୂତ ଆରାଧନା ବଳରେ ଜଣାଗଲା ନିକଟବର୍ତ୍ତୀ ପ୍ରାଚୀ ନଦୀରେ ଦେବୀ ଜଳମଗ୍ନା । ତାଙ୍କୁ ସେଠାରୁ ଉଦ୍ଧାର କରିବା ନିମନ୍ତେ ସେ ଦୁହେଁ ବହୁ ଉଦ୍ୟମ କରିବା ସତ୍ତ୍ୱେ ଦେବୀ ପ୍ରସନ୍ନ ନ ହେବାରୁ ସେବକଦ୍ୱୟ ଅଗ୍ନିରେ

ପ୍ରାଣପାତ ନିମନ୍ତେ ଉଦ୍ୟତ ହେବାରୁ ଦେବୀ ଆବିର୍ଭୂତା ହେଲେ । ଚୈତ୍ରର କୌଣସି ଏକ ମଙ୍ଗଳବାର ଦିନ ଏହା ଘଟିଥିଲା । ସେହି ପବିତ୍ର ସ୍ମୃତିର ସ୍ମାରକୀ ରୂପେ ପ୍ରତ୍ୟେକ ବର୍ଷ ଚୈତ୍ର ମାସର ମଙ୍ଗଳବାର ଦିନ ପ୍ରତ୍ୟେକ ପ୍ରାଚୀନଦୀରୁ ପାଣି ତୋଳା ହୋଇଥାଏ । ଚୈତ୍ର ମାସର ପ୍ରଥମ ମଙ୍ଗଳବାର ଦିନ ପ୍ରାଚୀ ନଦୀରୁ ଜଳଘଟ ଅଣାଯାଇ ମଙ୍ଗଳାଙ୍କ ସମୀପରେ ରଖାଯାଏ । ଦେବୀଙ୍କର ଫୁଲମାଳ ଘଟରେ ଦିଆଯିବା ପରେ ଜଳଘଟକୁ ମୁଣ୍ଡରେ ରଖି ପାଟୁଆମାନେ ପାରମ୍ପରିକ ନାଚ କରିଥାନ୍ତି । ଜଳ କଳସୀଟି ପଞ୍ଚମୁଖୀ ହୋଇଥାଏ । ସେଥିରେ ବିଭିନ୍ନ ପୁଷ୍ପ ଦ୍ୱାରା ସୁସଜ୍ଜିତ ହୋଇ ସଂଯୁକ୍ତ ରହିଥାଏ । ଘଟ ପାଟୁଆମାନେ ଗୋଡ଼ରେ କାଠ ରଣପା ଲଗାଇ କ୍ଷିପ୍ର ଗତିରେ ବେଢ଼ା ବାହାରେ ମଧ୍ୟ ବିଭିନ୍ନ ଭଂଗୀରେ ନାଚ କରିଥାନ୍ତି । ଏହି ଦିନ ମନ୍ଦିର ଚୂଡ଼ାରେ ନୂତନ ପତାକା ବନ୍ଧାଯାଏ । ଏହା ନେତ୍ରୋତ୍ସବ ନାମରେ ନାମିତ । ଏହି ଦିନଠାରୁ ଦେବୀଙ୍କର ପ୍ରଥମ ପାଳି ଯାତ୍ରା ଆରମ୍ଭ ହୁଏ । ଚୈତ୍ର ମାସର ଅନ୍ୟାନ୍ୟ ମଙ୍ଗଳବାରଗୁଡ଼ିକରେ ମଧ୍ୟ ଉପରୋକ୍ତ ନୀତିରେ ଉତ୍ସବ ପାଳିତ ହୁଏ । ଶେଷ ମଙ୍ଗଳବାର ଦିନ ପ୍ରାଚୀନ ପ୍ରାଚୀ ନଦୀର ଘଟତୋଳା ଘାଟରେ ସୂର୍ଯ୍ୟ ପୂଜା ଆଦି କରାଯାଇ ପୂର୍ବ ମଙ୍ଗଳବାରଗୁଡ଼ିକ ପରି ମହାସମାରୋହରେ ଜଳଘଟଧାରୀମାନେ ସିଂହଦ୍ୱାର ଦେଇ ମନ୍ଦିରରେ ପ୍ରବେଶ କରନ୍ତି । ଦେବୀଙ୍କର ଛଡ଼ା ଫୁଲମାଳ ଲାଗି ହେଲାପରେ ପୂର୍ବ ରୀତିରେ ପାଟୁଆନାଚ ହୁଏ । ଏହାପରେ ପାଟୁଆମାନେ ଝାମୁ ପଡ଼ିଆକୁ ଯାନ୍ତି । ସେଠାରେ ପୂର୍ବରୁ ପ୍ରାୟ ୩ ମି. ଲମ୍ବ, ୪୭ ସେ.ମି. ଓସାର ଓ ୪୦ ସେ.ମି. ଗଭୀର ଖାଇ ଖୋଳାଯାଇ ସେଥିରେ କାଠ କୋଇଲା ନିଆଁ ଜାଳି ଦିଆଯାଏ । ପାଟୁଆମାନେ ତହିଁରେ ପ୍ରବେଶ କରନ୍ତି । ଏହା ଝାମୁ ଯାତ୍ରା ନାମରେ ପ୍ରସିଦ୍ଧ । ଏହି ଦିନଠାରୁ ପ୍ରାୟ ୧ ମାସ ଧରି କାକଟପୁରଠାରେ ଯାତ୍ରା ଅନୁଷ୍ଠିତ ହୁଏ ।

ମଙ୍ଗଳାଙ୍କର ମନ୍ଦିରଟି ସେତେ ପ୍ରାଚୀନ ନୁହେଁ । ମୁଖ୍ୟ ମନ୍ଦିର ଓ ମୁଖଶାଳା ଯଥାକ୍ରମେ ୧୭ ମିଟର ଓ ୧୪ ମିଟର ଉଚ୍ଚ । ଓଡ଼ିଶାର ପ୍ରାଚୀନ ମନ୍ଦିରଗୁଡ଼ିକ ପରି ଚାରୁକଳା ସେ ମନ୍ଦିରରେ ଦେଖାଯାଏ ନାହିଁ । ତ୍ରିଦ୍ୱାର ବିଶିଷ୍ଟ ମୁଖଶାଳାର ଦକ୍ଷିଣଦ୍ୱାର ଦେଇ ରୋଷ ଘରକୁ ରାସ୍ତା । ଏହାକୁ 'ଅଚିନ୍ତା ପହଣ୍ଡ' କୁହାଯାଏ । ମୁଖଶାଳା ସଂଯୁକ୍ତ ମଣ୍ଡପଟି ଦୁଇଭାଗରେ ବିଭକ୍ତ । ପ୍ରଥମ ମଣ୍ଡପର ଦକ୍ଷିଣ କାନ୍ଥକୁ ଲାଗି ପ୍ରାୟ ୧ ମିଟର ଉଚ୍ଚ କଳା ମୁଗୁନି ପଥର ଦେବୀଙ୍କର ବିଶ୍ରାମ ଶିଳା ରୂପେ ପରିଚିତ । ଲୋକଙ୍କଠାରୁ ଶୁଣିବାକୁ ମିଳେ ଯେ, ଦେବୀ ପ୍ରତ୍ୟହ ପୁରୀରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରି ଫେରିବା ପରେ, ଏହି ପଥର ଉପରେ କିଛି ସମୟ ବିଶ୍ରାମ କରନ୍ତି । ଉକ୍ତ ପ୍ରସ୍ତରର କ୍ଷୟାଂଶ ଜଣେ ପୂର୍ଣ୍ଣ ବୟସ୍କ ଲୋକର କ୍ରମାଗତ ଉପବେସନକୁ ସୂଚାଇଦିଏ । ପୂର୍ବେ ବର୍ତ୍ତମାନର ମଣ୍ଡପ ସ୍ଥାନରେ କାଷ୍ଠ ନିର୍ମିତ ମଣ୍ଡପ ଥିଲା । ୧୮୯୨ ଖ୍ରୀଷ୍ଟାବ୍ଦ ଝଡ଼ ତୋଫାନରେ ଏହା ଭାଙ୍ଗି ପଡ଼ିବାରୁ ସ୍ଥାନୀୟ ଭକ୍ତମାନଙ୍କ ଉଦ୍ୟମରେ ବର୍ତ୍ତମାନର ପକ୍କା ଛାତ ନିର୍ମିତ ହୋଇଛି । ମଣ୍ଡପ ଛାତର ଗୋଟିଏ କଡ଼ରୁ ଏକ ପ୍ରକାଣ୍ଡ ଘଣ୍ଟି ଶିକୁଳିରେ ଦୋଳାୟମାନ । ଏହି ଘଣ୍ଟି ଉପରେ ଇଂରାଜୀରେ Grace 15th May, 1927 ଲେଖାଅଛି । ଉକ୍ତ ଘଣ୍ଟିଟି ପର୍ତ୍ତୁଗୀଜ ନାବିକମାନଙ୍କ ଦ୍ୱାରା ପ୍ରଦତ୍ତ ବୋଲି ବହୁ ଲୋକ ମତଦିଅନ୍ତି । ପାର୍ଶ୍ୱ ଦେବତା ରୂପେ ଗଣେଶ ଓ ଦୁଇଟି ବିଷ୍ଣୁ ମୂର୍ତ୍ତି ବିଦ୍ୟମାନ । ବିଷ୍ଣୁମୂର୍ତ୍ତିଦ୍ୱୟ କାରୁକାର୍ଯ୍ୟ ଦୃଷ୍ଟିରୁ ମନୋମୁଗ୍ଧକର ଓ ହୃଦୟସ୍ପର୍ଶୀ । ମନ୍ଦିର ବେଢ଼ା ମଧ୍ୟରେ ଏକ କ୍ଷୁଦ୍ର ପ୍ରକୋଷ୍ଠରେ ପତିତପାବନ ବିଗ୍ରହ ଓ ତାଙ୍କ ନିମନ୍ତେ ସ୍ନାନ ମଣ୍ଡପ ଅଛି । ଦେବୀଙ୍କର ପ୍ରତିଦିନ ପାଞ୍ଚଧୂପ ହୋଇଥାଏ ।

ଝାମୁଯାତ୍ରା ବ୍ୟତୀତ ଆଶ୍ୱିନ ମାସରେ ଷୋଳଦିନ ପର୍ଯ୍ୟନ୍ତ ଦେବୀଙ୍କର ଶାରଦୀୟ ପୂଜା ଅନୁଷ୍ଠିତ ହୁଏ । ଶାରଦୀୟ ପୂଜାର ପଞ୍ଚମୀରେ ତୀର କମାଣ, ଷଷ୍ଠୀରେ କାତିଖପର, ସପ୍ତମୀରେ ସିଂହବାହିନୀ ଓ ଅଷ୍ଟମୀରେ କାଳୀ ବେଶ ହୁଏ ।

---

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ–୮

# ଓଡ଼ିଶାରେ ମାଧବ ଆରାଧନା

**ଜାନକୀବଲ୍ଲଭ ପଟ୍ଟନାୟକ**

ମଙ୍ଗଳ ବାଚନରେ ଭଗବାନଙ୍କର 'ମାଧବ' ନାମଟି ବିଶେଷତଃ ବୋଲାଯାଏ । ଭଗବାନଙ୍କର ଅନେକ ନାମ ଥିଲେ ମଧ୍ୟ ମାଧବ ନାମର ବିଶେଷତ୍ୱ ପରିଲକ୍ଷିତ ହୁଏ । ଯେକୌଣସି ମାଙ୍ଗଳିକ କାର୍ଯ୍ୟରେ ବ୍ରାହ୍ମଣ, ବୈଷ୍ଣବମାନେ ଉଚ୍ଚାରଣ କରନ୍ତି–

ମାଧବୋ ମାଧବୋ ବାଚି ମାଧବୋ ମାଧବୋ ହୃଦି
ସ୍ମରନ୍ତି ସାଧବଃ ସର୍ବେ ସର୍ବକାର୍ଯ୍ୟେଷୁ ମାଧବମ୍ ॥
ପୁଣ୍ଡରୀକାକ୍ଷ ଗୋବିନ୍ଦ ମାଧବାଦୀଂଶ୍ଚ ଯଃ ସ୍ମରେତ୍
ମାଧବଂ ପୁଣ୍ଡରୀକାକ୍ଷଂ ବିଷ୍ଣୁ ନାରାୟଣଂ ହରିମ୍ ॥

ଶ୍ରୀଗୌର ନିଜଜନ ଶ୍ରୀମଦ୍ ଭକ୍ତିବିନୋଦ ଠାକୁର ଗାଇଛନ୍ତି ରାଧା ମାଧବ କୁଞ୍ଜବିହାରୀ ଗୋପୀ ଜନବଲ୍ଲଭ ଗିରିବରଧାରୀ । ଏସବୁରୁ ମାଧବ ନାମର ମହିମା ଶାସ୍ତ୍ରରେ ପରିଦୃଷ୍ଟ ହୁଏ । ଭାରତ ଭୂଖଣ୍ଡର ଉତ୍କଳ ପ୍ରଦେଶ ଅତ୍ୟନ୍ତ ପ୍ରାଚୀନ । ବେଦୋକ୍ତ କ୍ରିୟା ଏଠାରେ ବିଶେଷ ଦେଖାଯାଏ । ଅଥର୍ବ ବେଦର ରଚନା ଉତ୍କଳ ଭୂମିରେ ବୋଲି ଅନେକଙ୍କର ମତ । ଶ୍ରୀଜଗନ୍ନାଥ ଧାମ ବହୁ ପ୍ରାଚୀନ । ସେ ବିଷ୍ଣୁ, କୃଷ୍ଣ ଓ ମାଧବ ଏଥିରେ ସନ୍ଦେହ ନାହିଁ ।

ସମସ୍ତେ ଜାଣନ୍ତି ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ପ୍ରାକ୍ ଅବସ୍ଥା, ପ୍ରାଗ୍ ବିଗ୍ରହ ଶ୍ରୀମାଧବ ବା ନୀଳମାଧବ । ଶ୍ରୀକ୍ଷେତ୍ରରେ ଚତୁର୍ଦ୍ଧାମୂର୍ତ୍ତି ରୂପେ ପ୍ରକଟ ହେବା ପୂର୍ବରୁ ସେ ଥିଲେ ନୀଳମାଧବ, ଶଙ୍ଖଚକ୍ର, ଗଦାପଦ୍ମଧାରୀ ବିଷ୍ଣୁ । ବଙ୍ଗୀୟ ପଦକର୍ତ୍ତା ଗୌର ପାର୍ଷଦ ଶ୍ରୀ ବାସୁଦେବ ଘୋଷ ଏଥିପାଇଁ ଗାଇଛନ୍ତି, ନୀଳାଚଳେ ଶଙ୍ଖଚକ୍ର ଗଦାପଦ୍ମ ଧର, ନଦୀଆ ନଗରେ ଦଣ୍ଡକମଣ୍ଡଳୁ କର' । ପୂର୍ବର ଶ୍ରୀକ୍ଷେତ୍ରର ନୀଳମାଧବ, ନିଆଳିର ମାଧବ, କଣ୍ଟିଲୋର ନୀଳମାଧବ ସବୁ ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି । ୨୪ ବିଷ୍ଣୁ ବିଗ୍ରହ ମଧ୍ୟ ସମସ୍ତେ ଚତୁର୍ଭୁଜ, ଏହା ବୈଦିକ ସିଦ୍ଧାନ୍ତ । ଆଉ ଏଇ ଚତୁର୍ଭୁଜ ବିଷ୍ଣୁ ମାଧବ ଉପାସନା ଉତ୍କଳର ପ୍ରାଚୀନ ପରଂପରା । ଶ୍ରୀକୃଷ୍ଣଙ୍କୁ ବୃନ୍ଦାବନରେ ସିନା ବଂଶୀଧାରୀ ରୂପେ ଦେଖାଗଲା, ମାତ୍ର ଶ୍ରୀକୃଷ୍ଣଙ୍କ ପ୍ରକଟ ସମୟରେ ଏବଂ ଦ୍ୱାରକାରେ ସେ ଅଧିକାଂଶ ସମୟରେ ଚତୁର୍ଭୁଜ ବିଷ୍ଣୁ ରୂପେ, ଶେଷରେ ଅପ୍ରକଟ ସମୟରେ ସେ ମଧ୍ୟ (ଭାଗବତ ୧୧/୩୦/୩୬) ବିଷ୍ଣୁ ରୂପେ ଏବଂ (ଭାଗବତ ୧୧/୩୦/୩୬) ବିଷ୍ଣୁ ରୂପ ହିଁ ଧାରଣ କରିଥିବାରୁ ଏହା ହିଁ ତାଙ୍କର ମୂଳ ସ୍ୱରୂପ ବୋଲି ମନେହୁଏ । ଋଗ୍ ବେଦର ବହୁ ଶ୍ଳୋକରେ ବିଷ୍ଣୁ ହିଁ ପ୍ରତିପାଦିତ ହୋଇଛନ୍ତି । ବିଷ୍ଣୁରୁ ବୈଷ୍ଣବ ଅର୍ଥାତ୍ ବିଷ୍ଣୁଙ୍କ ସେବକ, ଆରାଧକ ହିଁ ବୈଷ୍ଣବ ରୂପେ ବିଖ୍ୟାତ ହେଲେ । ଶ୍ରୀରାମଙ୍କୁ ମଧ୍ୟ ବିଷ୍ଣୁ ରୂପରେ ବ୍ରହ୍ମାସ୍ତବ କରିଛନ୍ତି ଅପ୍ରକଟ ସମୟରେ । ବାଲ୍ମିକୀ ରାମାୟଣ ଉତ୍ତରାକାଣ୍ଡ ୧୦୯ ସର୍ଗରେ ଏକଥା ଉଲ୍ଲେଖ ଅଛି । ସେହିପରି କଳିପାବନାବତାରୀ ଶ୍ରୀମଦ୍ ଗୌରାଙ୍ଗଦେବ ମଧ୍ୟ ସ୍ୱପାର୍ଷଦମାନଙ୍କୁ ଚତୁର୍ଭୁଜ ବିଷ୍ଣୁ ରୂପ ପ୍ରଦର୍ଶନ କରିବାର ଶ୍ରୀଚୈତନ୍ୟ ଭାଗବତାଦିରେ ଅଛି । ଅଥର୍ବ ବେଦୀୟ ପୁରୁଷ ବୋଧିନୀ ସୂକ୍ତରେ ଶ୍ରୀଚୈତନ୍ୟ ଦେବଙ୍କୁ ଗୌରବର୍ଣ୍ଣ ବିଷ୍ଣୁ ଇତ୍ୟନେନ ସ୍ୱଶକ୍ତ୍ୟା ଚୈତନ୍ୟ ମେ ତ ପ୍ରାପ୍ତେ ଇତ୍ୟାଦି ବାକ୍ୟରୁ ମାଧବ ବିଷ୍ଣୁଙ୍କ ଉପାସନାର ପ୍ରାଚୀନତ୍ୱ ପ୍ରମାଣିତ ହୁଏ ।

ଏଣୁ ମାଧବ ଉପାସନା ହିଁ ଓଡିଶାର ପ୍ରାଚୀନ ପରଂପରା, ଧାରା ଏହା ନିଃସନ୍ଦେହ । ଯଦିଓ ଭାରତବର୍ଷର ଅନ୍ୟ ତୀର୍ଥରେ ବିଷ୍ଣୁ (ଚତୁର୍ଭୁଜ) ଉପାସନା ଅଛି ତଥାପି ଉତ୍କଳ

ଭୂମିରେ ମାଧବ ବିଷ୍ଣୁ ପୂଜାର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ପ୍ରତୀୟମାନ ହୁଏ । ଏତେ ମାଧବ ବିଗ୍ରହ ଭାରତର ଅନ୍ୟ ପ୍ରଦେଶରେ ବୋଧହୁଏ ନାହାନ୍ତି । ଐତିହାସିକମାନଙ୍କ ମତରେ ୭ମ ଶତାବ୍ଦୀ ପୂର୍ବରୁ ଚକ୍ରଧାରୀ ମାଧବଙ୍କ ପୂଜା ପ୍ରଚଳିତ ଥିଲା । ଓଡିଶାର ଉପକୂଳାଞ୍ଚଳରେ ଯଥା ଶ୍ରୀକ୍ଷେତ୍ରର ନୀଳମାଧବ, ପ୍ରାଚୀ ଉପତ୍ୟକାର ନିଆଳି ମାଧବଙ୍କ ସମେତ ବୌଦର ଗନ୍ଧରାଡି ଅଞ୍ଚଳରେ ମଧ୍ୟ ମାଧବ ପୂଜା ପ୍ରଚଳିତ ଥିଲା । ସପ୍ତମ ଶତାବ୍ଦୀରୁ ଗଙ୍ଗବଂଶ ରାଜତ୍ୱ ପର୍ଯ୍ୟନ୍ତ ପ୍ରାଚୀ ଉପତ୍ୟକା ଥିଲା ମାଧବ ଉପାସନାର ପ୍ରଧାନ ସ୍ଥଳୀ । ଶ୍ରୀଜୟଦେବ ଥିଲେ ଏହି ରାଧାମାଧବ ଉପାସକ । ତୁରିନ୍ତରା ଗ୍ରାମର ଅନନ୍ତ ବାସୁଦେବଙ୍କୁ ଜୟଦେବ ପୂଜା କରିଥିବାର ଜଣାଯାଏ । ନିଆଳି ଶୋଭନେଶ୍ୱର ମନ୍ଦିର, ବ୍ରହ୍ମମନ୍ଦିର, ଚହଟା, ଅମରେଶ୍ୱର, ପୀତପଡା, ସୁହାଗପୁର, ରାମେଶ୍ୱର ମନ୍ଦିର କୋଇକରାଦିରେ ମାଧବ ବିଗ୍ରହ ଅଛନ୍ତି, ଏସବୁ ଚତୁର୍ଭୁଜ । ପୁରୀ ଶ୍ୱେତଗଙ୍ଗା କୂଳରେ ଶ୍ୱେତମାଧବ, ମତ୍ସ୍ୟ ମାଧବାଦି ଅଛନ୍ତି । ପୁରୀ ଶ୍ରୀମନ୍ଦିର ରତ୍ନସିଂହାସନରେ ସମୁଦାୟ ଯେଉଁ ସପ୍ତଧାମୂର୍ତ୍ତି (୧) ଶ୍ରୀବଳଦେବ (୨) ସୁଭଦ୍ରା (୩) ସୁଦର୍ଶନ (୪) ଶ୍ରୀଜଗନ୍ନାଥ (୫) ଭୂଦେବୀ (୬) ଶ୍ରୀଦେବୀ (୭) ମାଧବ ଅଛନ୍ତି, ତନ୍ମଧ୍ୟରୁ ମାଧବ ଛୋଟ, ଜଗନ୍ନାଥ ମୂର୍ତ୍ତି । ରଥଯାତ୍ରାରେ ଚତୁର୍ଦ୍ଧାମୂର୍ତ୍ତି ଗଲାବେଳେ ରତ୍ନସିଂହାସନ ଖାଲିପଡେନି, ମାଧବ ମୂର୍ତ୍ତି ବିଦ୍ୟମାନ ଥାଆନ୍ତି । ଏହି ମାଧବ ଦୁର୍ଗାଙ୍କ ସହ ପୂଜାପାଇ ଦୁର୍ଗାମାଧବ ରୂପେ ପରିଚିତ ହୁଅନ୍ତି ଆଶ୍ୱିନ କୃଷ୍ଣାଷ୍ଟମୀଠାରୁ ଶୁକ୍ଳ ନବମୀ ଯାଏଁ । ଦୁର୍ଗାମାଧବ ପ୍ରଥମ ୮ଦିନ ବିମଳା ମନ୍ଦିରରେ ରହନ୍ତି, ଅପର ୮ ଦିନ ଦୋଳମଣ୍ଡପ ସାହି ନାରାୟଣୀ ମନ୍ଦିରକୁ ରଥରେ ଯାଆନ୍ତି । ଏହାକୁ ଶ୍ରୀକ୍ଷେତ୍ରରେ ଶାକ୍ତ ବା ଗୁପ୍ତ ଗୁଣ୍ଡିଚା କୁହାଯାଏ । ମାଧବ ବାହାରକୁ ଗଲେ ଚତୁର୍ଦ୍ଧାମୂର୍ତ୍ତି ରତ୍ନସିଂହାସନରେ ଉପସ୍ଥିତ ଥାଆନ୍ତି । ସିଂହାସନ ଶୂନ୍ୟ ପଡେନି । କାରଣ ନୀଳାଚଳ କୃଷ୍ଣଙ୍କର ନିତ୍ୟ ଲୀଳାସ୍ଥଳୀ । ଯାହା ହେଲେ ବି ମହାପ୍ରଭୁ ନୀଳାଦ୍ରି କଦାପି ଛାଡନ୍ତି ନାହିଁ ।

ପ୍ରାସାଦ ପ୍ରତିମା ଭଙ୍ଗେ ସଦା ତିଷ୍ଠାମି ସୁବ୍ରତ ।
ତିଷ୍ଠାମ୍ୟତ୍ର ସଦୈବାହଂ ପ୍ରସାଦ ପ୍ରତିମାକ୍ଷୟେ ॥

ମା' ଅର୍ଥରେ ମହାଲକ୍ଷ୍ମୀ ଅଥବା ଶ୍ରୀରାଧା, ବେଦରେ ଅଛି ରାଧିକାମାଧବୋଦେବୋ ମାଧବେନଚରାଧିକା', ଧବ ଅର୍ଥ ସ୍ୱାମୀ, ଲକ୍ଷ୍ମୀକାନ୍ତ, ରାଧାକାନ୍ତ- ରାଧାମାଧବ କହିଲେ ଶ୍ରୀକୃଷ୍ଣ ବିଷ୍ଣୁଙ୍କୁ ବୁଝାଏ । ବ୍ରହ୍ମ ବୈବର୍ତ୍ତ ପୁରାଣରେ ଅଛି, 'ମା' ଶବ୍ଦ ବ୍ରହ୍ମ ସ୍ୱରୂପା ନାରାୟଣୀ, ସନାତନୀ, ବିଷ୍ଣୁମାୟା, ମହାଲକ୍ଷ୍ମୀ, ବେଦମାତା, ସରସ୍ୱତୀ, ରାଧା, ବସୁନ୍ଧରା ଏବଂ ଗଙ୍ଗା । ଉକ୍ତ ବ୍ରହ୍ମସ୍ୱରୂପୀ ପ୍ରକୃତିର ଧବ ବା ସ୍ୱାମୀଙ୍କୁ ମାଧବ କୁହାଯାଏ ।

ମା ଚ ବ୍ରହ୍ମ ସ୍ୱରୂପା ଯ ମୂଳ ପ୍ରକୃତି ରିଶ୍ୱରୀ
ନାରାୟଣୀତି ବିଖ୍ୟାତା ବିଷ୍ଣୁମାୟା ସନାତନୀ ॥
ମହାଲକ୍ଷ୍ମୀ ସ୍ୱରୂପାଚ ବେଦମାତା ସରସ୍ୱତୀ
ରାଧା ବସୁନ୍ଧରା ଗଙ୍ଗା ତାସାଂ ସ୍ୱାମୀ ଚ ମାଧବ ॥
(ବ୍ର.ବ. ଶ୍ରୀକୃଷ୍ଣଖଣ୍ଡ ୧୧୦ଅ)

ସେହିପରି କୁହାଯାଇଛି 'ଯଦୁପୁତ୍ରସ୍ୟ' ମଧୋର ପତ୍ୟଂ ପୁମାନ୍ ଇତି ମଧୁ-ଅଣ ମାଧବ ଅର୍ଥାତ୍ ଶ୍ରୀକୃଷ୍ଣ, ଏ ସମସ୍ତ ପୃଥକ ନୁହଁନ୍ତି । ଆଦି ଶଙ୍କରାଚାର୍ଯ୍ୟପାଦ ବିଷ୍ଣୁ ଅର୍ଥରେ କୃଷ୍ଣଙ୍କୁ ହିଁ ଲକ୍ଷ୍ୟ କରିଛନ୍ତି । ତାଙ୍କ ପୁରୀ ଗୋବର୍ଦ୍ଧନ ମଠର ଇଷ୍ଟଦେବ ଗୋପାଳକୃଷ୍ଣ । ବ୍ରହ୍ମ ପୁରାଣରେ ଅଛି, ଇନ୍ଦ୍ରଦ୍ୟୁମ୍ନଙ୍କୁ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ଥିଲା, ବିଶ୍ୱକର୍ମା ଯେଉଁ ଦାରୁବିଗ୍ରହ ଆରମ୍ଭ କରିବେ ତନ୍ମଧ୍ୟରୁ ପ୍ରଥମ ମୂର୍ତ୍ତିଟି ଶ୍ରୀକୃଷ୍ଣ (ଜଗନ୍ନାଥ)ଙ୍କର ହିଁ ହେବ । ଶ୍ରୀକୃଷ୍ଣ-ବାସୁଦେବ-ମାଧବ-ବିଷ୍ଣୁ-ନାରାୟଣ ଏକ, ଭିନ୍ନ ଭିନ୍ନ ନୁହଁନ୍ତି । ଅଗ୍ନିପୁରାଣରେ ମାଧବଙ୍କ କଥା ଏହିପରି କୁହାଯାଇଛି ।

ଓମିତ୍ୟେକାକ୍ଷର ମନ୍ତ୍ରେ ସ୍ଥିତସର୍ବତୋହରିଃ
ମାଧବାୟେତି ବୈନାମ ଧର୍ମକାମାର୍ଥ ମୋକ୍ଷଦଂ
ସ୍କନ୍ଦ ପୁରାଣରେ ଅଛି ମହାପ୍ରଭୁ ଇନ୍ଦ୍ରଦ୍ୟୁମ୍ନଙ୍କୁ କହୁଛନ୍ତି-
ଯନ୍ ମାଧବ ମୂର୍ତ୍ତିତ୍ୱ ପୁରାପ୍ରାର୍ଥୀତ ବ୍ୟାନସି
ତସୈବ ପରିପାକୋୟ ମବତାର କୃତମୟା ॥ (୨୯/୫୪)

ଗୌଡୀୟ ସଂପ୍ରଦାୟରେ ଶ୍ରୀଗୌରହରିଙ୍କ ପ୍ରବର୍ତ୍ତିତ ନାମ ସଂକୀର୍ତ୍ତନରେ ଅଛି-

ହରିହରୟେ ନମଃ କୃଷ୍ଣ ଯାଦବାୟ ନମଃ
ଯାଦବାୟ ମାଧବାୟ କେଶବାୟ ନମଃ ॥

ବୌଦ ଗନ୍ଧରାଡିର ମାଧବ ମନ୍ଦିର ପୁରୀ ଶ୍ରୀମନ୍ଦିରଠାରୁ ପ୍ରାଚୀନ ବୋଲି କୁହାଯାଉଛି । ପ୍ରାଚୀ ନଦୀ ଓଡିଶାର ଏକ

ପ୍ରାଚୀନ ନଦୀ । ଏହା କୂଳରେ ବହୁଳ ମାଧବ ପୂଜାର ପ୍ରଚଳନ । ତ୍ରିବେଣୀ ମାଧବ, ଲଳିତ ମାଧବ, ରାଧାମାଧବ, ମୁଦ୍‌ଗଳମାଧବ ଇତ୍ୟାଦି ପ୍ରସିଦ୍ଧ । ଶ୍ରୀଜୟଦେବ ଥିଲେ ଏହି ମାଧବ, ଲଳିତ ବା ରାଧାମାଧବଙ୍କ ଉପାସକ ନିମ୍ବାର୍କପନ୍ଥୀ ବୈଷ୍ଣବ । ଶ୍ରୀଜୟଦେବଙ୍କ ପ୍ରଭାବ ହିଁ ଶ୍ରୀ ମାଧବେନ୍ଦ୍ର ପୁରୀ, ଈଶ୍ୱରପୁରୀ, ରାୟରାମାନଂଦ, ଶ୍ୟାମାନଂଦ, ରସିକାନଂଦ, ବଳଦେବ ବିଦ୍ୟାଭୂଷଣାଦିଙ୍କଠାରେ ପରିଲକ୍ଷିତ, ଯହିଁରୁ ଗୌଡୀୟ ସଂପ୍ରଦାୟର ଉଦ୍‌ଭବ । ଗୌଡୀୟ ଓ ଉତ୍କଳୀୟ ବୈଷ୍ଣବ ଏପରି ପରେ ସିନା ଭେଦ ସୃଷ୍ଟି ହେଲା, ନତୁବା ଏ ଦୁଇଧାରାରେ ହିଁ ଶ୍ରୀ ଜୟଦେବଙ୍କ ପ୍ରଭାବରେ ପାରକୀୟ ଉଜ୍ଜ୍ୱଳ ରସ ସ୍ରୋତ ପ୍ରବହମାନ । ଶ୍ରୀଜୟଦେବଙ୍କ ପୂର୍ବରୁ ଓଡିଶାରେ ମାଧବ ଉପାସନା ଥିଲା । ପ୍ରାଚୀ ମାହାତ୍ମ୍ୟରେ ଦ୍ୱାଦଶ ମାଧବଙ୍କ କଥା ଅଛି । ଶ୍ରୀଜୟଦେବଙ୍କ ସମୟରୁ ବିଶେଷ ଭାବେ ଶ୍ରୀଜଗନ୍ନାଥ ରାଧାମାଧବ ସମ୍ମିଳିତ ବିଗ୍ରହ ରୂପେ ପରିଚିତ ହେଲେ ବୋଲି କୁହାଯାଏ । ପରବର୍ତ୍ତୀ କାଳରେ କଳିର ଯୁଗାବତାରୀ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ଶ୍ରୀରାଧାକୃଷ୍ଣଙ୍କ ସମ୍ମିଳିତ ମୂର୍ତ୍ତି ଏବଂ ଶ୍ରୀଜଗନ୍ନାଥଙ୍କୁ ମଧ୍ୟତଦ୍‌ବତ୍ ରାଧାକୃଷ୍ଣ ମିଳିତ ବିଗ୍ରହ ଭାବେ ଉପାସନା କରାଗଲା । ଏସବୁର ମୂଳରେ ମୁଖ୍ୟତଃ ଓଡିଶାର ରାଧାମାଧବ ଉପାସନା ଓ ଶ୍ରୀଜୟଦେବ ଗୋସ୍ୱାମୀଙ୍କ ପ୍ରଭାବକୁ କୌଣସି ପ୍ରକାରେ ଅସ୍ୱୀକାର କରି ହେବନାହିଁ ।

ଦ୍ୱାଦଶ ଶତାବ୍ଦୀରେ ବଙ୍ଗଦେଶରେ ରାଧାକୃଷ୍ଣ ଗୋପୀନାଥ ପୂଜାଦିର କୌଣସି ସୂଚନା ମିଳେନି କି ସେଠାରେ କୌଣସି ପ୍ରାଚୀନ ମନ୍ଦିର କିମ୍ବା ମନ୍ଦିର ଗାତ୍ରରେ ଦଶାବତାର ତଥା ମନ୍ଦିରରେ ଠାକୁରଙ୍କ ପାଖେ ଦଶାବତାର ସ୍ତୋତ୍ର ଗାନ ପରିଲକ୍ଷିତ ହୁଏନି । ଓଡିଶାର ପ୍ରାଚୀ ଉପତ୍ୟକାର ବିଭିନ୍ନ ମନୋରମ ମାଧବ ବିଗ୍ରହ ଦର୍ଶନ କରି ଉତ୍କଳ କବି ଶ୍ରୀଜୟଦେବ ଗୀତଗୋବିନ୍ଦ ମହାକାବ୍ୟ ରଚନା ପୂର୍ବକ ସେଥିରେ ହିଁ ରାଧାମାଧବଙ୍କ ଅପ୍ରାକୃତ ପ୍ରେମ ଲୀଳା ବର୍ଣ୍ଣନା କଲେ, ଯାହାକି ଗୌଡୀୟମାନଙ୍କର ମୂଳଧ୍ୟେୟ ହେଲା । ଓଡିଆ ବିଶ୍ୱମ୍ଭର ମିଶ୍ର ଯିଏ କି ପରେ ସମଗ୍ର ବିଶ୍ୱରେ ପ୍ରେମପୁରୁଷୋତ୍ତମ ଶ୍ରୀଚୈତନ୍ୟ ଦେବ ନାମରେ ପ୍ରସିଦ୍ଧି ଲାଭ କଲେ, ସେ ହିଁ ମୁଖ୍ୟତଃ ଆସ୍ୱାଦନ କରୁଥିଲେ । ଏହି ଜୟଦେବ କବି ପ୍ରଣୀତ ଗୀତଗୋବିନ୍ଦ । ପ୍ରାଚୀକୂଳ ଚହଟା ଗ୍ରାମରେ ଏବେ ଅଛନ୍ତି ଲଳିତ ମାଧବ ଅତ୍ୟନ୍ତ ମନୋରମ ବିଗ୍ରହ, ଯାହାଙ୍କ ଆକର୍ଷଣରେ ମହାକବି ଜୟଦେବ ଗୀତଗୋବିନ୍ଦର ବିଭିନ୍ନ ସ୍ଥାନରେ' ରାଧାମାଧବୟୋର୍ଜୟନ୍ତୀ ଯମୁନା କୂଳେ ରହକେଳୟ, 'ରାଧାମାଦାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀ,' ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ' ଇତ୍ୟାଦି ଶବ୍ଦ ଯୋଜନା କରିଛନ୍ତି । ଏହି ଲଳିତ ମାଧବଙ୍କର ଅପୂର୍ବ ଲାଳିତ୍ୟ ଚରିତ୍ର ଚିତ୍ରଣରେ ଜୟଦେବ ଶତମୁଖ ହୋଇ ଉଠିଛନ୍ତି । ଚତୁର୍ଭୁଜ ରୂପରେ ଯେ ଲାଳିତ୍ୟ ନାହିଁ ଏହା ନୁହେଁ । ପୁରୀ ଶ୍ରୀମନ୍ଦିରରେ ସତ୍ୟନାରାୟଣ ବିଷ୍ଣୁମୂର୍ତ୍ତି, ଅଲାରନାଥ ବ୍ରହ୍ମଗିରି ଚତୁର୍ଭୁଜ ମୂର୍ତ୍ତି ମାଧବ ମୂର୍ତ୍ତିର ଅନ୍ତର୍ଗତ । ମନେହୁଏ ଯେଉଁ ନୀଳମାଧବ ଅନ୍ତର୍ହିତ ହୋଇଥିଲେ ଶ୍ରୀକ୍ଷେତ୍ରରୁ ଇନ୍ଦ୍ରଦ୍ୟୁମ୍ନ ତାଙ୍କୁ ଦର୍ଶନ କରି ପାରିନଥିଲେ । ସେ ହିଁ ବ୍ରହ୍ମାଙ୍କ ବସିବା ସ୍ଥାନ ବ୍ରହ୍ମଗିରିକୁ ଚାଲିଯାଇଥିଲେ । ସେ ହିଁ ଆଦି ଜଗନ୍ନାଥ । ଏଣୁ ଅନବସର ସମୟରେ ଭକ୍ତ ଭାବଧାରୀ ମହାପ୍ରଭୁ ଶ୍ରୀଚୈତନ୍ୟ ଅଲାରନାଥ ଯାଇ ଦର୍ଶନ କରି ତାଙ୍କ ମହିମାବିଶେଷ ପ୍ରଚାର କରିଛନ୍ତି ।

ପ୍ରାଚୀ ମାହାତ୍ମ୍ୟରେ ଉତ୍କଳର ଦ୍ୱାଦଶମାଧବଙ୍କ ନାମ ଏହିପରି ହୋଇଛି– (୧) ମାଧବାନଂଦ (୨) ନୀଳମାଧବ (ନିଆଳୀ) (୩) ଜାଞ୍ଜଳି ମାଧବ (୪) ଲଳିତ ମାଧବ (୫) ବୋଲରା ମାଧବ (୬) ରଘୁନାଥପୁର ମାଧବ (୭) ମୁଦ୍‌ଗଳ ମାଧବ (୮) ନଟାବୁ ମାଧବ (୯) ନିଭରଣ ମାଧବ (୧୦) ଅମରେଶ୍ୱର ମାଧବ (୧୧) କାକଟପୁର ମଙ୍ଗଳା ମନ୍ଦିର ମାଧବ (୧୨) ଲତାହରଣ ମାଧବ । ସେହିପରି ଅନ୍ୟପ୍ରକାରେ ବିରଜା ମାହାତ୍ମ୍ୟରେ ଦ୍ୱାଦଶମାଧବଙ୍କ କଥା ଅଛି (୧) ଆଦି ମାଧବ (୨) ଅନନ୍ତ ମାଧବ (୩)ଭୋଗ ମାଧବ (୪) ଚମ୍ପକି ମାଧବ (୫) ରମା ମାଧବ (୬) ପ୍ରସନ୍ନ ମାଧବ (୭) ପୁରୁଷୋତ୍ତମ ମାଧବ (୮) ସୁଦର୍ଶନ ମାଧବ (୯) ଜନାର୍ଦ୍ଦନ ମାଧବ (୧୦) ନିରକାନ୍ତକ ମାଧବ (୧୧) ବାସୁଦେବ ମାଧବ (୧୨) ଗୋବିନ୍ଦମାଧବ । ଶ୍ରୀଳ ଭକ୍ତିବିନୋଦ ଠାକୁର ଗାଇଛନ୍ତି 'ଗୋବିନ୍ଦ ମାଧବ ନବନୀତ ତସ୍କର ସୁନ୍ଦର ନଂଦ ଗୋପାଲା' । ଚତୁର୍ଭୁଜ ମୂର୍ତ୍ତିରେ ଯେ ବ୍ରଜ ଭକ୍ତି ସାଧିତ ହେବନାହିଁ, ଏପରି ନୁହେଁ । ପୁରୀର ଶ୍ରୀଜଗନ୍ନାଥ ବଲ୍ଲଭ ମଠ ଏବଂ ଶ୍ରୀମନ୍ଦିର

ଦକ୍ଷିଣଦ୍ୱାରଭ୍ୟନ୍ତରସ୍ଥ ଶ୍ରୀଷଡଭୁଜ ଗୌରାଙ୍ଗ ମନ୍ଦିରରେ ଥିବା ଅନନ୍ୟ ଚତୁର୍ଭୁଜ ବିଗ୍ରହ ତାଙ୍କ ଉପର ହସ୍ତ ଦ୍ୱୟରେ ଶଙ୍ଖ, ଚକ୍ରତଳ ଦୁଇହସ୍ତରେ ବଂଶୀ ଧାରଣର ମୂର୍ତ୍ତି ହେଉଛନ୍ତି, ରାଜ ରାଜେନ୍ଦ୍ର ବିଗ୍ରହ, ଯେଉଁ ମୂର୍ତ୍ତିରେ ଶ୍ରୀକୃଷ୍ଣ ଦ୍ୱାରକାରେ ରାସଲୀଳା କରିଥିଲେ । କହ୍ନେଇ ଖୁଣ୍ଟିଆଙ୍କ ମହାଭାବ ପ୍ରକାଶ ଗ୍ରନ୍ଥରେ ଅଛି ଏବଂ ଯେଉଁ ମୂର୍ତ୍ତି ହେଉଛନ୍ତି ସ୍ୱୟଂ ମହାପ୍ରଭୁ ଜଗନ୍ନାଥ । ଏହି ତତ୍ତ୍ୱ ଅନେକ ଜାଣନ୍ତି ନାହିଁ । ଭୁବନେଶ୍ୱର ନିକଟବର୍ତ୍ତୀ କେନ୍ଦୁଲୀ ନିକଟ ରାଧାମାଧବ ମଠର ବିଗ୍ରହ ଶ୍ରୀଜୟଦେବଙ୍କର ବୋଲି ମଧ୍ୟ କେତେକ କହିଥାନ୍ତି, ପ୍ରାଚୀର ତ୍ରିବେଣୀ ଘାଟରେ ମଧ୍ୟ ମାଧବ ବିଗ୍ରହ ଅଛନ୍ତି ।

ଉତ୍କଳର ମହାତ୍ମା ଗୌର ନିଜଜନ ଶ୍ରୀଳ ଭକ୍ତିବିନୋଦ ଠାକୁରଙ୍କ ପ୍ରାଣଧନ ଶ୍ରୀରାଧାମାଧବ ବିଗ୍ରହ ଯିଏକି କେନ୍ଦ୍ରାପଡା ଛୋଟିଗ୍ରାମରେ ଥିଲେ, ସେ ଏବେ କେନ୍ଦ୍ରାପଡା ସହରର ନିକୁଞ୍ଜବିହାରୀ କଲୋନୀରେ ଗବେଷକ ଡଃ ଫକୀର ମୋହନ ଦାସଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ଏଣୁ ଏସବୁରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଓଡିଶାରେ ମାଧବ ଉପାସନା ଅତ୍ୟନ୍ତ ପ୍ରାଚୀନ ଏବଂ ଏହି ରାଧାମାଧବଙ୍କ ଉପାସକ ହେଉଛନ୍ତି ମହାକବି ଶ୍ରୀଜୟଦେବ ଗୋସ୍ୱାମୀ । ସେ ହିଁ ଶ୍ରୀରାଧାମାଧବଙ୍କ ଅପ୍ରାକୃତ ରତିକେଳି ବିଷୟ ସ୍ୱ ରଚିତ 'ଗୀତଗୋବିନ୍ଦ' ମହାକାବ୍ୟରେ ବର୍ଣ୍ଣନା କରିଛନ୍ତି ।

ବୁଢିବଗିଚା, ସାମନ୍ତରାପୁର
ଖୋରଧା

## ଶ୍ରଦ୍ଧାଞ୍ଜଳି





**ସ୍ୱର୍ଗତ ଦୁର୍ଗା ମାଧବ ଦାଶ**

**ପୂର୍ବତନ ନିର୍ଦ୍ଦେଶକ, ସୂଚନା ଓ ଲୋକ ସମ୍ପର୍କ ବିଭାଗ**



# ଶୈବପୀଠ ପଞ୍ଚଲିଙ୍ଗେଶ୍ୱର

ଚନ୍ଦ୍ରମଣି ସେଠୀ

ପ୍ରକୃତିର ରୂପ ସମ୍ଭାର ପ୍ରକୃତି ବା ପରମ ପୁରୁଷ ଈଶ୍ୱରଙ୍କ ଦ୍ୱାରା ଚିତ୍ରିତ ହୋଇ ପର୍ଯ୍ୟଟକଙ୍କ ମାନସ ପଟକୁ ଯେତିକି ଆକର୍ଷିତ କରିଥାଏ, ଭାବୁକ ହୃଦୟକୁ ତା'ର ଶୋଭା ତାହାଠାରୁ ବହୁ ଗୁଣରେ ଆନ୍ଦୋଳିତ କରି ବିହ୍ୱଳ କରିଥାଏ ।

ତନ୍ମଧ୍ୟରୁ ବାଲେଶ୍ୱର ଜିଲ୍ଲାର ପଞ୍ଚ ଲିଙ୍ଗେଶ୍ୱର ଏକ ଆକର୍ଷଣୀୟ ଶୈବ ପୀଠ । ଚୁମ୍ବକ ଲୁହାକୁ ଆକର୍ଷଣ କଲା ପରି ସେହି ଶୈବ ପୀଠ ଭକ୍ତର ହୃଦୟକୁ ଆକର୍ଷଣ କରି ପବିତ୍ର କରିଥାଏ । ଭକ୍ତ ଥରେ ସେହି ଶୈବ ପୀଠରେ ଭକ୍ତିପୂତ ଅଞ୍ଜଳିରେ ପହଞ୍ଚି ଫେରି ଆସିଲେ ମଧ୍ୟ ସେହି ସ୍ମୃତି ତା'ର ମାନସ ରାଜ୍ୟକୁ ମନ୍ଥନ କରୁଥାଏ । ସେହି ଶୈବ ପୀଠର ଅନୁଭୂତି ଓ ତା'ର ପାରିପାର୍ଶ୍ୱିକ ପ୍ରାକୃତିକ ସୌନ୍ଦର୍ଯ୍ୟ ଚିର ଶାଶ୍ୱତ । ସବୁ ସେହି ବିଭୁଙ୍କ ସୃଷ୍ଟି ।

ବାଲେଶ୍ୱର ଜିଲ୍ଲାର ନୀଳଗିରି ସବ୍ ଡିଭିଜନ ନୀଳ ଆକାଶ ତଳେ ସବୁଜ ବନାନୀ ମଣ୍ଡିତ ଘଞ୍ଚ ଜଙ୍ଗଲ, ନଭଶ୍ଚୁମ୍ବୀ ପାହାଡ଼ମାଳା ଦ୍ୱାରା ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମଣ୍ଡିତ । ଋତୁ ଉପଯୋଗୀ ଶସ୍ୟ କ୍ଷେତ, ବିସ୍ତୀର୍ଣ୍ଣ ଶ୍ୟାମ ମଣ୍ଡିତ ପାହାଡ଼ ପାଦ ଦେଶର ମନଲୋଭା ସୌନ୍ଦର୍ଯ୍ୟ ଭାବୁକକୁ ବିହ୍ୱଳିତ କରୁଥାଏ ।

ପଞ୍ଚ ଲିଙ୍ଗେଶ୍ୱର ପାଞ୍ଚଗୋଟି ଶିବଲିଙ୍ଗର ସମାହାରରେ ସୃଷ୍ଟି । ପ୍ରବାଦ ଅନୁସାରେ, ଯେତେବେଳେ ପ୍ରଭୁ ଶ୍ରୀରାମଚନ୍ଦ୍ର ବନବାସରେ ଯାଇଥିଲେ, ମାତା ସୀତାଙ୍କ ଦ୍ୱାରା ଏହି ପଞ୍ଚଲିଙ୍ଗେଶ୍ୱର ସ୍ଥାପିତ ହୋଇଥିଲେ ବୋଲି ଶୁଣାଯାଏ । ପୁନଶ୍ଚ ଅସୁର ରାଜା ବାଣାସୁର ନିଜର ଅଭୀଷ୍ଟ ବରପ୍ରାପ୍ତି ନିମନ୍ତେ ସ୍ୱୟଂଭୁ ଲିଙ୍ଗକୁ ପୂଜା କରିଥିଲେ ବୋଲି ଅନ୍ୟ ଏକ ଲୋକକଥା ପ୍ରଚଳିତ ଅଛି ।

ଶ୍ୟାମ ତରୁତୃଣ ମଣ୍ଡିତ ପାହାଡ଼ ପର୍ବତ ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଯେତିକି ଆକର୍ଷଣୀୟ କରେ, ଦେଖଣାହାରୀ ବା ଭାବୁକଙ୍କ ହୃଦୟକୁ ସେତିକି ଆନ୍ଦୋଳିତ କରି ନବ ରୂପରେ ଭାବନା ରାଜ୍ୟକୁ ତରଙ୍ଗାୟିତ କରିଥାଏ । କେଉଁଠି ନଭଶ୍ଚୁମ୍ବୀ ଅତ୍ୟୁଚ୍ଚ ଗିରିଶୃଙ୍ଗ ଶ୍ୟାମ ତରୁ ଓ କଣ୍ଟକମୟ ରୂପରେ ପରସ୍ପରକୁ ସ୍ପର୍ଶ କରି ତ୍ରିଭୁଜାକୃତି ପରିବେଶ ସୃଷ୍ଟି କରିଥାଏ ତ କେଉଁଠି ଶୁଷ୍କ କଣ୍ଟକପୂର୍ଣ୍ଣ ଶିଳା ନଭ ଦେଶକୁ ଉଙ୍କି ମାରୁଥାଏ । କେଉଁଠି ଅତ୍ୟୁଚ୍ଚ ପାହାଡ଼ ଶୀର୍ଷରୁ କୁଳୁକୁଳୁ ନାଦରେ ଝରଣା ସର୍ପିଳ ଗତିରେ ଶିଳା କନ୍ଦର ଭେଦ କରି ନିମ୍ନାଭିମୁଖୀ ହୋଇ ଚିରସ୍ରୋତା ହୋଇଥାଏ । ପ୍ରାକୃତିକ ସୌନ୍ଦର୍ଯ୍ୟ ପରିବେଷ୍ଟିତ ପାହାଡ଼ ପର୍ବତ ପାଦ ଦେଶରେ ଗଢ଼ି ଉଠିଥିବା ଜନବସତିଙ୍କ ପାଇଁ ଏହା ହୋଇଥାଏ ପ୍ରକୃତି ରାଣୀର ଚିର ଉପହାର । ଅତ୍ୟୁଚ୍ଚ ପାହାଡ଼ ଶିଖର ଦେଶରେ ମଧ୍ୟ ଜନବସତି ଦେଖାଯାଏ । ଏଠାରେ ବିଭିନ୍ନ ପ୍ରକାରର ବନ୍ୟପ୍ରାଣୀ ବସତି ସ୍ଥାପନ କରିଥାନ୍ତି । ପ୍ରକୃତି କୋଳର ସୁଖ ପସରା ସେମାନଙ୍କୁ ବିମୋହିତ କରିଥାଏ । ମୁଖ୍ୟତଃ ଆଦିବାସୀ ସମ୍ପ୍ରଦାୟର ଜନବସତି ସେହି କଣ୍ଟକମୟ ପର୍ବତ ଶିଖର ଦେଶରେ ଦେଖାଯାଏ । ପ୍ରକୃତି ସହିତ ସଂଘର୍ଷରତ ଜୀବନ ସେମାନଙ୍କୁ ବଳିଷ୍ଠ କରିଥାଏ । ଓଡ଼ିଶାର ମୁଖ୍ୟତଃ କୋରାପୁଟ, ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ଼, ବାଲେଶ୍ୱର ଜିଲ୍ଲା ଇତ୍ୟାଦି ପାହାଡ଼ ପର୍ବତ ଘଞ୍ଚ ଅରଣ୍ୟ ଦ୍ୱାରା ଆଚ୍ଛାଦିତ । ସେହି ପାହାଡ଼ ପର୍ବତ ଶିଖର ଦେଶରେ ଭରି ରହିଛି ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଭାବୁକ ହୃଦୟର ପ୍ରେରଣାର ଉତ୍ସ । ସୃଷ୍ଟି ପ୍ରାରମ୍ଭରୁ କେତେ କେତେ ସୌନ୍ଦର୍ଯ୍ୟ ଉଙ୍କି ମାରି ଏହି ସୃଷ୍ଟିରେ ବିଲୀନ ହୋଇଯାଇଛି ଏବଂ ନୂତନ ସୌନ୍ଦର୍ଯ୍ୟ ବିମଣ୍ଡିତ ହୋଇ ଜନ ମାନସକୁ ବିମୋହିତ କରୁଛି । ପ୍ରକୃତିର ଖେଳ ଚିର ଜାଗ୍ରତ ।

ଶ୍ୟାମସୁନ୍ଦରପୁର ଗ୍ରାମକୁ ଦେବଗିରି ପାହାଡ଼ ସ୍ପର୍ଶ କରି ନୀଳ ଆକାଶକୁ ତା'ର ବିରାଟ କାୟା ବିସ୍ତାର କରିଛି । ସେହି ପାହାଡ଼ର ପାଦଦେଶରେ ଏକ ବିରାଟ ପ୍ରଶସ୍ତ ପ୍ରାନ୍ତର । ପର୍ଯ୍ୟଟକମାନେ ବହୁ ଦୂର ଦୂରାନ୍ତରରୁ ଗାଡ଼ି ମଟରରେ ଆସି ସେହି ସ୍ଥାନରେ ଯାନ ରଖିଥାନ୍ତି । ପର୍ଯ୍ୟଟକମାନଙ୍କ ସୁବିଧା ନିମନ୍ତେ ସେଠାରେ ଛୋଟ ଛୋଟ ଦୋକାନ ବଜାର ଗଢ଼ି ଉଠିଛି । ପ୍ରତିଦିନ ଶହଶହ ଯାନ ସେ ସ୍ଥାନରେ ରୁଣ୍ଡ ହୋଇ ଉକ୍ତ ସ୍ଥାନକୁ ଉତ୍ସବ ମୁଖରିତ କରାଇଥାଏ ।

ଏହି ସ୍ଥାନ ପର୍ଯ୍ୟଟନ କ୍ଷେତ୍ରର ମର୍ଯ୍ୟାଦା ପାଇଛି । ସବୁ ସ୍ଥାନର ଶୈବ ପୀଠରେ ମହେଶ୍ୱର ପୂଜିତ ହେଲେ ମଧ୍ୟ ପଞ୍ଚ ଲିଙ୍ଗେଶ୍ୱର ଶୈବ ପୀଠ ଅନନ୍ୟ । ଯେତେବେଳେ ଯେକୌଣସି ଭକ୍ତ ସେହି ଦେବଗିରି ପାହାଡ଼ର ପାଦ ଦେଶରେ ଉପନୀତ ହୁଏ, ତା' କର୍ଣ୍ଣ ଓଁ ନମୋ ଶିବାୟ ଧ୍ୱନିରେ ହୃଦୟ କନ୍ଦରକୁ ପବିତ୍ର କରିଥାଏ । ବିହଙ୍ଗମାନଙ୍କ କାକଳିରେ ଓଁକାର ଧ୍ୱନି, ପାହାଡ଼ ପାର୍ଶ୍ୱର ସୁଲୁସୁଲୁ କୋମଳ ବତାସରେ ଓଁକାର ଧ୍ୱନି, କଳକଳ ନାଦରେ ପାହାଡ଼ ଶୀର୍ଷରୁ ଝରି ଆସୁଥିବା ଝରଣା ଜଳରେ ଓଁକାର ନାଦ ଓ ଭକ୍ତମାନଙ୍କ ହୃଦୟରୁ ବିଚ୍ଛୁରିତ ହେଉଥିବା ଓଁକାର ନାଦରେ ସେହି ନୀଳଗିରି ପାହାଡ ଉଠେ । ଏହା ଓଡ଼ିଶା ପାଇଁ ଏକ ପବିତ୍ର ତୀର୍ଥ ସ୍ଥାନ ଓ ପର୍ଯ୍ୟଟନସ୍ଥଳୀ ।

ପାହାଡ଼ର ପାଦଦେଶରୁ ସର୍ପିଳ ଢଙ୍ଗରେ ପାହାଡ଼ର ଉଚ୍ଚଦେଶକୁ ରାସ୍ତା । ରାସ୍ତାର ଉଭୟ ପାର୍ଶ୍ୱରେ ଛୋଟଛୋଟ ଭୋଗ ଓ ଅନ୍ୟାନ୍ୟ ସାମଗ୍ରୀ ଦୋକାନ ଗଢ଼ି ଉଠିଛି । ରାସ୍ତାର ପାର୍ଶ୍ୱ ଦେଶରେ ଦେବଗିରି ପାହାଡ଼ ଶୀର୍ଷରୁ କୁଳୁକୁଳୁ ନାଦରେ ଝରଣା କଙ୍କରିତ ବିଶାଳ ଶିଳା ସ୍ପର୍ଶ କରି ତା'ର ଅନ୍ଦିସନ୍ଧି ଭେଦ କରି ବହି ଆସୁଛି । ସେହି ରମଣୀୟ ଦୃଶ୍ୟ ପାହାଡ଼ର ଶୋଭା ଅତୀବ ରମଣୀୟ । ପର୍ଯ୍ୟଟକମାନେ ସେହି ତିଖ ପାହାଡ଼ ରାସ୍ତାରେ ଗଲାବେଳେ ସେହି ଚିରସ୍ରୋତା ଝରଣା ଓ ପ୍ରକୃତିର ଜୀବନ୍ତ ଦୃଶ୍ୟ ଉପଭୋଗ କରିଥା'ନ୍ତି । ଦେବଗିରି ପାହାଡ଼ର ପାଦଦେଶରୁ ପ୍ରାୟ ୨ କିଲୋମିଟର ଉର୍ଦ୍ଧ୍ୱରେ ପଞ୍ଚ ଲିଙ୍ଗେଶ୍ୱରଙ୍କ ଶୈବ ପୀଠ ।

ଅଶାନ୍ତ ବିଶାଳ ପ୍ରସ୍ତରମୟ ଦେବଗିରି ପାହାଡ଼ । ସେହି ପାହାଡ଼ ଉପରେ ପଞ୍ଚ ଲିଙ୍ଗେଶ୍ୱର । ହଜାର ହଜାର ଭକ୍ତଙ୍କ ପାଦ ସ୍ପର୍ଶରେ ସେ ସ୍ଥାନ ପବିତ୍ର । ପ୍ରକୃତି ସୃଷ୍ଟି କରିଛି ସର୍ପିଳ ଗତିର ଝରଣା । ସେହି ଝରଣାର ଜଳ ପଞ୍ଚ ଲିଙ୍ଗେଶ୍ୱରଙ୍କୁ ତା'ର ଜଳରାଶିରେ ବୁଡ଼ାଇ ନିମ୍ନଗାମୀ ହୋଇ ପାହାଡ଼ର ତଳଦେଶକୁ ଶିଳାର ଅନ୍ଦିସନ୍ଧି ଭେଦ କରି କୁଳୁକୁଳୁ ନାଦରେ ପ୍ରବାହିତ । ପଞ୍ଚ ଲିଙ୍ଗେଶ୍ୱରଙ୍କୁ କୌଣସି ଭକ୍ତ ସ୍ୱଚକ୍ଷୁରେ ଦର୍ଶନ କରି ନଥାଏ । ଲମ୍ବା ଧାଡ଼ିରେ ସେହି ଜଳରାଶି ମଧ୍ୟରେ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ଜଳରାଶି ଭିତରେ ହସ୍ତ ପୂରାଇ ପଞ୍ଚଲିଙ୍ଗେଶ୍ୱରଙ୍କୁ ସ୍ପର୍ଶ କରିବାକୁ ପଡ଼ିଥାଏ । ଭକ୍ତମାନେ ନିଜ ହସ୍ତରେ ସେହି ଲିଙ୍ଗକୁ ସ୍ପର୍ଶ କରି ନିଜକୁ ଧନ୍ୟ ମନେ କରନ୍ତି । କଥାରେ ଅଛି, ଯା'ର ମନ ଯେଡ଼େ, ତା'ର ପ୍ରଭୁ ସେଡ଼େ । ଭକ୍ତମାନଙ୍କର ଆନନ୍ଦ ଉଦ୍ଦୀପନା କହିଲେ ନ ସରେ ।

ସେହି ଘଞ୍ଚ ଅରଣ୍ୟ ଆଚ୍ଛାଦିତ ପାହାଡ଼ କେତେଗୁଡ଼ିଏ ଅତ୍ୟୁଚ୍ଚ ପାହାଡ଼କୁ ସ୍ପର୍ଶ କରି ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ଅଭୟାରଣ୍ୟକୁ ବ୍ୟାପ୍ତ । ଶାନ୍ତ ଅଚଳ ଦେବଗିରି ପାହାଡ଼ ସମସ୍ତ ସରୀସୃପ ଓ ବନ୍ୟ ପ୍ରାଣୀମାନଙ୍କୁ ଆଶ୍ରୟ ଦେଇ ଏକ ପ୍ରାକୃତିକ ପରିବେଶ ସୃଷ୍ଟି କରିଅଛି ।

ଦେବଗିରି ପାହାଡ଼ର ପ୍ରାକୃତିକ ଦୃଶ୍ୟ ଓ ଶୈବ ପୀଠ ପଞ୍ଚ ଲିଙ୍ଗେଶ୍ୱରଙ୍କ ଅନୁଭୂତି ଭକ୍ତ ହୃଦୟରେ ଶାଶ୍ୱତ ପ୍ରେମ ଜାଗ୍ରତ କରିଥାଏ । ଏହା ପର୍ଯ୍ୟଟକମାନଙ୍କୁ ଯେତିକି ପ୍ରେରଣା ଯୋଗାଇଥାଏ, ତା'ଠାରୁ ଅଧିକ ଚିର ଶାନ୍ତି ପ୍ରଦାନ କରିଥାଏ । ମୁଖ୍ୟତଃ ନଭେମ୍ବର, ଡିସେମ୍ବର, ଜାନୁଆରୀ ମାସଗୁଡ଼ିକରେ ରାଜ୍ୟ ତଥା ରାଜ୍ୟ ବାହାରୁ ବହୁ ପର୍ଯ୍ୟଟକ ଅନ୍ୟାନ୍ୟ ମାସ ତୁଳନାରେ ସେଠାରେ ଅଧିକ ରୁଣ୍ଡ ହୋଇଥା'ନ୍ତି । ବିଭିନ୍ନ ପର୍ବପର୍ବାଣି ଯଥା ମକର ସଂକ୍ରାନ୍ତି, ଶିବ ଚତୁର୍ଦ୍ଦଶୀ ଓ ପ୍ରତି ସୋମବାରଗୁଡ଼ିକ ସେ ସ୍ଥାନ ଲୋକାରଣ୍ୟ ହୋଇଉଠେ ।

ସେ ଯାହା ହେଉନା କାହିଁକି ପ୍ରଭୁ ପଞ୍ଚ ଲିଙ୍ଗେଶ୍ୱରଙ୍କ ପୀଠ ଯେ ଏକ ଅନନ୍ୟ ଶୈବ ପୀଠ ଏହା ଅନସ୍ୱୀକାର୍ଯ୍ୟ । କାରଣ ଏହା ବଣଭୋଜି ପାଇଁ ଏକ ଉତ୍କୃଷ୍ଟ ସ୍ଥାନ । ଏହାର ପାରିପାର୍ଶ୍ୱିକ ପରିବେଶ ଓ ପରିବେଷ୍ଟନୀ ସବୁ ରକମର ଯାତ୍ରୀଙ୍କୁ ଆକୃଷ୍ଟ କରିବାକୁ ସମର୍ଥ, ଏହା ନିଃସନ୍ଦେହରେ କୁହା ଯାଇପାରେ ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ
ମଧୁପାଟଣା, କଟକ-୧୦

# ଧର୍ମ ସଂସ୍ଥାପକ ଆଚାର୍ଯ୍ୟ ଶଙ୍କର

ସୁଚିତ୍ରା ବେହେରା

ଅଷ୍ଟମ ଶତାବ୍ଦୀର ଶେଷାର୍ଦ୍ଧରେ ଜନ୍ମ ପରିଗ୍ରହ କରିଥିବା ଅଦ୍ୱୈତବାଦର ଏକଛତ୍ରଧାରୀ ବିଖ୍ୟାତ ଦାର୍ଶନିକ ତଥା କବି ଆଚାର୍ଯ୍ୟ ଶଙ୍କର ମହାଜ୍ଞାନୀ ଓ ଭକ୍ତ ଥିଲେ । ଆଧ୍ୟାତ୍ମିକତାର ଏକ ସଙ୍କଟମୟ ମୁହୂର୍ତ୍ତରେ ତାଙ୍କର ଆବିର୍ଭାବ ହୋଇଥିଲା । ସେ ବୈଦିକ ଧର୍ମ ସଂସ୍ଥାପକ ରୂପେ ପରିଚିତ । ଯେତେବେଳେ ସାଧାରଣ ଧର୍ମ–ଜୀବନ ଏକ ଦିଗରେ ଶୁଷ୍କ ବୌଦ୍ଧ ଯୁକ୍ତିଶାସ୍ତ୍ର, ନୀରିଶ୍ୱରବାଦ ଓ ମୀମାଂସକମାନଙ୍କର ସୂକ୍ଷ୍ମ ବ୍ୟାଖ୍ୟା ଏବଂ ଅନ୍ୟ ଦିଗରେ ପୁରାଣ, ଜାତକ କଥା ବୁଦ୍ଧଙ୍କ ମୂର୍ତ୍ତି ସବୁର ଆଡମ୍ବରପୂର୍ଣ୍ଣ ପୂଜା ଓ ବୈଦିକ ଯାଗଯଜ୍ଞାଦିର ଜାଲରେ ଛନ୍ଦି ହୋଇଯାଇଥିଲା । ଏହିଭଳି ସଙ୍କଟମୟ ମୁହୂର୍ତ୍ତରେ କେବଳ ଆଚାର୍ଯ୍ୟ ଶଙ୍କର ନୁହେଁ ବୁଦ୍ଧ, ନାନକ, ଶ୍ରୀରାମ, ଶ୍ରୀକୃଷ୍ଣ, ଲୁଥର, କବୀର ଓ ରାମକୃଷ୍ଣ ଆଦି ମଧ୍ୟ ଜନ୍ମ ହୋଇଥିଲେ ଯୁଗରେ ଧର୍ମ ସଂସ୍ଥାପନା ପାଇଁ । ଯାହାକୁ 'ଗୀତା'ର ଚତୁର୍ଥ ଅଧ୍ୟାୟରେ 'ଧର୍ମ ସଂସ୍ଥାପନାର୍ଥାୟ ସଂଭବାମି ଯୁଗେ ଯୁଗେ' ବୋଲି ଅଭିହିତ କରାଯାଇଅଛି ।

ମୁସଲ୍‌ମାନ ଯୁଗ ପୂର୍ବରୁ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟ ଉପନିଷଦର ଦର୍ଶନ ମଧ୍ୟରୁ ଅଦ୍ୱୈତବାଦର ପ୍ରଚାର କରିଥିଲେ । ଆତ୍ମା ଓ ପରମାତ୍ମା ଏକ ଏବଂ ଅଦ୍ୱିତୀୟ । ସମସ୍ତ ଦୃଶ୍ୟମାନ ଜଗତ କେବଳ ମାୟା । ବ୍ରହ୍ମ ହିଁ ଏକମାତ୍ର ସତ୍ୟ । ମନୁଷ୍ୟ ସେହି ବ୍ରହ୍ମର ପରିପ୍ରକାଶ । ସେହି ବ୍ରହ୍ମ ହିଁ ସମସ୍ତ ସୃଷ୍ଟିର କାରଣ । ସୃଷ୍ଟିର ସବୁ ପାର୍ଥକ୍ୟ ଓ ବିଭିନ୍ନତା କେବଳ ଏକ ମିଥ୍ୟାମାୟା– ଏହି ପ୍ରକାର ଉଚ୍ଚ ଆଧ୍ୟାତ୍ମିକ ତତ୍ତ୍ୱମାନ ଶଙ୍କର ପ୍ରତିପାଦିତ କରିଯାଇଥିଲେ । ହିନ୍ଦୁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମନରେ ଏହାର ଯଥେଷ୍ଟ ପ୍ରଭାବ ପଡିଥିଲା ।

ଆଚାର୍ଯ୍ୟ ଶଙ୍କରଙ୍କର ଆବିର୍ଭାବ ସମ୍ପର୍କରେ ଐତିହାସିକମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଥିଲେ ହେଁ ତାଙ୍କର ଆଧ୍ୟାତ୍ମିକ ସଙ୍ଗଠନ ଓ ଅଦ୍ୱୈତ ବେଦାନ୍ତ ଦର୍ଶନ ସମ୍ପର୍କରେ କାହାର ଦ୍ୱିରୁକ୍ତି ନଥାଏ । ଆଦିଶକ୍ତିର ବହୁ ଭାବରେ ବିଭାଜିତ, ଭାରତର ସନାତନୀ ହିନ୍ଦୁ ସମାଜକୁ ଏକ ଏବଂ ସଂଘତ କରିବା ପାଇଁ ସମଗ୍ର ଦେଶ ଚାଲି ଚାଲି ଭ୍ରମଣ କରିଥିଲେ ।

ଭ୍ରମଣ ଉଦ୍ଦେଶ୍ୟରେ ତଥା ବୌଦ୍ଧ ପ୍ରଭାବରେ ପଦଦଳିତ ସନାତନୀ ବ୍ୟବସ୍ଥାର ପୁନରୁତ୍‌ଥାନ କ୍ଷେତ୍ରରେ ସେ ଯେକୌଣସି ମୂଲ୍ୟ ଦେବାକୁ ପ୍ରସ୍ତୁତ ଥିଲେ । ୧୬ ବର୍ଷ ବୟସର ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ପଦମଣ୍ଡନ କରିଥିବା କେରଳ 'କାଲଡି'ର ଏହି ଅଦ୍‌ଭୁତ ବାଳକ ତାଙ୍କର ପ୍ରଥମ ପୀଠ ସ୍ଥାପନ ପାଇଁ ଯେଉଁ କ୍ଷେତ୍ରକୁ ଚୟନ କରିଥିଲେ, ତାହା ହେଉଛି ପୁରୁଷୋତ୍ତମ 'ଶ୍ରୀକ୍ଷେତ୍ର' । ତାଙ୍କର ଅଦ୍ୱୈତ ବେଦାନ୍ତର ପ୍ରଥମ କେନ୍ଦ୍ର ହେଉଛି 'ଶ୍ରୀ ଗୋବର୍ଦ୍ଧନ ପୀଠ' । ଏହି ପୀଠର ବେଦ ହେଉଛି ଋକ୍ ବେଦ ଓ ମହାମନ୍ତ୍ର ହେଉଛି ପ୍ରଜ୍ଞାନ ବ୍ରହ୍ମ । ପୁରୀ ଆଗମନ ପରେ ତାଙ୍କ ଉଦ୍ୟମରେ ସନାତନ ବ୍ୟବସ୍ଥାର ପୁନଃସଂସ୍ଥାପନା ହେଲା ।

ବାଲ୍ୟକାଳରୁ ଆଚାର୍ଯ୍ୟ ଶଙ୍କରଙ୍କର ଅଦ୍‌ଭୁତ ମାନସିକ ଶକ୍ତିର ପରିଚୟ ମିଳିଥିଲା । ଅତି ଅଳ୍ପ ବୟସରେ ସେ ଚାରିବେଦ ନିପୁଣ ହୋଇଥିଲେ ଏବଂ ଷଡଦର୍ଶନ ଆୟତ୍ତ କରି ପ୍ରତ୍ୟେକ ଦର୍ଶନର ଗୁଣ ଓ ଦୋଷ ହୃଦୟଙ୍ଗମ କରିପାରିଥିଲେ । ମାତ୍ର ବତିଶ ବର୍ଷ ବୟସର ସୀମା ଭିତରେ ଉପନିଷଦ, ବ୍ରହ୍ମସୂତ୍ର ଓ ଗୀତାର ବ୍ୟାଖ୍ୟା, ବଦ୍ରିନାଥଠାରୁ କନ୍ୟାକୁମାରୀ, ପୁରୀଠାରୁ ଦ୍ୱାରକା, ସମଗ୍ର ଭାରତବର୍ଷ ଭ୍ରମଣ, କର୍ମକାଣ୍ଡବାଦୀ ଧର୍ମ

ବିଭ୍ରାନ୍ତକାରୀ ତତ୍ତ୍ୱ ଓ ତାହାର ପୃଷ୍ଠପୋଷକମାନଙ୍କୁ ପରାଜୟ କରି ସତ୍‌ଧର୍ମ ଓ ସତ୍‌ପଥ ଦର୍ଶାଇବା, ଲୁପ୍ତତୀର୍ଥ ତଥା ଦେବଦେବୀଙ୍କୁ ଉଦ୍ଧାର କରିବା, ମଠ ତଥା ସନ୍ନ୍ୟାସୀ ସଂସ୍କାର ସଙ୍ଗଠନ ପ୍ରତିଷ୍ଠା ଇତ୍ୟାଦି କର୍ମ ତାଙ୍କ ଅଲୌକିକ ଶକ୍ତିର ପରିଚୟ ଦିଏ । ସେ ଶୈବ, ଶାକ୍ତ, ସୌର, ବୈଷ୍ଣବ, ଗାଣପତ୍ୟ ଓ କୌମାର ଧର୍ମର ସଂସ୍ଥାପକ । ତାଙ୍କର ଆଧାତ୍ମିକ ସାହିତ୍ୟ ସୃଷ୍ଟି ଉଭୟ ପରିମାଣ ଓ ଗୁଣ ଦୃଷ୍ଟିରୁ ମହନୀୟ । ସୌନ୍ଦର୍ଯ୍ୟ ଲହରୀ, ଭଜଗୋବିନ୍ଦମ୍‌, ମୀନାକ୍ଷୀ ସ୍ତୋତ୍ର, ଭବାନୀ ସ୍ତୁତି, ଅପରୋକ୍ଷ ଅନୁଭୂତି, ବିବେକ ଚୂଡାମଣି ଆଦି ପଦ୍ୟ ରଚନାରୁ ଦେବାଦେବୀଙ୍କ ପ୍ରତି ତାଙ୍କର ଥିବା ଭକ୍ତିଭାବ ସୁସ୍ପଷ୍ଟ । ତାଙ୍କ ରଚନାରେ ମୂଳ ଆବେଦନ ହେଉଛି ଜ୍ଞାନ । ତାଙ୍କର ରଚିତ ଭକ୍ତିପୂର୍ଣ୍ଣ ସ୍ତୋତ୍ରରେ ଜ୍ଞାନ ସମ୍ମିଳିତ ଭାବେ ପ୍ରକାଶ୍ୟ ।

ଶକ୍ତି ଶୂନ୍ୟ ବ୍ରହ୍ମର ଶ୍ରେଷ୍ଠତା ପ୍ରତିପାଦନ କ୍ଷେତ୍ରରେ ଆଚାର୍ଯ୍ୟ ଶଙ୍କର ଯେଉଁ ଦୃଢୋକ୍ତି ପ୍ରକାଶ କରିଥିଲେ, ତାହା ସାଧାରଣ ମଣିଷ ପାଇଁ ଅବୋଧ ବୋଲି ସୂଚାଇ ଥିଲେ ଦେବୀ ଅନ୍ନପୂର୍ଣ୍ଣା । ଏହି ଅଲୌକିକ ଶକ୍ତିର ପ୍ରମାଣ ମିଳେ ଶ୍ରୀଯୁକ୍ତ ଶଙ୍କର ନାଥ ରାୟଙ୍କ ପୁସ୍ତକ 'ଭାରତର ସାଧକ'ରେ ଲିଖିତ କାହାଣୀରୁ ।

ଭାରତବର୍ଷରେ ଅଦ୍ୱୈତବାଦର ଧାରା କ୍ଷୀଣ ହେବାକୁ ଲାଗିଲାବେଳେ ଏହାକୁ ଉଜ୍ଜୀବିତ କରିବା ପାଇଁ ଶଙ୍କର ବ୍ରତୀ ହୋଇଥିଲେ ଗୁରୁ ଗୋବିନ୍ଦପାଦଙ୍କ ଆଜ୍ଞାରେ । ଧର୍ମ ପ୍ରଚାରକ ମାନଙ୍କ ଭିତରେ ପ୍ରବେଶ କରିଥିବା ଅନାଚାର, ଅସହିଷ୍ଣୁତା ଓ ଅଜ୍ଞାନତାକୁ ଦୂର କରିବା ପାଇଁ କାଶୀ ଯାଇ ଆରମ୍ଭ କଲେ ଧର୍ମ ତତ୍ତ୍ୱର ବ୍ୟାଖ୍ୟା । ଜୀବ ପ୍ରକୃତରେ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ନୁହେଁ । ଅଦ୍ୱୈତବାଦର ଏହି ବ୍ୟାଖ୍ୟା ଚରମ ସୋପାନକୁ ଉଠାଇ ସେ କହିଲେ ନିର୍ଗୁଣ ନିର୍ବିଶେଷ ଏହି ବ୍ରହ୍ମରେ ଶକ୍ତିର ସ୍ଥାନ ନାହିଁ । ଏହି ଅତି ମାନୁଷିକ ଜ୍ଞାନ, ଯୋଗ, ବିଭୁତିର କଥା ଶୁଣି ସାଧୁ, ମୂର୍ଖ, ପଣ୍ଡିତ ସବୁ ଶ୍ରେଣୀର ଲୋକଙ୍କ ସମାଗମ ହେଲା ତାଙ୍କ ଧର୍ମସଭାରେ । ଏପରି ଚରମ ଅଦ୍ୱୈତବାଦର ଗଭୀର ତତ୍ତ୍ୱକୁ ପ୍ରକାଶ କରିବା ପରେ ତାହା କିଭଳି ବ୍ୟକ୍ତି ବୁଝିବା ପାଇଁ ସମର୍ଥ ତାହା ସୂଚାଇବା ପାଇଁ ଦେବୀ ନିଜର ସତ୍ତା ପ୍ରକାଶ କଲେ ତରୁଣ ଆଚାର୍ଯ୍ୟଙ୍କ ନିକଟରେ ।

ସ୍ନାନ ନିମନ୍ତେ ଶିଷ୍ୟମାନଙ୍କ ଗହଣରେ ମଣିକର୍ଣ୍ଣିକା ଘାଟକୁ ଯାଉଥିବାବେଳେ ସମ୍ମୁଖରେ ଏକ ସଦ୍ୟ ବିଧବା ତରୁଣୀକୁ ଦେଖିଲେ । ଶବ ସତ୍କାର ପାଇଁ ତରୁଣୀଟି ମୃତ ପତିକୁ କୋଳରେ ଧରି ପଥଚାରୀଙ୍କୁ ଭିକ୍ଷା ମାଗୁଥିଲା । ପଥ ବନ୍ଦ ହୋଇଥିବାରୁ ଆଚାର୍ଯ୍ୟ ଶଙ୍କର କୋମଳ ସ୍ୱରରେ କହିଲେ 'ମା' ଶବଟିକୁ ଟିକିଏ ଆଡେଇ ଦେଇ ରଖ । ତା'ହେଲେ ଆମେ ପଥରେ ଯାଇପାରିବୁ ।'

ତରୁଣୀଟି ଆହୁରି କାନ୍ଦିବାର ଦେଖି ସେ ଚିନ୍ତାରେ ପଡିଲେ । ପୁନଶ୍ଚ ଅନୁରୋଧ କରିବାରୁ ତରୁଣୀଟି କହିଲା 'ସନ୍ନ୍ୟାସୀ ! ଆଡେଇ ଦେବାର ଯେଉଁ ଅନୁରୋଧ ତୁମର ଅଛି ତାହା ବରଂ ସେ ଶବକୁ କୁହ । ତା'ର ଇଚ୍ଛା ହେଲେ ସେ ରାସ୍ତାରୁ ଘୁଞ୍ଚିଯିବ ।'

ଏପରି ଅଦ୍‌ଭୁତ କଥାରେ ଆଚାର୍ଯ୍ୟ ଶଙ୍କର ଆଶ୍ଚର୍ଯ୍ୟ ହେଲେ । ଶବ କିପରି ସ୍ୱୟଂ ଘୁଞ୍ଚିପାରିବ ? ସେ ଭାବିଲେ ତରୁଣୀ ବୋଧେ ପତି ଶୋକରେ ପାଗଳିନୀ ହୋଇଯାଇଛି । ଆଚାର୍ଯ୍ୟ ତାକୁ ବୁଝାଇ କହିଲେ 'ମା' ଏମତି କିପରି ହେବ' ?

ବିଧବା ତରୁଣୀଟି ଦୃଢ କଣ୍ଠରେ ପ୍ରକାଶ କଲା– 'ଆଚାର୍ଯ୍ୟ ! ଶକ୍ତି ଶୂନ୍ୟ ବ୍ରହ୍ମ ହେଉଛନ୍ତି ଜଗତକର୍ତ୍ତା । ଏହି ସିଦ୍ଧାନ୍ତ ତ ଆପଣ ସ୍ଥାପନ କରିଚାଲିଛନ୍ତି । ଏହା ଯଦି ସତ୍ୟ ହୁଏ, ତେବେ ଏହି ନିଷ୍ପ୍ରାଣ ଶକ୍ତିହୀନ ଶବ କାହିଁକି ସ୍ୱୟଂ ସ୍ଥାନାନ୍ତର ହୋଇପାରିବ ନାହିଁ ?'

ଏହାପରେ ଶବ ଓ ତରୁଣୀ ସେଠାରୁ ଅଦୃଶ୍ୟ ହୋଇଗଲେ । ଶଙ୍କର ଧ୍ୟାନସ୍ଥ ହୋଇ ଜାଣିପାରିଲେ ଯେ, ଏହି ଲୀଳାର ନାୟିକା ସ୍ୱୟଂ କାଶୀର ଅଧିଷ୍ଠାତ୍ରୀ ଦେବୀ ଅନ୍ନପୂର୍ଣ୍ଣା । ଦେବୀଙ୍କ ବାଣୀରୁ ସେ ସ୍ପଷ୍ଟ ହୋଇଗଲେ ଯେ ସାଧାରଣ ଲୋକ ପକ୍ଷରେ ଏତେ ଚରମ ଅଦ୍ୱୈତବାଦ ଅବୋଧ । କେବଳ ଶକ୍ତି ଯୁକ୍ତ ବ୍ରହ୍ମ ହିଁ ବୁଝିପାରିବା ସହଜ ସାଧ୍ୟ । ନିର୍ଗୁଣ, ନିର୍ବିଶେଷ ପରଂବ୍ରହ୍ମ ହେଉଛି ସେହି ମୁଷ୍ଟିମେୟ ସାଧକଙ୍କ ପାଇଁ ଉଦ୍ଦିଷ୍ଟ ଯେଉଁମାନେ ବ୍ରହ୍ମଜ୍ଞାନ ପ୍ରାପ୍ତ ହୋଇଛନ୍ତି ଉଚ୍ଚ ସାଧନା ବଳରେ ।

ଆଚାର୍ଯ୍ୟ ଶଙ୍କରଙ୍କର ଦେବୀଙ୍କ ପ୍ରତି ଅସୀମ ଭକ୍ତିଭାବ ଥିବାରୁ ସେ ଜଣେ ସଙ୍ଗଠକ ଓ ଧର୍ମ ପ୍ରଚାରକ

ହୋଇପାରିଥିଲେ । ଏହି ହେତୁ ସ୍ୱୟଂ ଦେବୀ ଅନ୍ନପୂର୍ଣ୍ଣା ତାଙ୍କ ସମ୍ମୁଖରେ ଆବିର୍ଭାବ ହୋଇଥିଲେ ।

ହିନ୍ଦୁର ଧର୍ମ ରାଜ୍ୟରେ ଅରାଜକତା, ଅନ୍ତଃସାରଶୂନ୍ୟତା ସୃଷ୍ଟି ହୋଇ ଯେତେବେଳେ ଗ୍ଲାନି ଆସିଯାଏ, ସେତେବେଳେ ଧର୍ମସଂସ୍କାରକମାନେ ଉପନିଷଦ, ବ୍ରହ୍ମସୂତ୍ର, ଗୀତାର ଆଶ୍ରୟ ନେଇ ଧର୍ମର ପ୍ରକୃତ ମର୍ମ ଉଦ୍‌ଘାଟନ କରିଥାନ୍ତି ପୁନଃପ୍ରତିଷ୍ଠା ପାଇଁ । ଏଇଭଳି ଧର୍ମ ସଂସ୍ଥାପନା କରି ଆଚାର୍ଯ୍ୟ ଶଙ୍କର ଦୈବୀ କୃପା ପ୍ରାପ୍ତ ହୋଇଥିଲେ । ତାଙ୍କର ନିଷ୍କାମ ସାଧନା ଓ ଭକ୍ତିରେ ସେ ଜଗତରେ ଧର୍ମର ତତ୍ତ୍ୱ ଉପସ୍ଥାପନା ସହ ବ୍ରହ୍ମ ବା ଆତ୍ମାକୁ ହିଁ ମୁଖ୍ୟ ବୋଲି ପ୍ରଚାର କରି ବ୍ରହ୍ମବାଦୀ ହୋଇଥିଲେ । ତାଙ୍କର ପ୍ରଥମ ପ୍ରିୟ ଶିଷ୍ୟ ଥିଲେ ଆଚାର୍ଯ୍ୟ ପଦ୍ମପାଦ, ଯାହାକୁ ପୁରୀ ଗୋବର୍ଦ୍ଧନ ପୀଠର ପ୍ରଥମ ପୀଠାଧିପତି ଭାବେ ସେ ଅଭିଷିକ୍ତ କରାଇଥିଲେ । ଜୀବର ନିଜର ସ୍ୱରୂପ ଅନୁସନ୍ଧାନ ବା ଜୀବାତ୍ମା ଭିତରେ ପରମାତ୍ମାର ସନ୍ଧାନ ଭକ୍ତି ଅଟେ ବୋଲି ସେ ଦୃଢୋକ୍ତି ପ୍ରକାଶ କରିଥିଲେ । ତେଣୁ ଅଦ୍ୱୈତ ସିଦ୍ଧାନ୍ତର ଶ୍ରେଷ୍ଠ ଆଚାର୍ଯ୍ୟ ଆଦିଶଙ୍କର କେବଳ ଧର୍ମ ସଂସ୍ଥାପକ ନୁହଁନ୍ତି, ବରଂ ବହୁ ପ୍ରତିଭାଧାରୀ ଭାରତୀୟ ଆଧ୍ୟାତ୍ମିକ ଜଗତର ଉଜ୍ଜ୍ୱଳ ଜ୍ୟୋତିଷ୍କ ତଥା ଭକ୍ତ ଥିଲେ ।

ପ୍ଲଟ ନଂ–୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର–୧୮

# କଳିଙ୍ଗ ପୁତ୍ର

ପ୍ରସନ୍ନ କୁମାର ନାୟକ

ହେ ବିଜୁବାବୁ ଆମ୍ଭ କଳିଙ୍ଗ ପୁତ୍ର
ଆଧୁନିକ ଓଡିଶା ନିର୍ମାଣେ ତୁମେ ଅଗ୍ରଦୂତ
ମହୀୟାନ ତୁମେ ପ୍ରବାଦ ପୁରୁଷ ।
ବଳିଷ୍ଠ ଚିନ୍ତା ତବ ନେତୃତ୍ୱ ଧାରେ
ଆଗେଇଛି ଓଡିଶା ପ୍ରଗତି ସ୍ରୋତରେ ।
ରାଷ୍ଟ୍ର ବିକାଶେ ତୁମ ଦାନ ଅନୁପମ
ଜାଳିଲ ଜୀବନ କରି ସ୍ୱାଧୀନତା ସଂଗ୍ରାମ ।
ଗାନ୍ଧିଜୀ ଓ ନେହେରୁଙ୍କ ଆଦର୍ଶେ ଅନୁପ୍ରାଣିତ
ଇଣ୍ଡୋନେସିଆ ମଣ୍ଡିତ ତୁମେ ଭୂମିପୁତ୍ର ।
ମହୀୟାନ ତୁମେ ପ୍ରବାଦ ପୁରୁଷ ।

ତ୍ରି–ସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ କଲ ସୁଦୃଢ
ତବ ଶ୍ରେଷ୍ଠ ନେତୃତ୍ୱ, ଗଢେ କଳିଙ୍ଗ ଗଡ ।
'ଗାଁକୁ କାମ, ମା'କୁ ସମ୍ମାନ' ଏହି ବୈପ୍ଳବିକ ଆହ୍ୱାନ
ସ୍ଥାନ ସଂରକ୍ଷଣ ଦିଗନ୍ତେ ନାରୀ ସଶକ୍ତିକରଣ
ହେ ଗୁଣମୁଗ୍ଧ ସ୍ରଷ୍ଟା, ତୁମେ ଅମଳିନ ଚିରଦିନ
ଦୀପ୍ତିମନ୍ତ ତୁମେ ଓଡିଆ ହୃଦୟେ ମନ ।
ଧନ୍ୟ ଆଜି ଓଡ଼ିଶା ବିଜୁବାବୁ ପାଇଁ
ଉଚ୍ଛୁଳି ଉଠୁ ତୁମ ପ୍ରେରଣାର ବାର୍ତ୍ତା
ସଭିଙ୍କ ହୃଦ ମନ ଦେଇ
ମହୀୟାନ ତୁମେ ପ୍ରବାଦ ପୁରୁଷ ।

ପ୍ରଶିକ୍ଷକ
ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ ପଞ୍ଚାୟତିରାଜ ପ୍ରତିଷ୍ଠାନ
ଭୁବନେଶ୍ୱର



# ବିଶ୍ୱ ଘରଚଟିଆ ଦିବସ : ଏକ ବିପ୍ଳବରେ ପରିଣତ ହେଉ

ପୀତାମ୍ବର ରାଉତ

କିଚିରି ମିଚିରି ଶବଦ କରେ
ଘରେ ଘରେ ନୀଡ ରଚନା କରେ
କହିକି ପାରିବ ତା'ନାମ ପିଲେ ।

ଉପରୋକ୍ତ ପଦଟି ଶୁଣିସାରିବା ପରେ ସବୁ ପିଲା ଏକ ସ୍ୱରରେ ଉତ୍ତର ଦିଅନ୍ତି– 'ଘରଚଟିଆ' । ତା'ପରେ ଯଦି ପ୍ରଶ୍ନ କରାଯାଏ, ପିଲାମାନେ ତମେ ଘରଚଟିଆ ଦେଖିଛ ? ସବୁ ପିଲା ପରସ୍ପର ମୁହଁ ଚାହାଁଚୁହିଁ ହୁଅନ୍ତି । କାରଣ ସେମାନେ ଘରଚଟିଆ ଦେଖିନାହାନ୍ତି । ଏଇଥିପାଇଁ ଯେ ଘରଚଟିଆ ଆଉ ଆଗ ଭଳି ଦେଖାଯାଉ ନାହାଁନ୍ତି । ନଦେଖା ଯିବାର କାରଣ ତାଙ୍କ ବାସଉପଯୋଗୀ ନଡାଛପର ମାଟିଘର ଆଉ ଆମ ଗାଁମାନଙ୍କରେ ନାହିଁ । ସହର କଥା ଛାଡ । ଆଜି ଘରଚଟିଆ ଆମ ପାଇଁ ବହିରେ ଛବି ଓ ତୁଣ୍ଡରେ କବିତା ଓ ଗଳ୍ପ ଆକାରରେ ରହିବାକୁ ଯାଉଛି ।



୨୦୦୪ ମସିହାରେ ବିଶ୍ୱ ଜୈବ ସଂରକ୍ଷଣ ସଂସ୍ଥା ଦ୍ୱାରା କରାଯାଇଥିବା ସର୍ଭେରୁ ଜଣାଯାଏ ଯେ, ପ୍ରତିବର୍ଷ ପୃଥିବୀ ପୃଷ୍ଠରୁ ଏକ ହଜାରରୁ ଉର୍ଦ୍ଧ୍ୱ ପ୍ରାଣୀ ଏବଂ ଉଦ୍ଭିଦର ବିଲୋପ ଘଟୁଛି । ଆଉ ୪୦–୫୦ ବର୍ଷ ମଧ୍ୟରେ ଘରଚଟିଆ ସଂଖ୍ୟା ସାରା ବିଶ୍ୱରେ ୯୦ ପ୍ରତିଶତ ହ୍ରାସ ପାଇଛି । ଯଦି ବିଶ୍ୱ ସମୁଦାୟ ସହୃଦୟ ତା'ର ସହ ଏବେଠାରୁ ଯତ୍ନବାନ ନ ହେବା ତେବେ ଅବଶିଷ୍ଟ ୧୦ ପ୍ରତିଶତ ଘରଚଟିଆ ଅଚିରେ ଧ୍ୱଂସ ହୋଇଯିବେ । ଯେମିତି ସେଦିନ ଡାଇନୋସର ଧ୍ୱଂସ ହୋଇଯାଇଥିଲେ । ଆଉ ଆଜି ଧ୍ୱଂସର ଦ୍ୱାରଦେଶରେ ଶାଗୁଣା, ବାୟାଚଢେଇ, ଚିଲ, ଛଞ୍ଚାଣ, ଗଧିଆ ଇତ୍ୟାଦି ପକ୍ଷୀପଶୁ ।

ଆମର ଶରୀର ଆଜି ବ୍ୟାଧିମନ୍ଦିର । ଖରା ଆସିଲେ ଜଳ ପାଇଁ ହାହାକାର, ବର୍ଷାଦିନେ ମୌସୁମୀ ଖେଳେ ଲୁଚକାଳି ଖେଳ, ଏସବୁ କେବଳ ଆମ ମଣିଷମାନଙ୍କ ପାଇଁ । ଆମର ସଂଖ୍ୟା ଦିନକୁ ଦିନ ଏତେ ଦ୍ରୁତଗତିରେ ବଢିଚାଲିଛି ଯେ, ଆମେ ପରିବେଶର ସନ୍ତୁଳନକୁ ସ୍ୱାର୍ଥରେ ଲଗେଇ ଦେଇଛେ । ଜଙ୍ଗଲ ନାହିଁ, ମାଟି ଉପରେ ପକ୍କା, ରସାୟନିକ ସାର, କୀଟନାଶକ ଔଷଧ, ପେଟ୍ରୋଲ୍ ଡିଜେଲର ଧୂଆଁ, ଯାହାଫଳରେ ପରିବେଶର ଅନେକ ଉପକାରୀ ପଶୁପକ୍ଷୀ, ବୃକ୍ଷଲତାଙ୍କ ବଂଶ ଲୋପ ହୋଇଗଲାଣି । ସେମାନଙ୍କ ବଂଶ ନାଶରୁ ଆମେ ଆଜି ଦୁର୍ଦ୍ଦଶା ଭୋଗୁଛେ । ପରିବେଶ କହିଲେ ପଶୁପକ୍ଷୀ, ବୃକ୍ଷଲତା, ନଦୀ ପାହାଡ, ସାଗର ମହାସାଗରକୁ ବୁଝାଏ । ହେଲେ ଆମେ ମଣିଷ ନିଜକୁ ବୁଦ୍ଧିଆ ଜୀବ କହି ସମସ୍ତଙ୍କ ଉପରେ ଅହରହ ସଂଗ୍ରାମ କରିଚାଲିଛେ । କେମିତି ଭଲରେ ରହିବା ଆମେ ?

ମୋର ଜଣେ ବନ୍ଧୁ ପଚାରିଲେ, ତମେ ତ ବାୟାଚଢେଇ ସୁରକ୍ଷା ପାଇଁ କାମ କରୁଛ । ମୋର ଭାରି ଇଚ୍ଛା ତମ ସହିତ ମିଶି କାମ କରିବାକୁ । ହେଲେ ଆମେ କେମିତି ତାଳ ଗଛରେ ଚଢି ବସା ବାନ୍ଧିବା । ମୁଁ କହିଲି ନା ବନ୍ଧୁ, ସେମିତି କିଛି ନୁହେଁ । ବାୟା ଚଢେଇର ବସା କେହି ବି ବିଜ୍ଞାଣି ତିଆରି କରିପାରିବ ନାହିଁ । ନିଆରା ସେ ପକ୍ଷୀ, ତା'ର ବସା ନିର୍ମାଣ ଶୈଳୀ ପାଇଁ । ସେ ପକ୍ଷୀ ନୁହେଁତ, କ୍ଷୁଦ୍ର ପରିବେଶବିତ୍‌ଟିଏ, ତା'ର ଉପକାର ଆମେ ଶୁଝିପାରିବା ନାହିଁ । ତେଣୁ ଆମ ପାଇଁ ଆମ ଦ୍ୱାରା, ଆମ ପରିବେଶରେ ବାୟାଚଢେଇମାନେ ଆଗଭଳି ରୁହନ୍ତୁ । ବସାବାନ୍ଧିବା ନାହିଁ, ତାଳ ମଞ୍ଜିଟିଏ ପୋତିଦେବା । ପୁରୁଣା ତାଳ ଗଛକୁ କାଟିଦେବା ନାହିଁ । ବରଷା ଆସୁ, ବତାସ ଆସୁ, ଝୁଲୁଥିବ ବାୟାଚଢେଇର ବସା, ମାଆ ଗାଉଥିବ ଗୀତ । ଧୋରେ ବାୟା ଧୋ, ଆଉ ଶୋଇ ଯାଉଥିବ ଅଝଟିଆ ପିଲା । ଖାଲି ସେତିକି ନୁହେଁ, ମୋର ଉଦ୍ଦେଶ୍ୟ ଆମେ ବାୟା ଚଢେଇକୁ, ଓଡ଼ିଶା ରାଜ୍ୟ ପକ୍ଷୀର ମାନ୍ୟତା ଦେବା ପାଇଁ ଦାବି କରିବା । କାରଣ ରାଜ୍ୟ ପକ୍ଷୀ ହେବାର ଯୋଗ୍ୟତା ବାୟାଚଢେଇର ଅଛି । ଠିକ୍ ଯେମିତି ଦିଲ୍ଲୀ ସରକାର ୨୦୧୨ ମସିହାରେ ଘରଚଟିଆକୁ ଦିଲ୍ଲୀ ରାଜ୍ୟ ପକ୍ଷୀଭାବେ ମାନ୍ୟତା ଦେଇଛନ୍ତି ।

ମହାନ୍ ପରିବେଶ୍‌ବିତ୍ ମହମ୍ମଦ ଦିଲୱାଲଙ୍କ ଉଦ୍ୟମରେ ସମଗ୍ର ବିଶ୍ୱରେ ୨୦୧୦ ମସିହାରେ ମାର୍ଚ୍ଚ ୨୧ ତାରିଖକୁ 'ବିଶ୍ୱ ଘରଚଟିଆ ଦିବସ'ଭାବେ ପାଳିତ ହୋଇଆସୁଛି । ଏକ ଅନ୍ତଃରାଷ୍ଟ୍ରୀୟ ସଂସ୍ଥା ଆଇସିୟୁଏନ୍ ଦ୍ୱାରା ପ୍ରକାଶିତ ଲାଲ୍ ତଥ୍ୟ ପୁସ୍ତକରେ ୨୦୦୨ ମସିହାରେ ଘରଚଟିଆ ସ୍ଥାନ ପାଇଥିଲା । ତା'ପରେ ପରିବେଶ୍‌ବିତ୍‌ମାନଙ୍କର ଉଦ୍‌ବେଗ ବଢିଯାଇଥିଲା । ହାଇଦ୍ରାବାଦ, ବେଙ୍ଗାଲୁରୁ, ଚେନ୍ନାଇ, ମୁମ୍ବାଇ, ଦିଲ୍ଲୀ ଆଦି ବଡ ବଡ ସହରରେ ଏମାନଙ୍କ ବଂଶ ଆଦୌ ଲୋପ ହେବାକୁ ବସିଥିଲା । ନକ୍ସିତ୍ ତେନେଜା ନାମ୍ନୀ ଦିଲ୍ଲୀର ଜଣେ ବାସିନ୍ଦା ଏବଂ ପକ୍ଷୀପ୍ରେମୀ ପ୍ରଥମେ ନିଜ ବାଲ୍‌କୋନିରେ ପକ୍ଷୀଖାଦ୍ୟ ପକାଇଲେ । ଏହା ୮ମାସ ଚାଲୁରହିବା ପରେ ପ୍ରଥମେ ୨ଟି ଘରଚଟିଆ ଆସିଲେ ଏବଂ ପରେ ପରେ ସେମାନଙ୍କ ସଂଖ୍ୟା ବଢିବାକୁ ଲାଗିଲା । ଘରଚଟିଆ ସହିତ ମୈନା, ବୁଲ୍‌ବୁଲ୍ ଏବଂ କପୋତ ମଧ୍ୟ ଆସିଲେ । ତା'ପରେ ସେଠାରେ ପକ୍ଷୀଙ୍କ ପାଇଁ ମୁକ୍ତ ଆକାଶଟିଏ ଗଢିଉଠିଲା । ମୁମ୍ବାଇର ରାଧିକା ଚୋପ୍ରା ମଧ୍ୟ ଘରଚଟିଆମାନଙ୍କୁ ନିଜ ବାଲ୍‌କୋନିରେ ରଖି ଅନ୍ୟମାନଙ୍କ ପାଇଁ ଆଦର୍ଶ ପାଲଟି ଯାଇଛନ୍ତି । ଏବେ ଦିଲ୍ଲୀ ସରକାରଙ୍କ ନିର୍ଦ୍ଦେଶମତେ ଘରଚଟିଆର ବିଷୟ ପାଠ୍ୟପୁସ୍ତକରେ ଅନ୍ତର୍ଭୁକ୍ତ ହେବା ସହିତ ପ୍ରତ୍ୟେକ ସରକାରୀ ଅଫିସ୍, ସ୍କୁଲ ଓ କଲେଜମାନଙ୍କରେ ସେମାନଙ୍କ ପାଇଁ ବସା ନିର୍ମାଣ କରାଯାଉଛି । ତା' ମଧ୍ୟରେ ଖାଦ୍ୟ ଏବଂ ପାଣି ମଧ୍ୟ ରଖାଯାଉଛି । ଆମ ରାଜ୍ୟର ସୁବର୍ଣ୍ଣପୁର ଅଞ୍ଚଳର କେତେକ ପକ୍ଷୀପ୍ରେମୀ ଘରଚଟିଆମାନଙ୍କ ପାଇଁ ମାଟି ହାଣ୍ଡିରେ କଣା କରି ଖାଦ୍ୟ ରଖି ଗଛମାନଙ୍କରେ ଏବଂ ଛାତଘରର ବାଲ୍‌କୋନିରେ ରଖିଥିଲେ । ତା'ପରେ ଆସ୍ତେ ଆସ୍ତେ ସେହି ସ୍ଥାନକୁ ଘରଚଟିଆ ଫେରୁଛନ୍ତି ।

ବର୍ତ୍ତମାନ ଖରାଦିନକୁ ଆଖିରେ ରଖି ସରକାର ସମସ୍ତ ସରକାରୀ ଅନୁଷ୍ଠାନ ଉପରେ ପାଣିପାତ୍ର ରଖିବାର ବ୍ୟବସ୍ଥା କରନ୍ତୁ । ରାସ୍ତାକଡରେ ମଧ୍ୟ ପାଣିକୁଣ୍ଡର ବ୍ୟବସ୍ଥା କରନ୍ତୁ । କଟକ ସିଡିଏ ଅଫିସ୍ ଛାତ ଉପରେ ଏହି ବ୍ୟବସ୍ଥା କାର୍ଯ୍ୟକାରୀ ହେବାକୁ ଯାଉଅଛି ।

ସାଧାରଣତଃ ଘରଚଟିଆମାନେ ଶସ୍ୟଦାନା, ଫିଙ୍ଗାଯାଉଥିବା ଖାଦ୍ୟ, ଅନାବନା ଘାସ ଓ କୀଟପତଙ୍ଗ ଖାଇଥାନ୍ତି । ଏମାନେ ରହଣି ବଳୟଠାରୁ ୧.୫ରୁ ୨ମାଇଲ ପର୍ଯ୍ୟନ୍ତ ଖାଦ୍ୟ ଅନ୍ୱେଷଣରେ ଯାଇଥାନ୍ତି । କାରଣ ଏମାନେ ଦୂର ଆକାଶକୁ ଉଡି ପାରନ୍ତି ନାହିଁ । ଘରଚଟିଆ ପକ୍ଷୀର ଲମ୍ବ ୧୪ରୁ ୧୫ ସେ.ମି. । ମାତ୍ର ଏମାନଙ୍କର ଡେଣାର ଲମ୍ବ ୧୯–୨୮ ସେ.ମି. । ଘରଚଟିଆର ଓଜନ ୨୬ରୁ ୩୨ ଗ୍ରାମ୍ । ପୁରୁଷ ଘରଚଟିଆର ମଥା, ଗଳା ଓ ନିମ୍ନାଂଶ ଧୂସର ଏବଂ କଳାରଙ୍ଗ । ଘରଚଟିଆ ଧୂସର ରଙ୍ଗର ଏକ କ୍ଷୁଦ୍ରପକ୍ଷୀ । ଏହାର କଳରବ କ୍ଷୁଦ୍ର ଏବଂ ଅବିଶ୍ରାନ୍ତ । ଏମାନେ ପ୍ରାୟତଃ ଘରେ ରହିଥାନ୍ତି । ଏତଦ୍‌ବ୍ୟତୀତ ଗଛ, ପାହାଡ, ନଦୀକୂଳ ଇତ୍ୟାଦି ଜାଗାରେ ମଧ୍ୟ ଏମାନେ ରହିଥାନ୍ତି । ଘରଚଟିଆ ଅଣ୍ଡାରୁ ଛୁଆ ଫୁଟିବାକୁ ୧୦ରୁ ୧୨ ଦିନ ଲାଗିଥାଏ ।

ଏହି ଘରଚଟିଆମାନଙ୍କ ଉତ୍ପତ୍ତିସ୍ଥଳ ହେଉଛି ଭୂମଧ୍ୟ ସାଗରୀୟ ଅଞ୍ଚଳ । କ୍ରମଶଃ ଏମାନେ ସାରା ପୃଥିବୀରେ ଛାଇ ହୋଇଯାଇଥିଲେ । ସଂପ୍ରତି ବ୍ରିଟେନ୍, ପ୍ୟାରିସ୍, ଫ୍ରାନ୍ସ, ଜର୍ମାନୀ,

ବେଲ୍‌ଜିୟମ୍‌, ଇଟାଲୀ, ନେଦରଲାଣ୍ଡ ଓ ଫିନ୍‌ଲାଣ୍ଡରେ ଏମାନଙ୍କ ସଂଖ୍ୟା ଦ୍ରୁତବେଗରେ ହ୍ରାସ ପାଇବାରେ ଲାଗିଛି ।

ଏକଥା ମନେ ରଖିବା ଉଚିତ୍‌ ଯେ, ଘରଚଟିଆ ପରିବେଶରୂପୀ ଶରୀରର ଏକ ପ୍ରମୁଖ ଅଙ୍ଗ । ଯଦି ବେଳ ଥାଉ ଥାଉ ତା'ର ଯତ୍ନ ନ ନେବା ତେବେ ଆମ ପରିବେଶ ପାଇଁ ଏହା ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିବ ।

ବାକି ରହିଲା ବୁଦ୍ଧିଜୀବୀ ଏବଂ ପରିବେଶବିତ୍‌ଙ୍କ କଥା । ଆମେ ତାଙ୍କ ପ୍ରଦତ୍ତ ନିୟମ ଅନୁସାରେ କାମ କଲେ ସାରା ବିଶ୍ୱ ଶାନ୍ତିରେ ଭରିଯିବ । ଚାଷପାଇଁ ସେମାନେ ଆଧୁନିକ କଳକୌଶଳ ବନାନ୍ତି କିନ୍ତୁ ଚାଷ କରେ ଚାଷୀ । ଆମେ କାହିଁକି ସେମାନଙ୍କୁ ଅନ୍ୟଥା ଭାବିବା । ଆମ ଭିତରେ ଘରଚଟିଆ ଏବଂ ଘରଚଟିଆ ଭିତରେ ଆମର ଛବି ଦେଖିବା । ଆମ ପରିବେଶକୁ ସେମିତି ସଜାଡ଼ି ଦେବା । ଆସନ୍ତୁ, ଏଥର ଆରମ୍ଭ କରିବା ଆମର ବିପ୍ଳବ– ଘରକୁ ଫେରେଇ ଆଣିବା ଘରଚଟିଆ । ଇଣ୍ଡିଆନ କ୍ରେନ୍ସ ଆଣ୍ଡ ୱେଟ୍‌ଲାଣ୍ଡସ୍‌ ୱାର୍କିଂ ଗ୍ରୁପ୍‌ର ଶ୍ରୀ କେ. ଏସ୍‌ ଗୋପୀସୁନ୍ଦରଙ୍କ ମତରେ ଚାଷ ଜମିରେ ବହୁ ଭାବରେ ରସାୟନ ସାମଗ୍ରୀ ଉପଯୋଗ ଦ୍ୱାରା ଘରଚଟିଆଙ୍କ ଖାଦ୍ୟ ଛୋଟ ଛୋଟ ପୋକଗୁଡିକ ମରିଯିବା ସେମାନଙ୍କ ସଂଖ୍ୟା ହ୍ରାସର କାରଣ ହୋଇପାରେ । ଖାଦ୍ୟଦାନା ଖାଉଥିବା ଘରଚଟିଆମାନେ ସେମାନଙ୍କ ପିଲାଙ୍କ ପାଇଁ ଜମିରୁ ଛୋଟ ଛୋଟ ପୋକ ସଂଗ୍ରହ କରିଥାନ୍ତି । ଆଜି ଅବଶ୍ୟ କେହି ତା'ର ଘରପାଖ ବୁଦା ବା ଗଛ ଉହାଡରେ ଧ୍ୱନିକରି ତାଙ୍କୁ ଡାଳ ଡେଉଁଥିବାର ଦୃଶ୍ୟ ଦେଖିବାକୁ ପାଉନି । ମାତ୍ର ବିଶିଷ୍ଟ ହିନ୍ଦୀ ଲେଖିକା ମହାଦେବୀ ବର୍ମାଙ୍କ ଗଳ୍ପ 'ଗୌରୈୟା' ବର୍ଣ୍ଣିତ ଦୃଶ୍ୟ ତା' ପାଇଁ ଚିରନ୍ତନ । ଲେଖିକାଙ୍କ ହାତରୁ ଶସ୍ୟଦାନା ନେଇ ଘରଚଟିଆ କିପରି ତାଙ୍କ କାନ୍ଧ ଉପରକୁ ଡେଉଁଛି ଏବଂ ତାଙ୍କ ସହିତ ଲୁଚକାଳି ଖେଳୁଛି, ତା' ଏହି ଗଳ୍ପରେ ବର୍ଣ୍ଣିତ । ଆଜି ଆମେ ନିଶ୍ଚୟ ଆଶା କରିବା ଯେ, ଘରଚଟିଆ ମହାଦେବୀ ବର୍ମାଙ୍କ ଲିଖିତ ଗୌରୈୟାରେ ସୀମିତ ନ ରହି ପୂର୍ବପରି ଆମ ସହରକୁ ଫେରିଆସୁ ।

ଆବାହକ, ଓଡ଼ିଶା ବାୟାଚଢେଇ ସୁରକ୍ଷା ଅଭିଯାନ
ନିଆଳୀ, ଜି– କଟକ

# ଉତ୍କଳ ଜନନୀ

ବିଦ୍ୟାଧର ବାରିକ

ଜୟ ଗୋ ଉତ୍କଳ ଜନନୀ ମୋହର
କି ଗୁଣ ଗାଇବି ତୋର
ମୟୂରଭଞ୍ଜଠୁଁ ଗଜପତି ଯାଏଁ
ସୀମା ରହିଅଛି ଯା'ର ।
କୋରାପୁଟଠାରୁ ଶ୍ରୀନୀଳକନ୍ଦର
ଧୋଉଛି ପାଦ ସାଗର
ଉତ୍କଳର ଇଷ୍ଟ ପ୍ରଭୁ ଜଗନ୍ନାଥ
ବାନା ଉଡେ ଫର ଫର ।
ନୀଳାମ୍ବୁ ଚିଲିକା ନୀଳ ତରଙ୍ଗରେ
ପକ୍ଷୀଙ୍କର କୋଳାହଳ
ଭାଲେରୀ ସୋଲେରୀ କାଳିଜାଈ ଶିଖ
ଦିଶେ କେଡେ ମନୋହର ।

ରାଜାରାଣୀ ଲିଙ୍ଗରାଜ ମନ୍ଦିର ଯେ
କୋଣାର୍କ ସୂର୍ଯ୍ୟ ମନ୍ଦିର
ମହାନଦୀ ମା' ହୋଇ ବହିଯାଏ
ଅନେକ ତାହାର ଧାରା ।
ଶୋଭା ପାଉଅଛି ବଣ ପାହାଡ ଯେ
ବହଇ ଝରଣା ଧାର
କେତେ ବୀର ନର ତୋ କୋଳେ ଜନମି
ସ୍ମୃତିରେ ରହିଛି ନାମ ତାଙ୍କର ।

କାଇମାଟିଆ ପାଟଣା
ଯାଆଁଳା, ଖୋର୍ଦ୍ଧା

# ଶିକ୍ଷାରେ ଶିଶୁର ଅନ୍ତର୍ନିହିତ ସ୍ୱର

ଡକ୍ଟର ଗୋପାଳ ଚନ୍ଦ୍ର ବାରିକ

ଅତୀତର ଉତ୍‌ଥାନ ପତନ ମଧ୍ୟରେ ସମାଜର କିଛି ପରିବର୍ତ୍ତନ ହୋଇଛି । କିଛି ଘଟଣା ବିସ୍ମୃତିର ଗର୍ଭରେ ଲୀନ ହୋଇଯାଇଛି । ଆଉ କିଛି ଘଟଣାକୁ ନେଇ ଭବିଷ୍ୟତର ଉନ୍ନତିକୁ ପାଥେୟ କରି ଏ ସମାଜ ଆଗେଇ ଚାଲିଛି । ପରିବର୍ତ୍ତନଶୀଳ ଦୁନିଆରେ ସବୁ ପରିବର୍ତ୍ତନ । ଏଇ ପରିବର୍ତ୍ତନରେ ସମୂହ ସମାଜର ବହୁତ କିଛି ପରିବର୍ତ୍ତନ ହୋଇଥାଏ ।

ପ୍ରଥମେ ନଜର ପକେଇବା ଶିଶୁଟିର ଶିକ୍ଷା ବ୍ୟବସ୍ଥା ଏବଂ ତା'ର ଭବିଷ୍ୟତର ଇତିହାସକୁ । ବାପା, ମାଆ କୁନି ପିଲାଟିର ବୟସ ବଢ଼ିବା ସାଥେ ସାଥେ ତା'ର ଶିକ୍ଷା ବ୍ୟବସ୍ଥାକୁ ଆପଣେଇବା ପାଇଁ ଖୋଜିବୁଲନ୍ତି ବିଦ୍ୟାଳୟ । ଯେଉଁଠି ପିଲାଟି ତା'ର ଭବିଷ୍ୟତର ମାନ ନିର୍ଦ୍ଧାରଣ କରିବ । ଆଉ ଦରୋଟି ଭାଷାରେ କିଛି କିଛି ଭାଷାର ପରିପ୍ରକାଶ କରିବ । ଆଜି ସେ ତା'ର ବାପା କିମ୍ବା ମାଆ ସାଥୀରେ ହସ ହସ ମୁହଁରେ ସମସ୍ତଙ୍କର ସ୍ନେହ ସହାନୁଭୂତିକୁ ପଛରେ ପକାଇ ସିଲଟ ଆଉ ଖଡି ଧରିଥିବା ବସ୍ତାନିକୁ କାନ୍ଧରେ ଧରି ଆଗେଇ ଚାଲେ ।

ବିଦ୍ୟାଳୟ ବାରଣ୍ଡାରେ ପାଦ ଦେଉ ଦେଉ ସେ ଦେଖେ ତା'ପରି କେତେ କେତେ ଛୋଟ ପିଲା ଏଠି ପଢୁଛନ୍ତି । ମୁହଁ କାହାର ଶୁଖି ଯାଇଛି ଓ କାହା ମନରେ ସରସତା ନାହିଁ ।

ପାଠ ପଢିବାକୁ ହେଲେ ଏ ସବୁକୁ କ'ଣ ଆପଣେଇବାକୁ ପଡିବ । ଏମିତି ଭାବନା ଭିତରେ ଆଗେଇ ଚାଲେ ଛୋଟ ପିଲା । ତା' ମନରେ କ'ଣ ବା ଭାବନା ଆସିବ । ସେ ବା କ'ଣ ଜାଣିଛି ଏ ଦୁନିଆ ବିଷୟରେ । ଭାବନାର ଅନ୍ତ ଘଟାଇ ସ୍କୁଲରେ ଯାଇ ପହଂଚିଯାଏ । ଚାରିଆଡେ ନଜର ପକାଏ ମିଟି ମିଟି କରି ଏମାନେ ବୋଧେ ମୋତେ ଗେହ୍ଲା କରିବେ ଆଉ ଗପ ଗୀତ କହି ବ୍ରହ୍ମା–ବିଷ୍ଣୁ– ମହେଶ୍ୱର ମୋର ସିଲଟରେ ଲେଖିବେ । ଆଉ କହିବେ 'ମାନୁ' ମୋର ସବୁ ଲେଖିଦେବ ।

ଏମିତି କେତେ କ'ଣ ପ୍ରଶ୍ନ ପିଲାଟି ମନରେ ଉଙ୍କିମାରେ, ହେଲେ କାହାକୁ ସେ ପଚାରି ପାରେ ନାହିଁ ଓ ଉତ୍ତର ପାଇବା ପାଇଁ କେବେ ଆଶା କରେ ନାହିଁ । ହେଲେ ତା' ଚପଳ ମନ ଯେ କେତେ କ'ଣ ଚିନ୍ତା କରେ ? ବୁଢିଆଣୀ ଜାଲର ଅଡୁଆ ସୂତାରେ ସେ ଛନ୍ଦି ହୋଇଯାଏ । ନିରବରେ ଦେଖିବା ଛଡା ତା' ଭାଗ୍ୟରେ କ'ଣ ଅଛି, ତାକୁ ହିଁ ଅପେକ୍ଷା କରିବା ସାର ।

ଏତେଗୁଡିଏ କହିବାର ଉଦ୍ଦେଶ୍ୟ ଯେ ପିଲାଟିକୁ ତା'ର ବାପା ମାଆ କେତେ ସରାଗରେ ପାଠ ପଢିବା ପାଇଁ ସ୍କୁଲକୁ ପଠାଇଥାନ୍ତି । ଅଭିଭାବକଙ୍କ ମନରେ ଏକ ଜାଗ୍ରତ ଚେତନା ଓ ଆଖିରେ ଅନେକ ସ୍ୱପ୍ନ । ପିଲା ଦି' ଅକ୍ଷର ପଢୁ କିମ୍ବା ବେଶୀ ପାଠ ପଢି ଚାକରି କରୁ ।

ସ୍କୁଲରେ ପହଞ୍ଚି, ପିଲାଟି ତା'ର ପରିବେଶକୁ ନିରୀକ୍ଷଣ କରେ । ପରିବାରର ପରିବେଶ ଆଉ ଏଠାର ପରିବେଶ ଆକାଶ ପାତାଳ । ପାଠପଢା ଭିତରେ ଲାଗେ ସତେଯେମିତି ଗୋପାଳ ପିଲାଟି ତା'ର ଗାଈ ଉହାଡରେ ଜଗି ବସିଛି ପିଲାଙ୍କର ଇଆଡୁ ସିଆଡୁ ନଜରକୁ । ଏମିତି ଏପଟ ସେପଟ ଭିତରେ ସମୟ ଆସେ ମଧ୍ୟାହ୍ନ ଭୋଜନ । ଆଉ ତାକୁ ଖାଇବାକୁ ଇଚ୍ଛାଥିଲେ ବି ଖାଇପାରେ ନାହିଁ । ଏ ପିଲାଏ ଶୀଘ୍ର ଶୀଘ୍ର ଖାଇଦିଅ । ଘରେ ନ ଖାଇଲେ ମାଆ କେତେ ଆଦର କରି ମୋ ପଛେ ପଛେ ଗୋଡେଇ ଗୋଡେଇ ମୋତେ ଖାଇବାକୁ

ଦିଏ । କେତେ କଷ୍ଟ ଦିଏ ମାଆକୁ । କାହିଁ ମାଆ ତ' ମୋତେ କେତେବେଳେ ରାଗିକରି ଅନାଏ ନାହିଁ । କି ଗାଳି କରେ ନାହିଁ । ମୁଁ ନ ଖାଇଲେ ତା'ର ଆଖିରେ ଲୁହ ଚାଲିଆସେ । ତାକୁ ଦେଖି ମୁଁ ମାଆ ପାଖକୁ ଦୌଡ଼ିଯାଏ । ମାଆର ଆଖିର ଲୁହକୁ ମୋର ଅସନା ହାତରେ ପୋଛିଦିଏ । ଆଉ କହେ ମାଆ ମୁଁ ଆଉ ଦୁଷ୍ଟ ହେବିନି । ଏଥର ସୁନା ପିଲା ଭଳି ଖାଇଦେବି । ତୁ ଆଉ ମନ ଦୁଃଖ କରନା ।

ମାଆ ବୁଝେ - ମୋତେ କୋଳେଇ ନିଏ ଓ କେତେ ଗେହ୍ଲା କରେ । ଇଚ୍ଛା ହୁଏ ଆଉ କେବେ ମାଆକୁ ହଇରାଣ କରିବିନି । ମାଆର ଅଭିମାନ ପାଖରେ ମୁଁ ହାରିଯାଏ ।

ପିଲାଟିର ଭାବନାରେ ଏମିତି କେତେ କ'ଣ ଧସେଇ ପଶିଆସେ । ଚପଳ ମନ ତା'ର ବାଚାଳ ପରି ହୋଇଯାଏ । ମନରେ ତା'ର କେଉଁ ଅସୁମାରୀ ସ୍ୱପ୍ନ ଉଙ୍କିମାରେ ।

ପ୍ରାର୍ଥନାରେ 'ସତ କହିବାକୁ କିଆଁ ଡରିବି - ସତ କହି ପଛେ ମଲେ ମରିବି' । ସେହି ସମୟରେ ଯାହା ଶିଖେଇଛନ୍ତି, ତାହାକୁ ସେଇଠି ଆମେ ଧାଡିରେ ଠିଆ ହୋଇ ବୋଲୁଛୁ । ସେଠୁ ଆସିଲା ପରେ ଖାଲି କଥା ହିଁ କଥା ।

ତା'ର ମନେ ପଡିଯାଏ ମାଆ କଥା । ମାଆର ହସକୁରୀ କଥା - 'ଖାଇ ନ ଥିଲେ ଖୁଆଇ ଦିଏ ଓ ଶୁଆଇ ଦିଏ କୋଳେ' ।

ଏମିତି କେତେକେତେ କଥା ଅବତାରଣା କରାଯାଇପାରେ । ବିଭିନ୍ନ ଉଦାହରଣ ନେଇ କିଛି ସମାଧାନ ବାଟ ମଧ୍ୟ ଖୋଜା ଯାଇପାରେ । ତା'ହେଲେ ଯାଇ ନିଶ୍ଚୟ କିଛି ତା'ର ପରିବର୍ତ୍ତନ ହୋଇପାରିବ ।

ଏତିକି କୁହାଯାଇପାରେ ଯେ, ପ୍ରଥମେ ଶିକ୍ଷାର ମାନ ବଢ଼ାଇବା ପାଇଁ ଶିକ୍ଷାର ମୂଳଦୁଆ ବା ପ୍ରାଥମିକ ଶିକ୍ଷାସ୍ତରକୁ ମଜଭୁତ କରିବା ନିହାତି ଅପରିହାର୍ଯ୍ୟ । ଆଜିକାଲି ଶିକ୍ଷାର ପ୍ରଚାର ପ୍ରସାର ପାଇଁ ଯେଉଁ ପ୍ରକାର ପଦକ୍ଷେପ ନିଆଯାଉଛି ତାହା ଅଭିନନ୍ଦନୀୟ ଓ ସ୍ୱାଗତଯୋଗ୍ୟ ।

ଦ୍ୱିତୀୟରେ ବିଦ୍ୟାଳୟର ପରିବେଶ, ଶ୍ରେଣୀଗୃହ, ପାଠ୍ୟୋପକରଣ, ଶିକ୍ଷକ ଶିକ୍ଷୟିତ୍ରୀ ଆଦି ଯେତିକି ଦରକାର ସେତିକି ନିହାତି ରହିବା ଉଚିତ । ଯାହାଦ୍ୱାରା ପିଲାଟି ଯାହା ଚାହିଁବ ତାହା ସେ ଠିକ୍ ସମୟରେ ପାଇ ପାରୁଥିବ ।

ତୃତୀୟରେ ଶିକ୍ଷକ ଶିକ୍ଷୟିତ୍ରୀ ଛୋଟ ଛୋଟ ପିଲାମାନଙ୍କୁ ମାଆ ବାପା ପରି ସ୍ନେହ ଦେବା ଉଚିତ୍ । ଡରେଇବା ବଦଳରେ ଆଦରରେ ସେମାନଙ୍କୁ ପାଖକୁ ଡାକି ସହୃଦୟତା ଦେଖାଇବା ଉଚିତ୍ ।

ଚତୁର୍ଥରେ ପିଲାର ଆବଶ୍ୟକୀୟ ବହିପତ୍ର, ପୋଷାକ, ଦେଶ ବିଦେଶ ବିଷୟରେ ଜାଣିବା, ବିଭିନ୍ନ ଗପ ଗୀତ ମାଧ୍ୟମରେ ତା'ର ହୃଦୟ ଜିଣିବା ଏକାନ୍ତ ପ୍ରୟୋଜନ । ଯାହାଦ୍ୱାରା ପ୍ରତ୍ୟେକେ ଦୁରବସ୍ଥାକୁ ଦୂରେଇ ଦେଇ ପରସ୍ପରକୁ ଆଦର କରିବା ଶିଖିବେ ।

ବିଦ୍ୟାଳୟ ଏକ ପବିତ୍ର ସ୍ଥାନ । ପ୍ରାଥମିକ ସ୍ତରରୁ ଶିକ୍ଷାର ସଫଳ ରୂପାୟନ ପାଇଁ ଆମ ସରକାର ଅନେକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଏଥିପାଇଁ ପ୍ରାଥମିକ ସ୍ତରରୁ ଯୋଗ, ବ୍ୟାୟାମ ଓ ପ୍ରାଣାୟମ ଶିକ୍ଷାର ବ୍ୟବସ୍ଥା କରାଯିବା ଉଚିତ୍ ।

ଏହା ସହିତ ଭଲ ପରିବେଶକୁ ପିଲାକୁ ମନାଇଲା ଭଳି ଉପଯୋଗ କରିବା ଉଚିତ୍ । ଯେଉଁଠି ଉନ୍ନତ ପରିବେଶ ହେବ ସେଇଠି ହିଁ ଶିକ୍ଷାର ବିକାଶ ଘଟିବ । ଏଥିପ୍ରତି ସମସ୍ତେ ଦୃଷ୍ଟିଦେବା ଦରକାର ।

ଶେଷରେ ଆମେ ଶପଥ ନେବା ଆଉ ବଜ୍ର କଣ୍ଠରେ ଘୋଷଣା କରିବା ପ୍ରାଥମିକ ସ୍ତରରେ ଗାଁ'ର ଶୈକ୍ଷିକ ପରିବେଶର ପରିବର୍ତ୍ତନ। ପ୍ରାଥମିକ ଶିକ୍ଷାର ଉନ୍ନତି ହେଲେ ଉଚ୍ଚ ଶିକ୍ଷାର ପରିବର୍ତ୍ତନ ହେବ । ଯାହାଦ୍ୱାରା ପିଲାମାନଙ୍କର ଅନ୍ତର୍ନିହିତ ଶିକ୍ଷାର ବିକାଶ ହେବା ସହିତ ସେମାନଙ୍କର ଭବିଷ୍ୟତ ମଧ୍ୟ ଉଜ୍ଜ୍ୱଳ ହୋଇପାରିବ ।

ଶ୍ରୀରାମ ନଗର, ମଧୁପାଟଣା
କଟକ-୭୫୩୦୧୦



# ପ୍ରଣାମ ବାରବାର

**ରାଧାନାଥ ଦାସ**

ଯେଉଁ ରାଇଜେ ଶ୍ରୀଜଗନ୍ନାଥ  ଶ୍ରୀକ୍ଷେତ୍ର ଧାମେ ନିତ୍ୟ ବିରାଜି
ଲୀଳା କରନ୍ତି ଭକତ ମେଳେ  ସେଇ ଉତ୍କଳ ଭୂମିକି ଆଜି
ପ୍ରଣାମ ବାରବାର
ମହା ଆନନ୍ଦେ ଗାଉଚୁ ଆମେ ଗୌରବ ଗାଥା ତା'ର ।

ନଦୀ, ଝରଣା, ବଣ, ପାହାଡ ଶସ୍ୟ, ଶ୍ୟାମଳ ଭରା ଏ ଭୂଇଁ
ଚିଲିକାର ସେ ଶୋଭା ସମ୍ଭାର ସବୁରି ମନ ନିଅଇ ମୋହି
ସୁନା ଫସଲ କ୍ଷେତେ
ଏଇ ଆମର ପ୍ରିୟ ଓଡ଼ିଶା କେଡେ ସୁନ୍ଦର ସତେ ।

ଆମ ଓଡ଼ିଆ ଭାଷା ବଢିଆ ଆମର ପରିଚୟ ସେ ଦିଏ
ସେ ଭାଷା ତୁଣ୍ଡେ ଥିବ ଆମର ଜୀବନ ଦୀପ ଲିଭିବା ଯାଏଁ
ଗାଇ ତା' ଜୟ ଗୀତି
ସେଇ ଭାଷାରେ କେତେ ସାହିତ୍ୟ ରଚନା ହୁଏ ନିତି ।

ଏଇ ମାଟିରେ ଜନମ ଲଭି କେତେ ଯେ କବି କେତେ ଲେଖକ
ରଚିଲେ କାଳଜୟୀ ସାହିତ୍ୟ ରଖିଲେ ଆମ ଜାତିର ଟେକ
ଅମୂଲ୍ୟ ଦାନ ତା'ର
ଆମ ଭାଷାରେ ପୂରିଚି ଆମ ସାହିତ୍ୟ ଗନ୍ତାଘର ।

ଆମ ସଂସ୍କୃତି ଆମ ସାହିତ୍ୟ ଆମ ଏ ପରମ୍ପରା ମହାନ
ବରଷ ସାରା ଯାନି ଯାତରା ଓଷା, ବ୍ରତରେ ବିତଇ ଦିନ
ଆମ ଏ ଗାଆଁ ଭୂଇଁ
ସ୍ନେହ ସମ୍ପର୍କ ଭାଇ ଚାରାରେ ଭରି ରହିଚି ଯହିଁ ।

ଆମ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ ସେ ନୃତ୍ୟେ ଭରା କେତେ ଲାଳିତ୍ୟ
ମୋହି ନିଅଇ ସଭିଙ୍କ ଚିତ୍ତ ଆମର ପ୍ରିୟ ଓଡ଼ିଶୀ ଗୀତ
ମଧୁର ଲାଗେ ଭାରି
ଚମ୍ପୂ, ଛାନ୍ଦରେ ମାଟି ମହକ ସହଜେ ହୁଏ ବାରି ।

ଆମ ଶିଳ୍ପୀର କାରୁ କାର୍ଯ୍ୟରେ ପାଷାଣ ଓଠେ ଫୁଟିଚି ହସ
ଆମ ଏ ଲୋକ ନୃତ୍ୟ ଗୀତରେ ସବୁରି ମନ ହୁଅଇ ବଶ
ନୀଳ ବନାନୀ କୋଳେ
ନାଚେ ଏ ମନ ଘୁମୁରା ଆଉ ମାଦଳ ତାଳେ ତାଳେ ।

ଆମ ମନ୍ଦିର ଦିଶେ ସୁନ୍ଦର ଦେଖିଲେ ଆଖି ରହୁଚି ଲାଖି
ଐତିହ୍ୟ ଭରା ଏ ବୀର ମାଟି ବାରବାଟୀ ତା' ରହିଚି ସାକ୍ଷୀ
ଏଇ ମାଟିର ବୀର
ଜୀବନେ କେବେ ଶତ୍ରୁ ଆଗେ ନୁଆଁଇ ନାହିଁ ଶିର ।

ଆମ ଓଡ଼ିଆ ସାଧବ ପୁଅ ଯାଏ ବୋଇତେ ବଣିଜ କରି
କେତେ ଖଣିଜ ସମ୍ପଦ ଏଇ ମାଟିରେ ଆମ ରହିଚି ଭରି
ଆମେରେ ଭାଗ୍ୟବାନ
ଏଇ ମାଟିରେ ଜନମ ଲଭି ହୋଇଚୁ ଆମେ ଧନ୍ୟ ।

ଏ ପୁଣ୍ୟ ଦିନେ ପଡଇ ମନେ ସେ ବରପୁତ୍ରମାନଙ୍କ କଥା
କରୁ ଜୁହାର ତାଙ୍କ ଚରଣେ ଭକତି ଭରେ ନୁଆଁଇ ମଥା
ରଖିଲେ ଜାତି ମାନ
ଏ ଜାତି ପାଇଁ ଥିଲା ତାଙ୍କର ମହାନ ଅବଦାନ ।

ପଦ୍ମସାହି, ଆଠଗଡ ଟାଉନ୍
କଟକ-୭୫୪୦୨୯

